# ଗୁରୁଭକ୍ତି ଗୀତା

(ପ୍ରଥମ ଖଣ୍ଡ)




ଉତ୍କଳ ବିଶ୍ୱବିଦ୍ୟାଳୟ

# ଗୁରୁଭକ୍ତି ଗୀତା

(ପ୍ରଥମ ଖଣ୍ଡ)




ମହାପୁରୁଷ

ଅଚ୍ୟୁତାନନ୍ଦ ଦାସଙ୍କ କୃତ



ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା

ସଙ୍କଳିତ

ଓ

ପ୍ରକାଶିତ

ମୂଲ୍ୟ—ଦୁଇଟଙ୍କା ପଚାଶ ପଇସା

# ଶ୍ରୀ ଗୁରୁଭକ୍ତି ଗୀତା

(ପ୍ରଥମ ଖଣ୍ଡ)

## ପ୍ରଥମ ଛାନ୍ଦ

ବନ୍ଦଇଁ ଗୁରୁ ଦେବ ହରି । ମାୟାଫାସରୁ କର ପାର ।୧।

ଗୁରୁ ଗୋବିନ୍ଦ ଉଦ୍ଧାରଣ । ରାମ ଉତ୍ଥାନ ସ୍ତୁତି ଶୁଣ ॥

ଭୃଥ ମୁକୁନ୍ଦ ଦେବଜନ । ଧର୍ମ୍ମ ଆନନ୍ଦ ଭକ୍ତ ଯେନ ॥

ବନ୍ଦ ବସ୍ତ୍ର ସେ ନଟମ ପାଦ । ବିଷ୍ଣୁ ନମସ୍ତେ ଏ ଯାଦବ ॥

ପବନ ନନ୍ଦ ପାଦତଳେ । ଉଦ୍ଧାର କର ଭବଜଳେ ।୫।

କଳୁପେ ଗୁରୁ ଅଙ୍ଗ ଧରେ । ଶିଷ୍ୟ ଭଗତ କା ଖବରେ ॥

ଛଡ଼ ଭଗତ ରହାପର । ହତ୍ଥ ନ ମୁକୁନ୍ଦ ବେଜର ॥

ଅନନ୍ତ ବସ୍ତ୍ର ଯାଦବରେ । ପବନ ମିଶ୍ରି ଛତ୍ର ନରେ ॥

ରହାସେ ଏ ଛଡ଼ ଯେ ସାର । ଶୁଣ ହେ ଭଗତ ବସ୍ତୁର ॥

ରାମ ଭରଥ ବନ୍ଧ ନନ୍ଦ । ବିଷ୍ଣୁ ଧରମ ଛତ୍ର ବନ୍ଦ ।୧୦।

ଦ୍ୱାଦଶ ଭଗତ ହେ ଶୁଣ । କହିବା ଉପଦେଶ-ଗୁଣ ॥

ଗୁରୁଙ୍କ କ ଦେବା ଉପମା । କେ ଜାଣେ ଗୁରୁ-କୃଷ୍ଣ-ସୀମା ॥

ଯେ ଗୁରୁ ଜାଣେ ଯନ୍ତ୍ରସାର । ଶିର ଲମ୍ବିବ ତା ପସ୍ତର ॥

ଗୁରୁ ସେ ଗଉର କରତା । ବେଦରେ ସାର ଏହୁ କଥା ॥

---

୩-୨ ଧର୍ମ୍ମ ଅନନ୍ତ (ଖ) ୮-୨ ଛଡ଼ଧରେ (ଖ) ୯-୨ ଭଗତ ବସୁର (ଖ)

ଓ କାରଭେଦ ଯେ ଜାଣନ୍ତି । ତେବେ ଜାଣିବ ଗୁରୁ-ଶକ୍ତି ।
ପ୍ରଥମେ ବନ୍ଦୁ ଯେ ହଙ୍କାର । ତହୁଁ ହୋଇଲା ଯେ ଅକାର ॥
ତହିଁ ଯେ ଗାରକୁ ରଖିଲେ । ବନ୍ଦୁକୁ ତଥିମଧ୍ୟେ ଦେଲେ ॥
ତଥିଉପରେ ଇକାରକୁ । ହକାର ବସିବ ତଳକୁ ॥
ଏକାର ତା ବାମ ପାଶର । ବେଢ଼ିବ ମଣ୍ଡଳ ଆକାର ॥
ମଣ୍ଡଳ ତଳେ ଗାର ଥୋଇ । ଦକାର ଅକ୍ଷର ବସାଇ ।
ତହିଁ ଉପରେ ବିନ୍ଦୁ ଥୋଇ । ଅଠଅଙ୍କକୁ ତଳେ ଦେଇ ॥
ଏମନ୍ତେ ଏକ ଦଳ ହୋଏ । ଏ ଦଳେ ଏକାକ୍ଷରେ ରହେ ॥
ଥକାର ତଳେ ଅଷ୍ଟାକ୍ଷର । ଦକାର ତଳେ ପଞ୍ଚାକ୍ଷର ॥
ଗୁରୁଭକତ ଏ ବସ୍ତୁର । ଶିଷ୍ୟ ସଂଶୟ ହୋଏ ଦୂର ॥
ଆବର ପ୍ରକାର ଯେ ପାଶେ । ଶୂନ୍ୟ ଗୋଟିଏ ତହିଁ ବସେ ।
ଆର ପାରୁଶେ ଅଙ୍କ ଅଠ । ଗୁରୁ ଭଣ୍ଡାର ଏହୁ କୋଠ ॥
ଅର୍ଦ୍ଧମାତ୍ରାକୁ ତଥି ତଳ । ବିନ୍ଦୁ ଗୋଟିଏ ତଥି ମୂଳ ॥
ଓଙ୍କାର ଅର୍ଦ୍ଧଗାର ଶିର । ଏକାର ଅର୍ଦ୍ଧାଙ୍ଗ ଉପର ॥
ଓଁକାର ଏକାର ମଧ୍ୟରେ । ଦୁଇଅକ୍ଷର ସିଦ୍ଧି କରେ ॥
ସିଦ୍ଧିରସ୍ତୁ ଯେ ବେଦ ତହିଁ । ଏମନ୍ତ ବୃତ୍ତ ଯେ ବସଇ ।
ପର, ରଜ ଯେ ବୃତ୍ତ ତହିଁ । ଶ, ଷ, ନ, ଦ ମିଶ୍ରି ଥାଅନ୍ତି ॥
ଏ ଭେଦ ଜାଣିଲେ ଗୋସାଇଁ । ସାଧନ ପତନ ଖଣ୍ଡଇ ॥
ଅକାର ଆକାର ଇକାର । ଈ ଅକ୍ଷର ଯେ ହକାର ॥
ଆବର ହକାର ବାନ୍ଧବ । ଏ ଛନ୍ଦ ଅକ୍ଷର ସ୍ୱଭାବ ॥
ଋ ୠ ଏ ବେନି ଅକ୍ଷର । ଌ ୡ ମିଶ୍ରଣ ବୃତ୍ତ ଭର ।

---

୧୭—୨ ତହିଁ ପାଖେ (ଖ) ୧୯—ଏକାର ତହିଁର ଯେ ଘର—ମଣ୍ଡଳ ପାଶର (କ) ୨୮—ଓଁକାର ଅର୍ଦ୍ଧାଙ୍ଗରେ ଶିର । ହାକର—(କ) ;
୨୯—୧ ଓଁକାର ହକାର ମଧ୍ୟରେ (କ) ।
୩୫—୨ ଌକାର ମିଶି ଉନକ୍ଷର (କ)

ଏ ଐ ଅକ୍ଷର ଦୁଇ ସାର । ଓ ବୋଲଣ ଏକ ଧର ॥
ଔ ମିଶ୍ରିଣ ଦୁଇ କନ୍ଧ । ଅଂ ଅଃ ବର୍ଣ୍ଣ ଅଟେ ଏହୁ ॥
ଏହା ଜାଣିଲେ ସିଦ୍ଧ ବୋଲ । ଏ ଅଟେ ସାଧୁ ସନ୍ଥ ମୂଳ ॥
ଏ ଷୋଳ ଦୁଇଭାଗ ହୋଇ । ଅନୁସ୍ୱାର ଯେ ମଧ୍ୟେ ଦେଇ ॥
ଏହା ଜାଣିଲେ ସିନା ଦାସ । ନ ଜାଣି ପ୍ରାଣୀ ଯାନ୍ତି ନାଶ । ୪୦ ।
ସକଳ ମନ୍ତ୍ରବୀଜ ଏହୁ । ଭଗତମାନେ ଛନ୍ତି ଧ୍ୟାନ୍ତି ॥
କଅ ଠାବରୁ ଠ,ଅ ବାର । ଛଡ଼ରେ ଅନୁସ୍ୱାର ଧର ॥
ଡ ଫ ମିଶିଣ ଦଶ'ଷର । ପ'ଞ୍ଚରେ ଭେଦ ପୁଣ କର ॥
ବ, ଳ ମିଶିଣ ଛଡ଼ କନ୍ଧ । ଢନ୍ଦରେ ଭାଗ ଦେବ ଚନ୍ଧି ॥
ବ ସ ମିଶିଣ ଗୁଣ'ଷର । ଦୁଇରେ ଏକ ଥିବ ଶାର । ୪୫ ।
ବ ସ ମଧ୍ୟରେ ଯେଉଁ ଶାର । ମିଳିବ ଆକାର ଯେ ଘର ॥
ଏମନ୍ତେ ଯନ୍ତ୍ରବନ୍ଧ କନ୍ଧ । ସାଧିବ ଗୁରୁବନ୍ଧ ଏହୁ ॥
ଏ ଅଟେ ଭଗତିର ସାର । ପାପକୁ ଅଟଇ କୁଠାର ॥
ଏ ଭେଦ ଜାଣିଲେଟି ଗୁରୁ । ପ୍ରାଣୀ ତରନ୍ତି ଏ ଭବରୁ ॥
ଆତ୍ମାକୁ ଆତ୍ମା ଯେବେ ଧ୍ୟାନ୍ତି । ପରମ ଆନନ୍ଦ ସେ ହୋଇ । ୫୦ ।
ଶ୍ରୀକୃଷ୍ଣ ସଦ୍ଗୁରୁ ସେ ଗୁରୁ । ଶ୍ରୀକୃଷ୍ଣ ଆପଣା ହୃଦରୁ ॥
ଆପଣା ନାମ ଅପେ ପୁଣ । ବିଖ୍ୟାତ କଲେ ଯଶ ଭେଣ ॥
ଷୋଳ ନାମ ଯେ ମନ୍ତ୍ର ସାର । ବତିଶ ଅକ୍ଷର ବିସ୍ତର ॥
ଷୋଳ ନାମରୁ ଛନ୍ଦ ଆଣି । ବିଖ୍ୟାତ ସଂସାରେ ଯେ ପୁଣି ॥
ଛନ୍ଦ ନାମକୁ ଜପ୍ୟ କର । କହିଲେ ସଂସାରେ ବିସ୍ତାର । ୫୫ ।
ହରାଦ କୃଷ୍ଣାଦ ରାମାଦ । ଏମନ୍ତେ ଛନ୍ଦ ନାମ ବନ୍ଧି ॥
ଓଁକାର ଆଦ ଏକ ନାମ । ବେଷ୍ଟିବ ଗୁଣ ଶଅ ଧାମ ॥
ଓଁ ରାମ ରାମାନନ୍ଦ ଧରେ । ଓଁ କୃଷ୍ଣ କୃଷ୍ଣାଦ ସୁମରେ ॥
ଓଁ ହରେ ହରାଦ ଭଗତ । ଏମନ୍ତେ ମନ୍ତ୍ର ଯେ ଗୁପତ ॥

---

୫୭—୧ ଉକାର ଆଦ (ଖ); ୫୮—୧ ଓ ରାମ ନାମ ଛନ୍ଦ ଧରେ (କ);
୫୯—୧ ଓଁ ହରେ ରାମାଦ ଭଗ (କ);

ରାଧା କୃଷ୍ଣ ସେ ଗୁରୁ ଶିଷ୍ୟ । ମନ୍ତ୍ର ବ୍ରହ୍ମବ ସେ ହରଷ ।
ହରେ ସେ ଶିଷ୍ୟ ପାପ ହରେ । ଗୁରୁ ସେ ରାମ ସ୍ତୁତି କରେ ॥
କୃଷ୍ଣର ନାମ ଧ୍ୟାନ କୃଷ୍ଣ । ଓଁକାର ରାଧ ନାମ ଶୂନ୍ୟ ॥
ଗୁରୁଟି ଶୂନ୍ୟମୟ ରୂପ । ଓଁ ରାମ ଗୁରୁଙ୍କ ସ୍ୱରୂପ ॥
ଏଣୁଟି ହରେ କୃଷ୍ଣ ରାମ । ଛଡ଼ ଅକ୍ଷରେ ତନ ନାମ ॥
ଏ ନାମ ଚୈତନ୍ୟ ଠାକୁର । ସାରଙ୍ଗ ଗୋସାଇଁ କର୍ଣ୍ଣର ।
ଶ୍ୟାମ ଗୋସାଇଁ କର୍ଣ୍ଣମୂଳେ । ସାରଙ୍ଗ ଗୋସାଇ କହିଲେ ॥
ରାମ କୃଷ୍ଣ ସେ ଗୋସାଇଁରେ । ଶାମ ଗୋସାଇଁ କୃପା କରେ ॥
ନବ କିଶୋର କର୍ଣ୍ଣମୂଳେ । ରାମ କୃଷ୍ଣ ସେ ଗୁରୁ ଦେଲେ ॥
ସନାତନ ସେ ଦାସକୁହି । ନବକିଶୋର ହେଲେ କହି ॥
ମୁଁ ଅଟେ ଅଚ୍ୟୁତ ସେ ଦେଖି । ସନାତନ ସେ କୃପା ହୋଇ ।
ଅଚ୍ୟୁତାନନ୍ଦ ମୁହିଁ ପୁଣ । କହିଲ ସେ ରାମ କର୍ଣ୍ଣେଣ ॥
ରାମ କହିଲେ ମୁକୁନ୍ଦରେ । ରାମଦାସ ଗୋପାଳ କର୍ଣ୍ଣେ
ହରେକୃଷ୍ଣ ସେ ମନ୍ତ୍ର ସାର । କଳରେ ହୋଇଲା ପ୍ରଚାର ॥
ଦ୍ୱାପର ଯୁଗେ ମନ୍ତ୍ରସାର । ଗୋପାଳ ଅଷ୍ଟାଦଶାକ୍ଷର ॥
କ୍ଲୀଁ କୃଷ୍ଣାୟ ସେ ନମୋନମ । ଗୋବିନ୍ଦାୟ ସେ ଗୋପୀ ନମଃ ।
ଜନ ବଲ୍ଲଭାୟ ଟି ଗୂଢ଼ । ଦ୍ୱାପର ବଇଷ୍ଣବ ଦୃଢ଼ ॥
ଚନ୍ଦ୍ରାବଳୀ ସେ ଜନ କହି । ଶିଷ୍ୟ ଭଗତ ଭାବ ହୋଇ ॥
ଗୋପୀ ଗୋବିନ୍ଦ ଗୁରୁଧ୍ୟାନ । କାଳନ୍ଦି କୃଷ୍ଣର ଭଜନ ॥
ଗୁରୁଙ୍କ ଅଟେ ଉପଦେଶ । ଦ୍ୱାପର ଯୁଗ ମନ୍ତ୍ର ରସ ॥
ଓଁ ରାମ ଚୈତନ୍ୟ ଯୁଗରେ । ପରମାତ୍ମା ସେ ରାମ ଧରେ ।
ନିରଞ୍ଜନ ସେ ତତ୍ତ୍ୱଧ୍ୟାନ । ସେ କରେ ମନ୍ତ୍ର ଉପସନ ॥
କାଶୀ ବାରାଣସୀ ଫଳ । ଅଯୋଧ୍ୟା ଦ୍ୱାରକା ମଣ୍ଡଳ ॥

---

୬୧—୨ ରାଯ ସ୍ତୁତ (ଖ);

୬୮—୧ ନନ୍ଦକିଶୋର (କ);

ଶ୍ରୀ ବୃନ୍ଦାବନ ଯେ ମଥୁରା । ଶ୍ରୀପୁର ବଦରୀ ଲମ୍ବିଲ ॥
ଓଁ ରାମ ନିରଞ୍ଜନ ଛଡ଼ । ଏ ଅଟେ ମନ୍ତ୍ରଙ୍କର ଦୃଢ଼ ॥
ଜନ ଅଟଇ ଶିଷ୍ୟ ଧ୍ୟାନ । ନର ବୋଲିଣ ଗୁରୁଜ୍ଞାନ ।୮୫।
ରାମ ବୋଲିଣ କୃଷ୍ଣ ସ୍ତବ । ରାମ ବୋଲିଣ ବଳଦେବ ॥
ରାମ କୃଷ୍ଣ ଯେ ଭେଦ ନୋହେ । ଅଙ୍କ ଅଙ୍କରେ ବେନି କାୟେ ॥
ସତ୍ୟଯୁଗରେ ନାରାୟଣ । ମନ୍ତ୍ର ଯେ କଲେ ଉଚ୍ଚାରଣ ॥
ନାରାୟଣ ଯେ ନମୋନମଃ । ସ୍ମରନ୍ତି ନାରାୟଣ ରମ୍ୟ ॥
ଶାସ୍ତ୍ର ବୋଲିଣ ଶିଷ୍ୟ ରହେ । ନର ବୋଲିଣ ଗୁରୁଧ୍ୟାୟେ ।୯୦।
ସ୍ମରଉଁ କୃଷ୍ଣ ରୂପ ଲୟେ । ଏମନ୍ତେ ସତ୍ୟ ମନ୍ତ୍ର ହୋଏ ॥
ଆଦ୍ୟ ଅନନ୍ତ ଯୁଗକାଳେ । ଏକା ଅକ୍ଷର କର୍ଣ୍ଣମୂଳେ ॥
ଦ କାରେ ତ କାର ଥୋଇବ । ଉ କାର ତଥିଂରେ ସ୍ମରିବ ॥
ଅଙ୍କ ଯେ ଆଠ ତଳେ ଦେଲେ । ଆକାର ମାତ୍ରାକୁ ଥୋଇଲେ ॥
ଘ କାର ମାତ୍ରାକୁ ବନ୍ଧିବ । ପଢ଼ିଲେ ଯେମନ୍ତ ହୋଇବ ।୯୫।
ରେ କାର ଶିଷ୍ୟର ଭଜନ । ଓଁ କାର ଧ୍ୱନି ଷର ଯେନ ॥
କୃଷ୍ଣଙ୍କେ ଭଗତ ଏ ଧନ । ଉକାରୁ ଗୁରୁ ଶକ୍ତି ଯେନ ॥
ଏହା ନ ଜାଣି କରେ ଶିଷ୍ୟ । ଇହ ଲୋକରେ ଉପହାସ ॥
ଗୋଲକ ମନ୍ତ୍ର ଅଣଛର । ଗଙ୍ଗା ବୋଲିଣ ଏ ଶରୀର ॥
ଆକ'ରେ ପାଞ୍ଚକୁ ଥୋଇବ । ତେବେ ଯେ ଆତ୍ମାକୁ ବନ୍ଧିବ ।୧୦୦।
ଏ ଛଡ଼ ମନ୍ତ୍ରଙ୍କର ଗୁଣ । ଯନ୍ତ୍ର ବନ୍ଧିବ ଶରୀରେଣ ॥
ଏବଧି ଗୁରୁଙ୍କର କଥା । ଗୁପ୍ତତ ଶିଷ୍ୟଙ୍କୁ କହନ୍ତା ॥

---

୮୩—୨ ଲମ୍ବିକା (କ)

୯୨—୨ କୃଷ୍ଣମୂଳେ (କ)

୯୩—୧ ଦକାର.ଢକାର (ଖ)

୯୬—୨ ଓଙ୍କାର ଧନ, (ଚ)

୯୭—୧ ଋକାରୁ (କ) ୯୯—୨ ଗୋ ବୋଲିଣ ଯେ (କ),

ଅଶେଷ ଜନ୍ମ ଭାଗ୍ୟ ଥିଲେ । ଏ ଗୁରୁ ମିଳଇ ସୁଫଳେ ॥
ଏହା ନ ଜାଣି କଣ୍ଠି ଧରେ । ବସଇ ପଥର ନାବରେ ॥
ଅନ୍ଧକୁ ଅନ୍ଧ ପଥ ଯେସନ୍ତେ । ବଧିରେ ବଧିର ସଙ୍ଗ କଣ୍ଠେ ।୧୦୫।
ଜଡ଼କୁ ଜଡ଼ ଯେସନ୍ତେ ଭାଷା । ପଣ୍ଡିତ ମୂର୍ଖେ କି ସମସ୍ୟା ।
ମୁଦ୍ରିତ ପୁଷ୍ପେ କି ଭ୍ରମର । ସେ ଶିଷ୍ୟ ନିଷ୍ଫଳ ଶରୀର ॥
ଭକ୍ତି ନ ଭେଦ ଯେଉଁ ଗୁରୁ । ତୁଟଇ ସେବା ଶିଷ୍ୟଘରୁ ॥
ସେ ଶିଷ୍ୟ ଧନ ହୋଏ ନାଶ । ତୁଟଇ ପୁତ୍ର ଅନ୍ନଗ୍ରାସ ॥
ପୁଣ ଲଭଇ ପଶୁ ଯୋନି । ବଜ୍ର ଲେପ ତ ବାକ୍ୟ ଯେଣି ।୧୦।
ଶିବ ଠାବରେ ପାପ କଲେ । ଖଣ୍ଡନ ହୋଏ ଧନ ଦେଲେ ॥
ବିଷ୍ଣୁ ଠାବରେ ପାପ କଲେ । ଖଣ୍ଡନ ଧନ ସ୍ତୁତି କଲେ ॥
ଗୁରୁ ଠାବରେ ପାପ କଲେ । ବଜ୍ର ପଡ଼ଇ ତାର ଭାଲେ ।
ଗୁରୁ ବୈଷ୍ଣବ ଏକ କହିଁ । କୃଷ୍ଣ ବୈଷ୍ଣବ ବଡ଼ ସହିଁ ॥
ଗୁରୁ ବୈଷ୍ଣବ ଦୟା କଲେ । ଏ ଜୀବ ତରେ ଭବ ଜଳେ ୧୧୫।
ସମୁଦ୍ରେ ବୋଇତ ଯେମନ୍ତ । ବୋଇତ ପତି ଗୁରୁ ଯେ ତ ॥
କୃଷ୍ଣ ଯେ ସୁହେର ପବନ । ଲାଗଇ କୂଳେ ସେହୁ ଜନ ॥
ଏ ତିନି ଯାହାକୁ ନ ମିଳେ । ବୁଡ଼ି ମରଇ ଭବଜଳେ ॥
ଶ୍ରୀରାମାନନ୍ଦ ନିମାନନ୍ଦ । ବିଷ୍ଣୁ ଶ୍ୟାମ ଏ ଗୁରୁ ବନ୍ଦ ॥
ଏ ସ୍ଥିର ପଥର ଭଗତ । ଶରଣ ପାମର ଅଚ୍ୟୁତ ।୧୨୦।

ଇତି ଶ୍ରୀ ଗୁରୁଭକ୍ତି ଗୀତା ପ୍ରଥମ ସ୍କନ୍ଧ

—:o:—

---

୧୦୫—୨ ବଧିର ବଧ ସଙ୍ଗ (ଖ) ?
୧୦୭—୧ ପଣ୍ଡିତେ ମୂର୍ଖଙ୍କୁ (ଖ).
୧୧୯—୨ ବିଷ୍ଣୁ ଶ୍ୟାମ ମାଧବାନନ୍ଦ (ଖ)

# ଦ୍ୱିତୀୟ ଛାନ୍ଦ

ପୁଣ ପଚ୍ଛରେ ରାମଚନ୍ଦ୍ର ଶିଷ୍ୟ । କେଉଁଠ ରେ ମନ୍ତ୍ର ଦେବା ହରଷ ।
କି ବିଧି କରିଣ ଶିଷ୍ୟଙ୍କୁ ପୁଣି । ମନ୍ତ୍ର ଉଚ୍ଚାରିବ ହୃଦରେ ଗୁଣି ।
ଶ୍ରୀଗୁରୁ ଠାକୁର । କୃପା କରିବ ସୁଦୟା ହୃଦର ।୧।

ଶୁଣହେ ହନୁଆନ ରାମ ଭଗତ । ନାଦ ପୁଅ ମୋର ତୁମ୍ଭେ ଦୁଇ ତ ।
ନାଦ ପୁଅ ବଡ଼ ସଂସାରେ ସାର । ବିନ୍ଦୁପୁଅ ତନ ପୀଡ଼ରେ ପର ।
ହେ ବରଜବଂଶ । ସୋମବଂଶ ମଧ୍ୟ ଅଭେଦ ରସ ।୨।

ପୁଅକୁ ଯେମନ୍ତ ପିତା କପଟ । ପୁଅକୁ ମାତା ଯେ ଅନ୍ତର ଘଟ ।
ଗୁରୁ ନ ଶିଖାଇବେ ଶିଷ୍ୟକୁ ମନ୍ତ୍ର । ପଢ଼ି ଭେଜିବ ଯେତେ ନାସ୍ତିତନ୍ତ ।
କାହାକୁ କହିବା । ବ୍ୟର୍ଥେ ଜନମ ବୋଲି ଜାଣିବା ।୩।

ପରମ ଭଗତ ଶୁଣ ଗୁପତ । କହୁ କହିବା ମନ୍ତ୍ରର ତଦନ୍ତ ।
ସୁବର୍ଣ୍ଣ ଲେଖନ ଗୋଟିଏ କରି । ଦ୍ୱାଦଶ ଆଙ୍ଗୁଳ ମାପିବ ଧରି ।
ସେ ଜିହ୍ୱା ଅଗ୍ରେଣ । ଅଣାକ୍ଷର ତହିଁ ଲେଖିବ ପୁଣ ।୪।

ରୂପାର ଲେଖନ ଅଷ୍ଟ ଆଙ୍ଗୁଳ । ଏକାକ୍ଷର ମନ୍ତ୍ର ହୃଦରେ ଭାଳ ।
ଲେଖିବ ନାସିକା ଦ୍ୱାରେଣ ପୁଣ । ହଂସ ପରେଚ କରି ସେଠାରେଣ ।
ସେ ଚକ୍ଷୁପଠିରେ । ଆତ ଯାତ ହେଉଅଛୁ ସେ ବାଟେର ।୫।

ପ୍ରବାଳ ବଡା ଯେ ଷଡ଼ ଆଙ୍ଗୁଳ । ଲେଖନ ପରାଏ ହସ୍ତେ ନିର୍ମଳ ।
ଗୋପାଳ ମନ୍ତ୍ର ଯେ ମୂର୍ଦ୍ଧ ପରେ । ଭବେ ଲେଖିବ ଯେ ଶିଷ୍ୟ ଅଙ୍ଗରେ ।
ଗୋପାଳ ମୂରତି । ଶ୍ୱେତ-ରଙ୍ଗ-କଳା-ଶ୍ୟାମଳ-ଜ୍ୟୋତି ।୬।

ମୋତି ଗୋଟିଏକ ହସ୍ତେ ଧରିବ । ଶିଷ୍ୟ ଦକ୍ଷିଣ କର୍ଣ୍ଣରେ ଲେଖିବ ।
ଷୋଳ ନାମ ଯେ ବତିଶ ଅକ୍ଷର । ମୁଖେ ପବନ ଫୁଙ୍କିବ ସୁସ୍ୱର ।
ଏ ଗୁରୁଙ୍କ ଗତି । ଏ ସ୍ଥାନେ ଯେ ମନ୍ତ୍ରଙ୍କ ସ୍ଥିତି ।୭।

---

୧-୩—କି ବୃଦ୍ଧି (କ) ; ୭-୪—ପବନ ଶୁଭିବ (କ), ।

ଯୁଗଳ ମନ୍ତ୍ର ଯେ ବାମ କର୍ଣ୍ଣରେ । ମୀଳା ଗୋଟିଏ ଗୁରୁଙ୍କ ହସ୍ତରେ ।
ଲେଖିବ ରାଧେ-କୃଷ୍ଣ ରାଧେ-ଶ୍ୟାମ । ଗୁରୁ ଭଗତ ଅଟଇ ଉତ୍ତମ ।
ଶିଷ୍ୟର କାରଣ । ଏମନ୍ତ ଶିଷ୍ୟଟି ଉଦ୍ଧାର ଜାଣ । ୮ ।

ଦନ୍ତସ୍ୟ ମଧ୍ୟ ଶିଷ୍ୟମୁନାରେ । ନାରାୟଣ ମନ୍ତ୍ର ଦେବ ଯେଠାରେ ।
ହୀରା ଗୋଟିଏକ ହସ୍ତରେ କର । ଶିଷ୍ୟଙ୍କୁ ଲେଖିବ ଦନ୍ତ ମୂଳର ।
ଭାଗ୍ୟ ସେହୁ ଶିଷ୍ୟ । ମୁକ୍ତ ନ ପାନ୍ତି କୋଟି କଲେହେଁ ଲେଶ । ୯ ।

ମାଣିକ୍ୟ ଗୋଟିଏ ଘେନଣ କରେ ! କୃଷ୍ଣ ମନ୍ତ୍ରକୁ ସୁମର ମନରେ ।
ଦକ୍ଷିଣ ନୟନେ ଲେଖିବ ପୁଣ । ଏହା ନ ଜାଣିଲେ ପଶୁଙ୍କେ ଗଣ ।
ଅନ୍ନ ତାହା ହାତ । ଛୁଇଁ ନ ଯୋଗାଇ ସେ ବିବର୍ଜିତ । ୧୦ ।

ବୈଡୁର୍ଯ୍ୟ ଗୋଟିଏ ଘେନାମ କରେ । ଠାକୁରାଣୀ ମନ୍ତ୍ର ବାମ ଚକ୍ଷୁରେ ।
ଲେଖିବ ଗୁରୁ ଶିଷ୍ୟ ଅଙ୍ଗେ ପୁଣି । ଭବରୁ ତରନ୍ତି ଶିଷ୍ୟ ପରାଣୀ ।
ଗୁରୁଙ୍କ ଭଣ୍ଡାର । ଦେବ ଉତ୍ତମ ଶିଷ୍ୟରେ ବିସ୍ତର । ୧୧ ।

ବୈଡୁର୍ଯ୍ୟ ଗୋଟିଏ ଗୁରୁ ଘେନଣ । ଅନନ୍ତ ମନ୍ତ୍ର ହୃଦେ ସୁମରଣ ।
ଗଣ୍ଡସ୍ଥଳରେ ଏମନ୍ତ୍ର ଲେଖିବ । ଏମନ୍ତ ଶିଷ୍ୟ ଭଗତ ଲଭିବ ।
ଶ୍ରୀକୃଷ୍ଣ ଚରଣେ । ମିଳଇ ସେ ଶିଷ୍ୟ ମନ୍ତ୍ର ଜପନେ । ୧୨ ।

ନବରତନ ପାଟ ବସ୍ତ୍ର ଯେ ଏକ । ତିଳକ ମନ୍ତ୍ର ଲେଖି ଲଲାଟେକ ।
ହରି ମନ୍ଦିର ଯେ ତିଳକ ଦେଇ । ଶ୍ରୀ ଗରୁଡ଼ କଳା ଲଲାଟେ ଲହି ।
ସେ ବନ୍ଦୁ ଗୁପତ । ସୁସାଧୁ ଜାଣନ୍ତି ତହିଁ ତଦନ୍ତ । ୧୩ ।

ପୁଣ ଜଣାଉଛୁଁ ବ୍ରଜ ଅନନ୍ତ । ଶିଷ୍ୟ କେଉଁରୂପେ ମିଳିବ ଯତ୍ନେ ତ ।
କି ରୂପେ ଆସିବ ଗୁରୁଙ୍କ ପାଶ । ବାରଜଣ ଶିଷ୍ୟ ନ ଧର ଦୋଷ ।
ହେ କରୁଣାକର । ଏ ଗୋପ କୁଳର ସଂଶୟ ହର । ୧୪ ।

---

୯-୫—ଭାଗ ଶିଷ୍ୟ ପୁଣି ... ଗୁଣି (କ)

୧୨-୫—ସେ କୃଷ୍ଣର ଗଣେ ଖ) ।

୧୪-୫—କରୁଣା ଦୟେ କର (ଖ) ।

ପଚଶ ହାତ ମାପରେଣ ଶିଷ୍ୟ । କରଯୋଡ଼ି ଶିରେ ଥିବ ହରଷ ।
ଆପଣା ଗୁରୁନାମ ସେହୁଠାରେ । ଶୁଣାଇ ପ୍ରଣାମ କରି ସେଠାରେ ।
ସେ ଛଡ଼ ପାହୁଲ । ସାତ ପାହୁଲରେ କରିବ ଚଳ । ୧୫ ।

ଗୁରୁଙ୍କ ଗୁରୁ ସେଠାରେ ସୁମର । ବାର ପୁରୁଷ ଯେ ହୃଦେ ସୁମର ।
ଦଣ୍ଡବତ କରି ଆପୁଣ ଥିବ । ଦ୍ୱାଦଶ ପୁରୁଷ ଗୁରୁ ଧ୍ୟାସ୍ତିବ ।
ଏ ଗୁରୁଙ୍କ ବିଧି । ସାଧକ ଜନର ଅଟଇ ସିଦ୍ଧି । ୧୬ ।

ଠନ ହାଥ ଅର୍ଦ୍ଧେ ମଣ୍ଡପ ମାପ । ବସ୍ତୁ ଲଷ ହାଥ ଶିଷ୍ୟ ଭୂମି ତ ।
ଢନ ହାଥ ଅର୍ଦ୍ଧେ ଯନ୍ତ୍ର ଥାପିବ । ଠନ ହାଥ ଅର୍ଦ୍ଧେ ପୁଜା ବନ୍ଧିବ ।
ହାତେକ ମାପିଣ । ଗୁରୁ କରିବ ସମାଧି ଧାରଣ । ୧୭ ।

ପୂର୍ବମୁଖ କରି ଗୁରୁ ବସିବ । ଶିଷ୍ୟ ସେ ପଶ୍ଚିମ ମୁଖ ହୋଇବ ।
ଦକ୍ଷିଣ ଭାଗରେ ଯନ୍ତ୍ରକୁ ଲକ୍ଷ୍ୟ । ବାମ ପାରୁଶେ ଗୁରୁଙ୍କୁ ବସାଇ ।
ଗୁରୁ ପଥେ ଗୁରୁ । ନବତନ ଶିଷ୍ୟ ଆସି ପାଶରୁ । ୧୮ ।

ଦଣ୍ଡବତ କରି ସେହୁ ଠାବରେ । ଅଳଗେ ଆସିବ ଏ ବାମ ଫେରେ ।
ଗୁରୁ ଆଜ୍ଞା ଦେବେ ବସ ଏଠାରେ । ସମାଧି ଲଗ୍ନେ ଗ୍ରହଣ ମନରେ ।
ତା ଅଙ୍ଗର ପାପ । ଯେ ପାପ ଥିବ ତା ଅଙ୍ଗରେ ଗୋପ୍ୟ । ୧୯ ।

ଅଷ୍ଟାଦଶାକ୍ଷର ମନ୍ତ୍ର ଯେ ଗୁଣି । ଏ ଖଡ଼୍‌ଗେ ଗୋପ୍ୟ ପାପକୁ ହାଣି ।
ପାପ ନ କାଟିଣ କରନ୍ତି ଶିଷ୍ୟ । ଅନ୍ନ ନ ମିଳଇ ପୁତ୍ର ଯେ ନାଶ ।
ସେ ବଧିର ହୋନ୍ତି । ଏମନ୍ତ ଗୁରୁଙ୍କୁ ନାହିଁ ନା ଗତି । ୨୦ ।

କୁଷ୍ଠ ଜାତ ହୋଏ ଗୁରୁ ଶରୀର । ନାଶ ହୁଅଇ ଯେ ଧନ ତାହାର ।
ପୁତ୍ରମାନେ ତାର ହୁଅନ୍ତି ରୋଗ । ସଂସାର ତାକୁ ଯେ ନୁହଇ ଭୋଗ ।
ହେବାର ବରଷ । ଗୁରୁଙ୍କୁ ସେବା କରିବ ହରଷ । ୨୧ ।

---

୧୫—୧… ପଞ୍ଚାଶ ହାଥ (ଗ) ।

୧୯—୧—ସେଠି ଠାବରେ (କ) ।

ଗୁରୁଭଣ୍ଡାର ଯେ ଅତି ଗହନ । ସହସ୍ରେ ଗନ୍ଥେ କର୍ଥା ଥ ନ ।
ବହିବାକୁ କ୍ଷେମ ଅଛି କାହାର । ଯାହାକୁ କୃପା କରନ୍ତି ଠାକୁର ।
ସେ ମୁରଲୀଧର । କରୁଣା କଲେ ଯେ ତିଳ ନଗର ।୨୨।

ଦୀନ ଅଚ୍ୟୁତଙ୍କୁ କରୁଣା କଲେ । ଉପଦେଶ ଟୀକା ଲେଖ ବୋଇଲେ ।
ଗୁରୁ ଭଣ୍ଡାରରୁ କିଛି ଲେଖିଲି । ସନ୍ଥ-ଚରଣଙ୍କୁ ଭରସା କଲି ।
କ୍ଷୀଣ ଶରୀରରେ । ବୁଡ଼ି ରହିଲି ଏ ଭବଜଳରେ ।୨୩।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ଦ୍ୱିତୀୟ ଛାନ୍ଦ ॥

—:o:—

୨୩-୫ - ମୁଁ କ୍ଷୀଣ ଦୀନରେ ଖ) ।

# ତୃତୀୟ ଛାନ୍ଦ

ବନ୍ଦ ଯାଦବର ସ୍ତୁତ ଯେଜନମା । ଗୁରୁ ପୂଜ ବିଧି କେମନ୍ତ ସୀମା । ୧ ।
ଶୁଣ ହେ ଭଗତ କହିବା ତୋରେ । ଗୁରୁ ପୂଜାବିଧି ଯେଉଁ ସ୍ୱବରେ ॥
ସପତ ସେର ଯେ ଘୃତ କରିବ । ସାତମୁଖ କରି ଦୀପ ଆଣିବ ॥
ସାତ ଠାବ କରି ଜାଳିବ ଘୃତ । ଏମନ୍ତ ହୋଇଣ ଘୃତ ସଂଯୁକ୍ତ ॥
ଅଗରୁ ଚନ୍ଦନ ଚୁଆ ମିଶାଇ । ପୂଜା ଠାବରେ ଯେ ଥୋଇବ ନେଇ । ୫ ।
ଫୁଲ ଧଣ୍ଡା ମାନ ଥୋଇବ ଯାଣ । ସାତ ଗାଈ ଗୁଆ ରଖି ହରଷ ॥
ହରିଡ଼ା ରଖିବ ପାଞ୍ଚ ଯେ ଗାଈ । ବାର ପୁରୁଷ ଗୁରୁ ସେବା ପାଇଁ ॥
ପୁର୍ଣ୍ଣ କୁମ୍ଭ ଯେ ଗୋଟିଏ ଆଣିବ । ପୁରୁଣା ହାଣ୍ଡି ଯେ ଘରେ ନ ଥିବ ॥
ଝିଙ୍ଗୁଳ ବସ୍ତ୍ର ସମସ୍ତେ ପିନ୍ଧିବ । କାନ୍ଧରେ ଏକ ମୁରତି ଯେ ଥିବ ॥
ମଙ୍ଗଳ ହୁଳହୁଳି ଘରେ ଦେବ । ଗୁରୁ କୃଷ୍ଣ ପୂଜା ଗୃହେ କରିବ ।୧୦।
ଏମନ୍ତ ଶିଷ୍ୟ ଯେ ଭକତହେବ । ଗୁରୁ କୃଷ୍ଣ ପୂଜା ଗୃହେ କରିବ
ସ୍ୱର୍ଣ୍ଣ ସମ୍ପ୍ର ଦାରୁ ସ୍ୱର୍ଣ୍ଣ ମୂରତି । ଗୃହରେ ପୁଜିବ କରି ଅନ୍ତସ୍ଥ ॥
ପଇଡ଼ ପଣା ଯେ ନଡ଼ିଆ ଫଳ । ଛେନା ନବାତ ପଂଚଲ କଦଳ ॥
ଖଜା ମିଠାଇ ଯେ ଚଣା ପାପଡ଼ି । ବିବିଧ ପ୍ରଫଳ ଏ ସବ ଗୁଡ଼ ॥
ନବତନ ହାଣ୍ଡି ଦ୍ରବ୍ୟ ପୁରେଇ । ଡାକୁଣି ଦେଇ ପୂଜାଅନେ ଥୋଇ ।୧୫।
ହୁଣ୍ଡାମ ରଚନ ସୁପାନ ତାଟେ । ବାର ମୂରତି ଯେ ସୁବସ୍ତ୍ର ଘଟେ ॥
ବାର ପୁରୁଷ ଯେ ଗୁରୁଙ୍କ ପାଇଁ । ବାର ମୂରତି ଯେ ବସ୍ତ୍ର ଛୁଆଇ ॥
ଗୁରୁଙ୍କୁ ନବତନ ବସ୍ତ୍ର ଏକ । କାନ୍ଧିକୁ ଦେବ ପାଟ୍ରେଡ଼ା ସରୁକ ॥
ନବତନ ବସ୍ତ୍ର ଶିଷ୍ୟ ପିନ୍ଧିବ । ଶିଷ୍ୟ କାନ୍ଧେ ଏକ ମୂରତି ଥିବ ॥

---

୧୦-୧ । ମଙ୍ଗଳ ହୁଳା ହୁଳି ଘରେ ଦେବ (ଖ) ;
୧୦ । (ଖ)ରେଜାଣି ଏହାସ୍ଥାନରେ ୧୧ ପଦ ଅଛି । ୧୪-୧ । ମିଠାଇ ଯେ ଚଣ (କ) । ୧୪-୨—ଏରସ (କ)

ଶିଷ୍ୟଙ୍କୁ ଏକ ବସନ ଘୋଡ଼ାଇ । ବେନଜନେ ଏକା ରହିବେ ତହିଁ ।
ମନ୍ତ୍ରାମନ୍ତ୍ର ଶିଷ୍ୟ କର୍ଣ୍ଣରେ ଦେବ । ଶିଷ୍ୟର ଚଣ୍ଡାଳ ଅଙ୍ଗ ଫେଡ଼ିବ ॥
ସ୍ୱଶ ସମ୍ପ୍ରତାକୁ ସ୍ୱଶ ମୁରତ । ରାମାନନ୍ଦ ନିମାନନ୍ଦଙ୍କୁ ଚିନ୍ତ ॥
ବିଷ୍ଣୁ ସ୍ୱାମୀ ଯେ ମାଧବ ଆଚାର୍ଯ୍ୟ । ଏ ବିଧି ପ୍ରକାରେ ପୂଜା ହୋ ତୂର୍ଯ୍ୟ ॥
ମାଧବେନ୍ଦ୍ର ପ୍ରଭୁ ଚରଣ ତଳ । ବିଧି ବିଧାନରେ ପୂଜା ସକଳ ॥
ଭଜନ ଭୋଜନ ଅତି ଗୁପତ । ଅତି ସ୍ନେହ କର ଏ ଦୁଇ ମତ ।
ଏ ଦୁଇ କଥା ଯେ ସଂସାରେ ସାର । ସ୍ତ୍ରୀ ପୁରୁଷ ଯେମନ୍ତ ବେଭାର ॥
ରାଜ ଦରବାର ଯେ ଯେମନ୍ତ ହୋଇ । ବେଜ ହସ୍ତ ଯେହ୍ନେ ଶରୀରେ ରହି ॥
ସେହି ପ୍ରକାରେଟି ବିଚାର କର । ମନ୍ତ୍ର ତନ୍ତ୍ର ଏଟେ ଗୁରୁଙ୍କ ସାର ॥
ଶିଖିବା ଦେବା ଯେ ହେବା ଭଗତ । ଶିଷ୍ୟର ଏ କଥା ଅଟଇ ନିତ ॥
ଫଳେ ପୁଷ୍ପେ ଦ୍ରବ୍ୟେ ଯେତକ ମିଳିବ । ଯେ ଅବା ଆପଣେ କମାଇଥିବ ।
ଗୁରୁଙ୍କ ଅଗ୍ରତେ ନେଇ ନିଯୋଗ । ଶିଷ୍ୟର ଭଗତ ଅଟଇ ଭାଗ୍ୟ ॥
ଗୁରୁ ପୁଣ ତାହା ନେ ବାନ୍ଦେ ଦେଇ । ଏମନ୍ତ ଶିଷ୍ୟ ପରମୁଣ୍ଡା ଯାଇ ॥
ବୈଷ୍ଣବ ଠାବରେ ଯେ ଦ୍ରବ୍ୟ ଦେବ । ଶ୍ରୀକୃଷ୍ଣ ସେ ଦ୍ରବ୍ୟ କରନ୍ତି ଭୋଗ
ଗୁରୁ କୃଷ୍ଣ ଯେ ବୈଷ୍ଣବ ତିନ । ଅଭେଦ କରିବ ଭେଦ ନ ଘେନ ॥
ବୈଷ୍ଣବ ଗୋସାଇଁ ଉଦ୍ଧାର କର । ଭୃତ୍ୟ ପରିଭୃତ୍ୟ ଅନ୍ତ୍ୟଜ ଗୁର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ତୃତୀୟ ଛାନ୍ଦ ॥

---

୨୩ ୧ । ବିଷ୍ଣୁ ଶ୍ୟାମ ଯେ (ଖ) ।
୩୧-୨ । ଗୁରୁଙ୍କୁ ଆଗେ ତା କରାଇ ଭୋଗ (କ) ।

## ଚତୁର୍ଥ ଛାନ୍ଦ

ନନ୍ଦ ବରଜ ସ୍ୱର ଘେନ । ଶ୍ରୀଗୁରୁ କହବା ବଚନ । ୧ ।
କେତେ ମନ୍ତ୍ର ଯେ ଗୁରୁବିଧି । ପ୍ରାଣୀ ଲଭନ୍ତି ଭକ୍ତ ସିଦ୍ଧି ॥
ଶୁଣ ପବନ ନନ୍ଦ ବେନ । ମନ୍ତ୍ର ଯେ ଚଉରାଶି ଘେନ ॥
ଯନ୍ତ୍ର ଅଟଇ ଚଉରାଶି । ପ୍ରାପତ ସ୍ୱର୍ଗ ଶିଷ୍ୟ ଦଶି ॥
ସ୍ୱରଞ୍ଜା ଫଳ ଏକ ଘେନ । ଶ୍ରୀମନ୍ତ୍ର-ରାଜ ଶୁଦ୍ଧ ଚିହ୍ନି । ୫ ।
ଦକ୍ଷିଣ ଭୂଲତା ଉପରେ । ମନ୍ତ୍ର ଲେଖିବ ସେ ଠାବରେ ॥
ଗୁଆ ଗୋଟିଏ ହସ୍ତେ ଧରି । ଛନ ନାମକୁ ଯେ ସୁମରି ॥
କୃଷ୍ଣ ହରେ ଯେ ମନ୍ତ୍ର ନେଇ । ବାମ ନୟନ ପରେ ଥୋଇ ॥
ବାମ ଯେ ଗଣ୍ଡସ୍ଥଳେ ପୁଣ । ହରିଦ ମନ୍ତ୍ରକୁ ଲେଖିଣ ॥
ଯେମନ୍ତ ଦେଖି ତୁଳସୀର । ଏମନ୍ତେ ମନ୍ତ୍ରର ବିଗ୍ରହ । ୧୦ ।
ରମାଦ୍ଧ ଓଷ୍ଠରେ ଲହୁବ । ତୁଳସୀ ଶିଖ ରେ ଲେଖିବ ॥
ଶୂନ୍ୟ ଭଜନ ମହାମନ୍ତ୍ର । ଲଲାଟ ଉପରେ ଯେ ଥାପ ॥
ଅଗ୍ର ଚନ୍ଦନ କାନ୍ତ କରି । ଏଥି ଲେଖିବ ମନ୍ତ୍ର ନେଇ ॥
ଗୁରୁ ପସର ଯେ ଏମନ୍ତ । ଆଖିରୁ ଯେ କଣ୍ଠ ନବାତ ॥
ବିବିଧ ବର୍ଣ୍ଣେ ପାଗ ହୋଏ । ରସିଆ ଜାଣି ରମ୍ୟ ଖାଏ । ୧୫ ।
ହରିର ରସଗୁଣ ତେବେନ୍ତେ । ରସିକ ଶୁଣନ୍ତି ଶ୍ରବଣେ ॥
ଏ ରସେ ଜନ୍ମେ ଜନ୍ମେ ଦାସ । ଦୀନ ଅଚ୍ୟୁତ ଖଣ୍ଡେ ଦୋଷ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ଚତୁର୍ଥ ଛାନ୍ଦ ॥

—୦—

# ପଞ୍ଚମ ଛାନ୍ଦ

ଯାଦବ ବନ୍ଧୁ ପୁଣ ପୁଣ । ଯାହ୍ନ ଶ୍ରୀଗୁରୁ ପରଯାଣ ।
କଣ୍ଠ ଠାବରେ ଯେତେ ମନ୍ତ୍ର । କହୁବା ଏଥିର ତଦନ୍ତ ॥
କାମ ଗାୟତ୍ରୀ ଯେ ସାବତ୍ରୀ । ରୁଦ୍ରସ୍ତ୍ରୀ ବ୍ରହ୍ମ ଗାୟତ୍ରୀ ॥
ଏ ମନ୍ତ୍ର ସ୍ଫଟିକରେ ପୁଣ । ଲେଖିବ ପୃଷ୍ଠପରେ ପୁଣ ॥

ଗାୟତ୍ରୀ ଛନ୍ଦକୁ ରୁଦ୍ରାକ୍ଷେ । ଲେଖିବ କଣ୍ଠ ବେକପାଖେ ।
ତୁଳସୀ ମନ୍ତ୍ରକୁ ଯେ ପୁଣ । ଲେଖିବ କଣ୍ଠନାଳେ ପୁଣ ॥
ଝଙ୍କା ଗୋଟିଏ ଯେତକର । ଲେଖିବ ମନ୍ତ୍ରକୁ ସୁମର ॥
ଏମନ୍ତେ ଲେଖନେ ଲେଖିବ । ସେ ଶିଷ୍ୟ ଭଗତ ଲଭିବ ॥
ଗୁରୁଙ୍କୁ ଦକ୍ଷିଣା ନ ଦେଇ । ଯେ ଶିଷ୍ୟ ନାମଗ୍ରାହୀ ହୋଇ ॥

ନିଷ୍ଫଳ ତାହାର ଜୀବନ । ଲଭଇ ସେହୁ ପଶୁଜନ୍ମ ।
କେ୍ୟାତ କ ଶ୍ରୀଗୁରୁଙ୍କ ବୋଲି । କେ କି ଗୁରୁ ଯେ ଗଲେ ଭୁଲି ।
ନ ପାଇ ତଦ୍ବିର ବସ୍ତୁର । ଭୁଲି ମରନ୍ତି ଏ ସଂସାର ॥
ଗୁରୁ ଶିଷ୍ୟର ଦେହ ଯାଇ । ବାସନା ଯୁଗେ ଯୁଗେ ଥାଇ ॥
ମଳୟ ପବନ ଲାଗିଲେ । କାଠ ଚନ୍ଦନ ହୋଏ ଭଲେ ॥

ଗୁରୁଟି ସମାଧିକ କହୁ । ଏଣୁଟି ବଡ଼ ତହୁଁ ନାହିଁ ।
ସମାଧି ସାଧି ଯେବା ଥିବ । ସେ ଫଳ ପକ୍ୱଫଳ ଲଭିବ ॥
ସମାଧି ସାଧନ ହେଲସ । କେଉଁଠି ଫଳ ପ୍ରାପ୍ତେ ନାଶ ॥
ଏଣୁଟି ଶ୍ରୀଗୁରୁ ପ୍ରବନ୍ଧ । କୃଷ୍ଣ କହନ୍ତି ଗୁରୁ କର୍ଣ୍ଣେ ॥
ଯେ ଗୁରୁ ଗୁରୁ ଚିହ୍ନି ଥିବ । ତାଠ ରେ ଦେହକୁ ଲଭିବ ॥

---

୭-୨—ମନ୍ତ୍ରକୁ ବସ୍ତୁର (ଖ) । ୧୦-୨—ଜନ୍ମ ନୋହିଲ ପଶୁ ଜନ୍ମ (କ)
୧୮ । ଏଣୁଟି ଗୁରୁ ସୁଭାସନ । କୃଷ୍ଣ କରନ୍ତି ଗୁରୁକର୍ଣ୍ଣେ (କ) ?

ଯେ ଗୁରୁ ନ ଜାଣନ୍ତ ଗୁରୁ ନିଷ୍ଫଳ ଉପଦେଶ କରୁ ।୨୦।
ମାସରେ ପାଞ୍ଚଦିନ ଲେଖି । ଗୁରୁ ଶ୍ରୀମୁଖ ଆସି ଦେଖି ॥
ଦ୍ୱି ଏକାଦଶୀ ସଙ୍କ୍ରାନ୍ତି । ପୂର୍ଣ୍ଣିମୀ ଅମାବସ୍ୟାକୁ ଚିନ୍ତ ॥
ଏମନ୍ତେ ଷାଠିଏ ଯେ ଦିନ । ଗୁରୁଙ୍କୁ କରେବ ଦର୍ଶନ ॥
ଯେ ଅବା ଫଳେ ପୁଷ୍ପେ ମିଳେ । ଦେବ ଯେ ଗୁରୁଙ୍କର ଆଗେ ॥

ଶୁଣ ପଣ୍ଡିତ ବିଷ୍ଣୁଦେବ । ପୁରାଣେ ଏ କଥା ବୁଝିବ ।୨୫।
ଏ କଥା ବେଦରେ ପ୍ରମାଣ । ଗୀତା ଶ୍ରୀ ଭାଗବତେ ଶୁଣ ॥
ପରଖି ବିବେକ ସାଧୁଙ୍କୁ । ଆପଣେ ବିଚାର ମନକୁ ॥
ଛାଡ଼ ଭଗତ ଗ୍ରହାସର । ବିଶ୍ୱାସ ଅନନ୍ତ ମୋହର ॥
ଛାଡ଼ ଭକତ କର୍ଣ୍ଣସାର । ଅସ୍ଥା ଅନନ୍ତ ଏ ମୋହର ॥

ଗୁପତ କରଣ ରଖିବ । ପାଷାଣ୍ଡେ କେବେ ନ କହିବ ।୩୦।
ଦାମ୍ଭିକ ଲୋକକୁ କହିଲେ । ଖୋଡ଼ ଜନ୍ମଇ ଅଙ୍ଗେ ଭଲେ ॥
ଯେ ନର ପର ହିଂସା କରେ । ତାକୁ କହିଲେ ପୁଣ୍ୟ ମରେ ॥
ଯେ ନର ନ କହନ୍ତି ସତ । ତାଙ୍କୁ କହିଲେ ନାଶେ ବିତ୍ତ ॥
ବହୁତ ସଭାରେ ବସାଇ । କହିଲେ ବିପତ୍ତି ପଡ଼ଇ ॥

କୋଟିକେ ଗୋଟିଏ ଯେ ଶିଷ୍ୟ । କିଞ୍ଚିତେ ଲଭେ ଭକ୍ତିରସ ।୩୫।
ଏ ଅଟେ ଗୁରୁଙ୍କ ବେଭାର । କହିବ କାହିଁ ମୁଁ ମୂର୍ଖର ॥
ଅତି ହୀନ ଯେ ଜ୍ଞାନ ମୁହିଁ । ଭବରେ ପଡ଼ିଣ ଅଛଇ ॥
କ୍ଷଣେ ନିମିଷେ ଗୁରୁ ଧ୍ୟାନ । ଧ୍ୟାନେ ପାଇବ ଭକ୍ତି ସ୍ଥାନ ॥
ଦାସ ଆବୋର ମୁଁ କହିଲି । ଦୀନ ଅଚ୍ୟୁତ ଭବେ ଭୁଲି ।୩୯।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ପଞ୍ଚମ ଛାନ୍ଦ ॥

**X**

# ଷଷ୍ଠ ଛାନ୍ଦ

ପୁଣ ଯେ ଧର୍ମ୍ମ ମୂଢ଼ ମୂର୍ତ୍ତି । ପୁରୁ ଗୁରୁଙ୍କ କଥା ପାଇଁ ।୧।
ପଣସ୍ତୁ ଲଗିଲ ମନର । ଏତ ଅଗମ୍ୟ ଅଗୋଚର ॥
ଆପଣେ ସ୍ୱୟଂ ଦେହ ବହି । ଆମ୍ଭଙ୍କୁ ନସ୍ତାରିବା ପାଇଁ ॥
ଏ ରୂପେ ଦେଖିଲେକ ପୁଣି । ପାପ ରହୁବ କ ଅଙ୍ଗେଣ ॥
ଶୁଣିଣ ଅର୍ଜ୍ଜୁନ ଝର ଝର । ଧର୍ମ୍ମ ପୁଚ୍ଛିଲୁ ଅଗୋଚର ।୫।
ଗୁରୁଙ୍କ ଗୁରୁ ଯେ ପୁଚ୍ଛିଲ । କହୁତ କେବା ଅଛୁ ତୁଲ ॥
ହରବ ଗୁରୁ ଦୀକ୍ଷା ପାଇଁ । ବସିଲେ ବଦରିକା ଯାଇ ॥
ଜନକ ରାଜାଙ୍କୁ ଯେ ଶୁକ । କହିଲେ ଗୁରୁଙ୍କ ବିବେକ ॥
ଶ୍ରୀକୃଷ୍ଣ ଅର୍ଜୁନେ କହିଲେ । ଗୁରୁଭଗତି ଯେ ବୁଝିଲେ ॥
ଗୁରୁଭକତି ଦୀକ୍ଷା ପାଇ । ନବ ମୁକ୍ତ ଯେ ବୋଧ ହୋଇ ।୧୦।
ଗୁରୁ ସମାଧି ଯେ ନିଶ୍ଚଳ । ତେଜିଲେ ରାଜଗୃହ ଫଳ ॥
ରାଜ ତପସ ଗୁରୁ ପଦ । ଥିଲେ ନୋହିଲେ ଯେ ବିଚ୍ଛେଦ ॥
ଅଖଣ୍ଡ ଗୁରୁ ଖଣ୍ଡ ନୋହେ । ସର୍ବଦା ପ୍ରାତ ସୂର୍ଯ୍ୟମଧ୍ୟେ ॥
ନୀଳ ଶ୍ୟାମଳ କୃଷ୍ଣ ରୂପ । ଆରକ୍ତ ଗୁରୁଙ୍କ ସ୍ୱରୂପ ॥
ଆରକ୍ତ ଗଉର ସ୍ୱଭାବ । ରାଧା ଶ୍ରୀଗୁରୁ ରୂପ ଭାବ ।୧୫।
ଶ୍ୱେତ ଧବଳ ଶିଷ୍ୟ ଭାବେ । ଚନ୍ଦ୍ରାବଳୀ ଯେ ବଳଦେବେ ॥
ଏ ତିନି ରୂପ ତିନି କଳା । ତିନିରୁ ଆଠ ଯେ ହୋଇଲା ॥
ଆଠରୁ ହଇଲ ଯେ ଷୋଳ । ଷୋଳରୁ ବତିଶ ଯୁଗଳ ।୧୮।
ବେଦ ବର୍ଣ୍ଣ ଚଉଷଠି । ଗୁରୁ ସକଳ ଭୂତ ଏଟି ॥

---

୩—୨ ଅମ୍ଭାଙ୍କୁ ନସ୍ତାରିବା (ଖ)
୧୦—୨ ଅଙ୍କିତ ଗୁରୁଙ୍କ (କ) ୧୫—୧ ଅଙ୍କିତ ଗଉର (କ);
୧୯—୨ ଭୂତେ ତିସ୍ଥି (କ);

ଏ ଗୁରୁ ଚହ୍ନିଲେ କାରଣ । ନୋହିଲେ ଜନ୍ମଧିକ ପୁଣ ।
ମନ୍ତ୍ର ଅଟଇ ଗୁରୁ ଗୁଣ । ଶିଷ୍ୟ ଶୁଣିଲ ଯେ ଶ୍ରବଣ ॥
ଗୁରୁଙ୍କ ପଦ ନ ଦେଖିଲ । କଥା ଶୁଣିଣ ଭୁଲି ମଲ ॥
ଷୋଳ ନାମ ଯେ ହରି ଗୁଣ । ଅଷ୍ଟାଦଶ ଯେ ଗୋପ ପୁଣ ॥
ରାମ ତାରକ ରାମ ଲୀଳା । ଏମନ୍ତ ଯୁଗ ତିନ କଲା ॥
ମନ୍ତ୍ର ଯେ ନାରାୟଣ କହି । ଏମନ୍ତ କଳି ଯୁଗ ହୋଇ ।
କଳି ଯୁଗରେ କଳି କଥା । ଏଥିକି କୋଟି କୋଟି ପୋଥା ॥
ପଦକୁ ସୁମୃତ ଯେ ଗାଡ଼ । ସୁମୃତ ଶୋଳକ ଯେ ଦଢ଼ ॥
ସୁମୃତ ମନ୍ତ୍ର ଗାଢ଼ କହି । ମନ୍ତ୍ର ଓଁକାର ବଡ଼ ହୋଇ ॥
ଓଁ କାରୁ ବଡ଼ ଅଟେ ଧ୍ୟାନ । ଧ୍ୟାନ ଅଟଇ ଗୁରୁଥାନ ॥
ଧ୍ୟାନ ନ ଜାଣି ଶିଷ୍ୟ କରେ । ଶିଷ୍ୟକୁ ଦରଶିଙ୍କା କରେ ।
ଲୁଣ ନ ପଡ଼ିଲେ ଯେମନ୍ତ । ସେ ଶିଷ୍ୟ ନଷ୍ଟଲ ଜନ୍ମତ ॥
ସଣସ୍ତ ନୁହଇ ଯେ ଦୂର । ଚକ୍ଷୁ ନ ଥିଲ ପ୍ରାଏ ନର ॥
ଅଗାଡ଼ି ବୋଇଁ ଧାନ ଏକ । ହିଡ଼ାଲ ଯେମନ୍ତେ କରଷକ ॥
ତେସନ ପ୍ରାଏ ଯେତେ କି ଷ୍ୟ । ଧନ ପ୍ରାଣୀରେ କରେ ନାଶ ॥
ଅକାର୍ଯେ ଧନ ଯେ ହରଲ । ଭକ୍ତି ନଷ୍ଟଲେ ଦନ ଗଲ ।
ବାବୁ ଶ୍ରୀରାମ ଦାସ ଶୁଣ । ରାହାଯ ଉତ୍‌ଥାନ ହେ ପୁଣ ॥
ଯେଉଁ ପଥରେ ପଣବାର । ଶିଷ୍ୟର ଦାସ୍ତୀ ଯେ ସର୍ବ୍ଵର ॥
ସାରଙ୍ଗ ଗୋସାଇଁ ମୋହର । ଅଚ୍ୟୁତ ତହିଁ ପଣବାର ॥
ଲଳିତ ସଖୀର ଭଜନ । ବନ ଅଟଇ କୁଞ୍ଜବନ ॥
ସୁଦାମ ସଖାଙ୍କ ଭଗତ । ମନ୍ତ୍ର ଯେ ହରେକୃଷ୍ଣ ତନ୍ତ୍ର ।
କୃଷ୍ଣ ହରେ ଯେ ମନ୍ତ୍ର ବନ୍ଦ । ଗୋପାଳ ମୂରତ ଯେ ପୁଜ ॥
ଦିଗ ଯେ ପୁବରେ ବାସ୍ରାମ । ନାରଦ ଋଷିର ଆଶ୍ରମ ॥

---

୧୩—୨ ଗୋପଗଣ (କ);
୨୭—୨ ଶୋଳକ ଯେ ଗାଢ଼ (ଗ); ୩୭—୨ ସର୍ବ ଦାସ୍ତୀ ଯେ (ଖ);
୩୯—୨ ନବ ଅଟଇ (ଖ); ୪୧—୧ ମନ୍ତ୍ର ବୀଜ (ଖ);

ଭଜନ ପଞ୍ଚାକ୍ଷର ଦଢ଼ । ଷଡାକ୍ଷର ଯେ ତନ୍ତ୍ର ଗୂଢ଼ ॥
ଏହା ନ ଜାଣି ଶିଷ୍ୟ କରେ । ଗୁରୁ ଅପ୍ରାଧ ଦ୍ରୋହ କରେ ॥
ଗୁରୁ ନିନ୍ଦକ ହୋଏ ପୁଣ । ଏଣୁ ଅପ୍ରାଧର କାରଣ ।୪୫।
ସାଧିବ ଗୁରୁଙ୍କ ବିଚାର । ତେବେ କଶବ ଶିଷ୍ୟ ଘର ॥
ଛତ୍‌ଆନ ଶୁଣ ହେ ବଚନ । ଖୋଳ ପୂଜାର ମନ୍ତ୍ର ଯେନ ॥
କର୍ତ୍ତାଳ ମନ୍ତ୍ର ପୂଜା ଯେତେ । ମୁକୁନ୍ଦ ଯେନ ଦୃଢ଼ ଚିତ୍ତେ ॥
ବେଣୁ ବଇଁଶୀ ପୂଜାବିଧି । ଯାଦବ କଶବ ହେ ସିଦ୍ଧି ॥
ଶ୍ୱେତ ସିଦ୍ଧିର ମନ୍ତ୍ର କର୍ମ୍ମ । ବାଳକ ଯେନ ଏହୁ ଧର୍ମ୍ମ ।୫୦।
ମନ୍ତ୍ର ଯେ ଶଙ୍ଖ ସିଂହାସନ । ଯାଦବ ହୃଦୟରେ ଯେନ ॥
ମନ୍ତ୍ର ଯେ କପଡୂଳ ଯେତେ । ପବନ ସୁମଣବ ଚିତ୍ତେ ॥
ଗୋପାଳ କୁଳର ବିଧାନ । ଶ୍ରୀ ବୃନ୍ଦାବନର ଏ ଚିହ୍ନ ॥
ଓଡ଼ିଶା ଦେଶରେ ପ୍ରଚର । ଆଜ୍ଞା ଯେ ନନ୍ଦସୁତା ଠାକୁର ॥
ଯେ ଆଜ୍ଞା ମନରେ ସୁମର । ଗୋପାଳ କୁଳକୁ ଉଦ୍ଧର ।୫୫।
ଏଣୁ ମୁଁ ଲଭିଲି ଜନମ । ତୁମ୍ଭଙ୍କୁ ଦେଲି ଦୀକ୍ଷାକର୍ମ୍ମ ॥
ଜଗତ ହିତେ ଏହୁ ପାଠ । ରଖିଲୁ ତୁମ୍ଭ ଘରେ କୋଠ ॥
କଳି ଭଗତ ଏହା ପଢ଼ି । ଶିଷ୍ୟ ଏସବେ ହେବେ ଜଡ଼ି ॥
ଏ ଗ୍ରନ୍ଥ ପଢ଼ିଲେ ଯେ ପୁଣ । ସଂଶୟ ହୋଇବ ହରଣ ॥
ଗୁପତ ଗୁପତ ଗୁପତ । କେବେହେଁ ନକର ପ୍ରକଟ ।୬୦।
ନାମ ଦେବାର ଶିଷ୍ୟଠାରେ । ଏ ଗ୍ରନ୍ଥପୂଜା ସେ ଦିନରେ ॥
ଅନ୍ୟଥା ଦିନେ ନ ପଢ଼ିବ । ଶିଷ୍ୟଙ୍କୁ ଗୁପତେ କହିବ ॥
ବାର ବରଷ ସେବା କଲେ । କିଛୁ ପାଇବ ଅବା ଭଲେ ॥
ପଢ଼ି ଶୁଣିଲେ ନ ବୁଝିବ । ଶ୍ରୀଗୁରୁ କୃପାରେ ପାଇବ ॥
ଶ୍ରୀକୃଷ୍ଣ କରୁଣା ଯେ କଲେ । ଗଣେଶ ହସ୍ତେ ଯେ ରହିଲେ ।୬୫।

---

୪୩—୧ ପଞ୍ଚାକ୍ଷର ଦଢ଼; ୪୩—୨ ଅଣକ୍ଷର ଯେ ତନ୍ତ୍ର ତ (କ);
୪୭—୨ ଯନ୍ତ୍ରଯେନ (କ); ୫୭—୨ ଘରେ ପେଣୁ (ଖ);
୫୯—୨ ହୋଇବ ଦହନ (ଖ)

ଜିହ୍ୱାରେ ସରସ୍ୱତୀ ଯେଣୁ । ଲକ୍ଷେ ଗ୍ରନ୍ଥ ଯେ ଲେଖି ତେଣୁ ॥
ଗୁପତ ଗ୍ରନ୍ଥ ଯେ ଆଗତ । କୋଟିଏ ଭଗତର ଜମନ୍ତ ॥
କୋଟିଏ ସମାଧି ଭକ୍ତହସ୍ତେ । ରଖିଲୁ ଏ ଗ୍ରନ୍ଥ ଗୁପତେ । ୧୯ ।
କଳଙ୍କିନାଥର ସମୟେ । ଏ ଗ୍ରନ୍ଥ ପ୍ରକାଶ ହୃଦୟେ ॥
ଶୋଭିତା ସେ ଜନ ଭଗତ । ସେ ଜନପାଦେ ମୋର ଚିତ୍ତ । ୨୦ ।
ମୁଁ ଇ ପାଇବ ଅବା କାହିଁ । ମନରେ ଅଛଇଁ ସେ ଧ୍ୟାଇ ॥
ଚିତ୍ରୋତ୍ପଳା ନଦୀ ତୀର । ସୁହାଙ୍କ ନେମାଳ ଉତ୍ତର ॥
ଏ ସ୍ଥଳେ ଜନମ ଲଭିଲ । ଦୀନ ଅଚ୍ୟୁତ ଭବେ ଭଲ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଷଷ୍ଠ ଛାନ୍ଦ ॥



# ସପ୍ତମ ଛାନ୍ଦ

ପୁଣ କହିବା ବାସ୍ତ ଶୁଣ । ହେତୁ କରଣ ମନେ ଗୁଣ ।୧।
ରହାସ ଗୁରୁ ପରିବାର । ଏ କଥା ବିଚାର ମନର ॥
ସଂକୀର୍ତ୍ତନରେ ଯେ ପଶିବ । ରହାସ ଗୁରୁ ସୁମରିବ ॥
ସେ ପରିବାର ଗୁଣ ଧରି । ପୀଢ଼ିକୁ ପୀଢ଼ି ଯେ ସୁମରି ॥
ମିଳିବ ନଦିଆ-ଠାକୁର । କୀର୍ତ୍ତନେ ମିଳିବ ଶରୀର ।୫।
କୀର୍ତ୍ତିରୁ ଶ୍ରୀବୃନ୍ଦାବନରେ । ପୁଣ ମିଳିବ ରହାସରେ ॥
ରହାସୁଁ ଗୋଲୋକେ ପଶିବ । ତେବେ ସେ ଭଗତି ଲଭିବ ॥
ଉତ୍କଳେ ନିଜଗୁରୁ ଗୁଣି । ନଦିଆଠାରେ ତିନି ପୁଣି ॥
ଶ୍ରୀ ବୃନ୍ଦାବନେ ତିନି ଥିତି । ଏମନ୍ତେ ନବଧା ଭଗତି ॥
ଉତ୍କଳେ ତିନି ଅଙ୍ଗ ଧରେ । ଉତ୍‌ଥାନ ରାମ ଅଚ୍ୟୁତରେ ।୧୦।
ସୁନ୍ଦର ଚଇତନ୍ୟ ଅଭି । ନଦିଆ ତିନି ଗୁରୁ ଲଭି ॥
ଦାମ ସୁଦାମ ଯେ ଲଳିତା । ଶ୍ରୀବୃନ୍ଦାବନରେ ଯେ ଚିହ୍ନା ॥
ଶ୍ରୀରାଧା କୃଷ୍ଣ ଯେ ଗୋଲୋକ । ଗୁରୁ ଗଣରେ ଏ ବିବେକ ॥
ଏହାଙ୍କ ଠାବରେ ମିଳିବ । ଗୁରୁଅଙ୍ଗ ଯେ ଧରି ଜୀବ ॥
ରହାସ ଦାସ ଶିଷ୍ୟ କରେ । ଏହା ନ ଜାଣି ସ୍ୱେ ପଥରେ ।୧୫।
ମିଳନ୍ତି ରହାସ ମଣ୍ଡଳୀ । ପ ଡକ କରନ୍ତି ସଙ୍ଗାଳି ॥
ଅନ୍ନ ବସନ ନ ମିଳିବ । ସଂସାରେ ବଡ଼ମୂର୍ଖ ହେବ ॥

---

୧୫—୨ ଏହା ନ ଜାଣେ ଯେ ପଥରେ (କ)

କହିଲୁଁ ଗୁରୁଙ୍କ ବଚନ । ସ୍ୱାହାସ ଦାସ ହେତୁ କର
ଚୈତନ୍ୟ ମନ୍ତ୍ରକୁ ଯେ ପୁଣ । ତୁଳସୀ ପୁଷ୍ପ ଲେଖନେଣ ।
ଲେଖିବ ହୃଦୟ ମଧ୍ୟରେ । ଶିଷ୍ୟଙ୍କୁ ଗୁପତ ଭେଦରେ ॥୨୦॥
ଲଳିତା ସଖି ମନ୍ତ୍ର ଗୁଣି । ସୁବର୍ଣ୍ଣ ଭ୍ରମର ଯେ ଘେନ ।
ଦକ୍ଷିଣ ବାହୁର ଉପରେ । ଲେଖିବ ଶିଷ୍ୟଙ୍କୁ ହେତୁରେ ॥
ସ୍ୱାହାନ ମନ୍ତ୍ରକୁ ଯେ ଶୁଣ । ଲେଖିବ ବାମ ଭୁଜେ ପୁଣ ॥
ଅନାମିକା ଯେ ଅଙ୍ଗୁଷ୍ଠିରେ । ଟଣ୍ଡି ହୁଳଦ ଘେନ କରେ ॥
ସ୍ୱାହାନ ମନ୍ତ୍ରକୁ ଯେ ପୁଣ । ହୁଳଦୀ ଲେଖନେ ଲେଖିଣ ॥୨୫॥
ଏତେ ମନ୍ତ୍ର ଯେ ଏକା ଦନେ । କହିବା ଶିଷ୍ୟଙ୍କୁ କ କର୍ଣ୍ଣେ ॥
ଶୁଣ ହେ ଭକ୍ତ୍ୟ ପରଭକ୍ତ୍ୟ । କହିବା ଏଥିର ତଦନ୍ତ ॥
ମନ୍ତ୍ର ଗୋଟିକେ ଦନେ ଦନେ । କହିବା ଶିଷ୍ୟଙ୍କୁ ଯତନେ ॥
ମନ୍ତ୍ରକୁ ବରଷେ ଶିଖାଇ । ପୁଣ ବରଷେ ଯନ୍ତ୍ର କହି ॥
ତନ୍ତ୍ର ଭେଦିବ ଯେ ବରଷେ । ପୂଜା ସାଧିବ ବାରମାସେ ॥୩୦॥
ଗୁମ୍ଫା ସାଧିବ ଯେ ବରଷେ । ଅବାଡ଼ ସାଧି ବାରମାସେ ॥
ଜ୍ୟୋତିକ ବରଷେ ସାଧିବ । ପବନ ଅଭ୍ୟାସେ ଧରିବ ॥
ସମାଧି ବରଷେ ଧରିଣ । ରୂପ ଚିହ୍ନିବ ବରଷେଣ ॥
ଆଧାର ସାଧିବ ବରଷେ । ଦକ୍ଷିଣ ସାଧି ବାରମାସେ ॥
ଏମନ୍ତେ ବାର ଯେ ବରଷ । ଶିଷ୍ୟ ପାଇବ ଭକ୍ତି ରସ ॥୩୫॥
ଭକତି ପାଇଲେ ନିଶ୍ଚଳ । ଛାଡ଼ିବ ମନ ବା ଚଞ୍ଚଳ ॥
ମଲେ ଜୀଇଲେ ସମମତ । ଏମନ୍ତେ ଶିଷ୍ୟ ଗୁରୁମତ ॥
ଶିଷ୍ୟଙ୍କୁ ଗୁରୁ ଆଜ୍ଞା ଦେବ । ଗୁରୁଙ୍କୁ ଶିଷ୍ୟ ପଚାରିବ ॥
ତେବେ ସଂଶୟ ହେବ ଦୂର । ନ ପୁଛେ ମୂଢମତି ନର ॥
ପତିଭଗତା ନାରୀ ଯେହ୍ନେ । ଚାତକ ଆକାଶେ ଯେସନେ ॥୪୦॥
ନପୁଂଶୀ ପୁତ୍ରକୁ ଯେମନ୍ତ । କୃପଣ ଧନେ ଯେହ୍ନେ ଚିତ୍ତ ॥
କାମୀ ପୁରୁଷ କାମିନୀରେ । କସ୍ତ୍ରାନ୍ଧ ଗଜ ଯେହ୍ନେ ଧରେ ॥
ଭୋକୀ ଆଗରେ ଅନ୍ନ ଯେହ୍ନେ । ତେମନ୍ତ ପ୍ରାଣେ ଚିନ୍ତି ଧ୍ୟାନେ ॥
ଗୁରୁ ଠାବରେ ମନ ଦେଲେ । ମନ୍ତ୍ର ଯନ୍ତ୍ର ଯେ ମିଳେ ଭଲେ ॥

ଅର୍ଘେଁ ନା ଡାକୁଡ଼ର ଫଳ । ମନ କରନ୍ତୁ ଯେ ଚଞ୍ଚଳ ।।୪୫।
ସେ ହୃଦେ ଚାହିଁ ଏ ବସ୍ତୁର । ପାଇବ ଗୁରୁଙ୍କ ଭଣ୍ଡାର ।।
ମନକୁ ବନ୍ଧିଲେ ଭକତ । ମନ ମଧ୍ୟରେ କୃଷ୍ଣ ଚନ୍ଦ୍ର ।।
ମନ ଚପଳେ ନାଶ ଗଲି । ଧ୍ୟାନ ଅଚ୍ୟୁତ ଜଡ଼େ ଭୁଲି ।।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ସପ୍ତମ ଛାନ୍ଦ ।।



୪୫—୨ ଯେ ଚଞ୍ଚଳ (କ); ୪୬—୧ ହୃଦସ୍ଥେ କଲୁ ଏ ବସ୍ତୁର (ଗ)

# ଅଷ୍ଟମ ଛାନ୍ଦ

ସଂଶୟ ଫେଡ଼ିବା ଗୁରୁ ଲାଗିଲା ତ ଧନ୍ଦ ।
ଗୁରୁ ନ ଚହ୍ନିଲା ଲୋକ ହୋଇଲା ତ ଅନ୍ଧ । ୧ ।
କରୁଣା କରିବା ନାଥ ବ୍ରହ୍ମାଣ୍ଡ ଧରଣ ।
ଗୁରୁ ବିନୁ ସଂସାରେ ତ ନାହିଁ ପରିତ୍ରାଣ । ୨ ।
ଗୁରୁ ମନ୍ତ୍ର ଦେଇ କରି ଶିଷ୍ୟଙ୍କୁ ତ ଗଲେ ।
ସେ ଶିଷ୍ୟ ତରେ କେମନ୍ତ ଭବଜଳୁ ଭଲେ । ୩ ।
ଗୁରୁ କଥା ଶୁଣିଲା ତ ଶ୍ରବଣର ଚଟ ।
ଗୁରୁ ନ ଦେଖିଲେ ତ ହୋଇଲ ଛଟପଟ । ୪ ।
ଏ ଭବ ସଂସାରେ ଜାତ ହୋଇଲେ ତ ମନ୍ଦ ।
ବସ୍ତ୍ର ନ ଛାଡ଼ନ୍ତି ମନ୍ଦେ ଧଇଲେଣ ଗନ୍ଧ । ୫ ।
ଗୁରୁ ଆଜ୍ଞେ କରି ବସ୍ତ୍ର ଛାଡ଼ିଲେ ଶରୀର ।
ନରଦେହ ଗୋଟାକୁ ସେ ଗୁରୁ ବଡ଼ ସାର । ୬ ।
ଶ୍ୱେତ ରଙ୍ଗ ଶ୍ୟାମଳ ଅଛଇ ଯେଉଁ ନେତ୍ର ।
ତହିଁ ଜ୍ୟୋତି ମଧ୍ୟେ ରଙ୍ଗ ଗୁରୁରୂପ ଚନ୍ଦ୍ର । ୭ ।
ଏ ଗୁରୁଙ୍କୁ ଯେଉଁ ଜନ ପାଇଅଛି ଭେଟ ।
ମରିବା ଜୀଇବାକୁ ସେ ନୁହଇ ତରସ୍ତ । ୮ ।
ମରଣ ସମୟେ ଯେତେ ମନ୍ତ୍ର ଶିକ୍ଷା ଥାଇ ।
କଣ୍ଠ ବନ୍ଧନ ହୋଇଲେ ସୁମରିବ କାହିଁ । ୯ ।
ଏଣୁ କରି ମନ୍ତ୍ର ଅଟେ ଗୁରୁଙ୍କର କଥା ।
ମୂଢ଼ାତ୍ମା ଶିଷ୍ୟଙ୍କୁ ସିନା ମନ୍ତ୍ର କରି ପୋଥା । ୧୦ ।
ଉତ୍ତମ ଶିଷ୍ୟ ନିମନ୍ତେ ଗୁରୁରୂପ ଧ୍ୟାନ ।
ଇଚ୍ଛା ସୁଖେ ମରଣ ସେ ଇଚ୍ଛାସୁଖେ ଜନ୍ମ । ୧୧ ।

ରାମଚନ୍ଦ୍ର ଦାସ ଷଣେ କମିଷ୍ଟେ ଯେ ମିଶେ ।
ଗୁରୁଙ୍କ ଦର୍ଶନେ ଭବଭୟ ହୋଏ ନାଶେ । ୧୨ ।
ଏ ଭେଦ ନ ଜାଣି ଯେବା ଦୁଅନ୍ତି ଗୁରୁ ।
ମୁଁ କାର ବଡ଼ ପଣରେ ଫୁଟି ଭ୍ରମି ମରୁ । ୧୩ ।
ମୁହିଁ ବଡ଼ ଗୋସାଇଁ ମୋଠାରୁ ନାହିଁ ବଡ଼ ।
ମଲେଣ ଜନ୍ମ ଲଭଇ ଶୃଗାଳ ସେ କୋଡ଼ । ୧୪ ।
ପେଟର ଜମନ୍ତେ ସ୍ୱପ୍ନେ ଏ ଜନ୍ମ ବୁଲିଲା ।
ଜନ୍ମ ଅନ୍ତେ ବୁଲି ପେଟ ପୋଷି ନ ପାରିଲା । ୧୫ ।
ଗୁରୁଟମ୍ମ ନ ସାଧିଣ ଯେନ୍ତୁ କରେ ଶିଷ୍ୟ ।
ସେ ଜନକୁ ଇନ୍ଦ୍ରପର ଲୋକେ ଉପହାସ । ୧୬ ।
ରାମଚନ୍ଦ୍ର ଦାସର ଯେ ଏକ ଗୁପ୍ତ ଶୁଣ ।
ପୂର୍ବେ ସତ୍ୟଯୁଗେ ଏକ ଅଛୁ ପରମାଣ । ୧୭ ।
ଓରେ ମେଣ୍ଢା ବୋଲିକରି ଶିଷ୍ୟକୁ କହିଲା ।
ସେ ଶିଷ୍ୟ କେମନ୍ତେ ଗଡ ଲଣ୍ଡି କରି ଗଲା । ୧୮ ।
ଶିଷ୍ୟବାକ୍ୟ ଶୁଣି ଅଶ୍ରୁ ଗଳେ ଝର ଝର ।
ଭଲ ପରୁଶିଲୁ ଏବେ ସନ୍ଧର ବରୁର । ୧୯ ।
ପୂର୍ବାପୂର୍ବେ ଯେଉଁ କଥା ଉପଲକ୍ଷେ ଶୁଣ ।
ଗୀତା ଭାଗବତେ ବେଦ ପୁରାଣେ ପ୍ରମାଣ ୨୦ ।
ଶିଷ୍ୟର ହେତୁରେ ପିନା ଶିର ତରିଗଲା ।
ଗୁରୁ ତ ପଥ ନ କହି ଅମଡ଼ା ପେଲିଲା ।୨୧।
ଶିଷ୍ୟର ହେତୁରେ ପିନା ଅମଡ଼ା ମାଡ଼ନ୍ତି ।
ରାଜଦାଣ୍ଡେ ରୂଲିଯାନ୍ତେ ହାଣ୍ଡି ଯେ ପାଦାନ୍ତି ।୨୨।
ଜାଣିଲା ସନ୍ଦେଶେ ଜନ ଥାନ୍ତି ଯେଉଁ ଗ୍ରାମ ।
ନ ଜାଣିଲା ଜନ କି କରିବା ତାଙ୍କ ସମ ।୨୩।

---

୧୨—୧ ରାମଚନ୍ଦ୍ର ଦ୍ୱାଦଶଛନ୍ଦେଣ ଘେନ ମିଶେ (ଖ)
୧୨—୨ ହେବ ନାଶେ (ଖ) ୧୬—୨ ଗୁରୁକର୍ମ (କ)

ସଂସାର ବନ୍ଧନକୁ କୃଷ୍ଣ ଏତୁ କଥା ।
ଗୋବିନ୍ଦର କୃଷ୍ଣ ଏଯେ ସଂସାର ବ୍ୟବସ୍ଥା ।୨୩।
ଦ୍ୱାରକା ମଣ୍ଡଳେ ଯେ ଉଦ୍ଧବ କୃଷ୍ଣ ଗୃହେ ।
କୃଷ୍ଣ ଦରଶନ କରି ଗତି ନ ପାଇଲେ ।୨୪।
ଗୁରୁପାଦପଦ୍ମ ଚିନ୍ତି ହୃଦସ୍ଥ କମଳେ ।
ଭଗତ ସାଧିଲ ଯାଇଁ ବଦରିକା ସ୍ଥଳେ ।୨୬।
ଆତ୍ମା ଅପରତେ ଯେଉଁ ନର ହୋଇଥାନ୍ତି ।
ଆତ୍ମାକୁ ନ ଚିହ୍ନିଲେ ଯେ ନ ପାବନ୍ତି ଗତି ।୨୭।
ଏଣୁକରି ଗୁରୁ ହେଉ ହୃଦରେ ସୁମର ।
ଗୁରୁଙ୍କ ପୂଜିବ ଚିହ୍ନି ଅମନ ସ୍ଥାନର ।୨୮।
ଅର୍ଜ୍ଜୁନକୁ ହରି ଯେ ଭାରତେ ସଙ୍ଗକଲେ ।
କୃଷ୍ଣ ଦରଶନେ କର୍ମୀ ଗତି ନ ଲଭିଲେ ।୨୯।
ପୁଣି ଅଷ୍ଟାଦଶ ଅଧ୍ୟା ଗୀତା ବୁଝାଇଣ ।
ଗୁରୁ ଆଜ୍ଞେନର ଭକ୍ତ ହେ ଇତ୍ରୁ କହିଣ ।୩୦।
ବିଦ୍ୟାରୁ ସାର ଅଟଇ ଅବିଦ୍ୟା କହିଲେ ।
ସ୍ୱର୍ଣ୍ଣଜ୍ୟୋତି ଗୁରୁଧ୍ୟାନ ସମାଧି ଯେ ଦେଲେ ।୩୧।
ତେଣୁକରି ଅର୍ଜ୍ଜୁନ ଯେ ଲଭିଲେ ଭଗତି ।
ସ୍ଥାନ ବଡ଼ ନୋହେ ନାମ ଗୋଟି ଯୁଗେ ଥିତି ।୩୨।
ଓରେ ମେଣ୍ଢା ବେଲି ଯେଉଁ ଜନ ଚିନ୍ତା କଲା ।
ରୂପକୁ ଦେଖିଲା ସିନା ନାମ ନ ପାଇଲା ।୩୩।
ରୂପ ଦେଖିବାକୁ ତ ସମସ୍ତ ଜନ ପାରି ।
ନାମକୁ ପରତେ ଘଟ ଏକ ଏକ ପାରି ।୩୪।
ଗୋପୀ ରୂପ ଦେଖିକରି ଶୋକେ ବୁଡ଼ିଥିଲେ ।
ଉଦ୍ଧବ ଭେଟେଣ ନାମ ପରତେ ହୋଇଲେ ।୩୫।

---

ପ.୧—୧ ବିଦ୍ୟାରେ ସାର ଅବିଦ୍ୟା ବୋଲିଣ କହିଲେ (ଭ)

ଲଳିତା ହଇବ ବସି ନାମ ହଚ୍ଛାଣଲେ ।
ରୂପ ଗଲେ ନାମ ଥିଲ ମନେ ଲସ୍ଥ କଲେ । ୩୭
ଯୋକେ ଗୋପୀ ରୂପକୁ ମୁରୁଚ୍ଛ ନ ପାରଲେ ।
ଯୋକେ ଗୋପୀ ନାମରେ ରୂପକୁ ସୁମରଲେ । ୩୬ ।
ଭବ ତମିଣକ ସୂର୍ଯ୍ୟ କରଣ ଧଣଣ ।
ଗୁରୁରୂପ ଚନ୍ଦ୍ର ଗୋପୀ ଲଭିଲେ କାରଣ । ୩୮ ।
ଯୁଗେ ଯୁଗେ କୃଷ୍ଣ ରୂପେ ସମସ୍ତ ଦର୍ଶନ ।
ସମସ୍ତେ ପାଇବେ କାହିଁ ଗୁରୁହେତୁ ଜ୍ଞାନ । ୩୯ ।
ଗୁରୁଙ୍କ ଭଗତ ବଡ ଅଗମ୍ୟ ଛତ୍ୱର
କ୍ଷଣେ ଦଣ୍ଡେ ନମିଷେ ହୋ ଗୁରୁ ସେବାକର ।୪୦।
ଚୈତନ୍ୟ ଠାକୁର ନବଦ୍ୱୀପରେ ଅବତାର ।
ସକଳଜନେ କହିଲେ ଭଗତ ବତ୍ସର ।୪୧।
ହଅ ଅନ୍ନ ଗୁଆଘୃତ ଭୋଜନର ସାର ।
ନରମିଷ ହୋଇ ନାମ ଭଜବ ମୁଖର ।୪୨।
ରାଧାକୃଷ୍ଣ ଧ୍ୟାନ କର ଭଗତି ଲଭିବ ।
ସକଳ ଜନେ କ ତାହା ପାଇଲେ ହେ ଠାବ ।୪୩।
ଚଉଷଠି ମହନ୍ତ ହେ ଦ୍ୱାଦଶ ଗୋପାଳ ।
ସେମାନେ ଧଇଲେ ଭୋଗ ନରମିଷ ଫଳ ।୪୪।
ମନ୍ତ୍ରଧ୍ୟାନ ଆଗ୍ରେ କର ଭଗତ ଲଭିଲେ ।
ସନାତନ ଗୁରୁ ମୋତେ ଏ ହେତୁ କହିଲେ ।୪୫।
ଦୋଲଗ୍ରାମେ ତାଙ୍କ ବାସ ବୈରାଗ ସେ ଦେହ ।
ଏକ ଶିଷ୍ୟ ମୁହିଁ ତାଙ୍କ ଆଉ ଶିଷ୍ୟ ନାହିଁ ।୪୬।
ମୁହିଁ ଶିଷ୍ୟ ମୁହିଁ ପୁତ୍ର ମୁହିଁ ତାଙ୍କ ଭୃତ୍ୟ ।
କ୍ଷେତ୍ରବରେ ଶ୍ରୀଗୁରୁ ମେ ସମାଧି ବନ୍ଧିତ ।୪୭।

---

୩୭—୨ ରୂପକୁ ବନ୍ଦିଲେ (କ)

ଭଜନ କୁଟୀ ସନ୍ନିଧେ ଗୋପ୍ୟ ଯେ ସମାଧି ।
ଲୀନ ରୂପେ ଏଠାରେ ମୋ ନାମ ସିଦ୍ଧ ଭେଦ ।୮।
ମୋହର ଯେ ଏଠାବରେ ନ ମ ନୋହୁ ପୂର୍ଣ୍ଣ ।
ବୃନ୍ଦ ରହସ୍ୟବ ଯେ ଭଜନ ରେଣୁ ଆନ ।୯।
ଜେଷ୍ଠ ସୁଶମୀର ଦିନ ମୋ ଜନ୍ମ ଗୁପତ ।
ପ୍ରତିପାଳ କରିବ ଯେ ଦାସ ହେ ଅଚ୍ୟୁତ ।୧୦।
ଦଶମୀ ଯାତ୍ରାକୁ ଆସି ଗୁରୁ ପ୍ରତି ବୋଧି ।
କହିଲୁ ହୃଦ୍ଗାନ ଦାସ ହୃଦମ ଏ ବିଧି ।୧୧।
ମୋହର ଚରଣ ଶେଷ ନାଗଶେଷ ମିଳ ।
ସେବକ ଅଟ ଯେ ତୁମ୍ଭେ ବାରକୋଟି ସ୍ଥଳ ।୧୨।
ସନାତନ ଗୋସାଇଁ ଯେ ଏ ବିଧି କହିଲେ ।
ଅଚ୍ୟୁତ ଖ୍ୟମାଙ୍କୁ ଯେ ତାଟ ଜଡ଼ାଇଲେ ।୧୩।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଅଷ୍ଟମ ଛାନ୍ଦ ॥

- X —

## ନବମ ଛାନ୍ଦ

ଶୁଣ ହେ ସୁଜନ ଜନ ଗୁରୁଙ୍କ ବଚ୍ଚର ।
ଦନ୍ତ ଘଷିବାର ମନ୍ତ୍ର ଲେଖି ଯେଉଁଠାର ।୧।
ବାହୁତଳେ ଲେଖିବ ଯେ ତମ୍ବା ଲେଖନରେ ।
ସୁପାତେ ରଖି ପଦାର୍ଥ ବିସ୍ମୁଖ ମନରେ ।୨।
ଆସନ ମନ୍ତ୍ରକୁ ଯେ ଦକ୍ଷିଣ ବାହୁତଳେ ।
ଖପର ଖଣ୍ଡିଏ ଘେନ ଲେଖିବ ହୃଦ୍‌ତଳେ ।୩।
ହସ୍ତେ ନ ଲେଖିବ ମନ୍ତ୍ର ଶୁଣ ହେ ବଚ୍ଚର ।
ଯଥା ଅନୁକ୍ରମେ ଯିନା କଣବ ଗୋଚର ।୪।
ଲୋହ ଖଣ୍ଡକରେ ଯେ ଲେଖିବ କଟୀ ପରେ ।
ପରଶ୍ରାବ ମନ୍ତ୍ରଗୋଟି କହିଲୁ ଏଠାରେ ।୫।
ହିଂସାର ଲେଖନ ଲେଖ ଆରମ୍ଭରେ ପୁଣ ।
ବଗ୍ରେଲା ମନ୍ତ୍ରକୁ ଯେ ଲେଖିବ ବଗ୍ରେଳେଣ ।୬।
ନାଭିତଳେ ଲେଖିବ ଯେ ବ୍ରହ୍ମାମନ୍ତ୍ର ପୁଣି ।
ସାନକର ଖଡ଼୍ଗ ଖଣ୍ଡିଏ ଯେ କରିବ ଘେନ ।୭।
ମନ୍ତ୍ର ମାନଙ୍କର ଯେ ଅଛଇ ଲକ୍ଷଣ ।
ଗୁରୁଙ୍କର ବଚ୍ଚର ଯେ ହିଂସର କାରଣ ।
ଏ କଳି ଯୁଗରେ ନରେ ଧରିବେ କେମନ୍ତେ ।
ନାମ ମନ୍ତ୍ର ଗୁରୁ ଡକ ନ ଧରନ୍ତି ଚିତ୍ତେ ।୯।
ଫଣେଶ ଲଗୁଛୁ ପ୍ରଭୁ କଳିଯୁଗ ନର ।
ବିବେକ ସନ୍ଧ ନ ଘେନ ଦୁଃଖେ ତତପର ।୧୦।
ଶୁଣ ହେ ସୁସାଧୁ ଜନେ ସର୍ବ ନର ମାନେ ।
ଜାଣନ୍ତି ଋଷି ଯେ ଗଣ ଏଥିର ବିଧାନେ ।୧୧।

---

୨—୧ ବିସ୍ମୋର ମନରେ (କ)

କେତାଯୁ'ରେ ନଳ ନୀଳ ସୁଷେଣ ଜାଣିଲେ ।
ଗୀତାର ବଶିଷ୍ଠ ମୁନିମାନେ ସେବୁ କଲେ ।୧୨।
ଦ୍ୱାପରେ ସେ ପଣ୍ଡିତ ପ୍ରମ୍ଭକ ରାଜନ ।
ଉଦ୍ଧବ ଜାଣନ୍ତି ଗୁରୁ-ପୂଜା ଯେ ବିଧାନ ।୧୩।
ଏମନ୍ତ ହୋଇଣ ତିନ ଯୁଗେ ଯେତେ ଜନ ।
ଗୁରୁପୂଜା ଗୁରୁ ସେବୁ କଲେକ ଭୂଆଣ ।୧୪।
କଳିଯୁଗେ ରାମାନନ୍ଦ ନିମାନନ୍ଦ କହି ।
ବିଷ୍ଣୁ-ଶ୍ୟାମ ମାଧବ ଯେ ଗୁରୁ ଧର୍ମ ଧାହିଁ ।୧୫।
ଏ ଗୁଣ ଗୋସାଇଁଙ୍କର ଏମନ୍ତ ଭୂଷଣ ।
କେଜାଣି କହନ୍ତି ମନ୍ତ୍ର କେ ନ ଜାଣେ ପୁଣ ।୧୬।
ପ୍ରତାପ ନୃପତି ଯେ ଏ ପୂଜାର ଧାରଣ ।
ପ୍ରତାପ ଠାବରୁ ମୁକୁନ୍ଦରେ କହୁ ପୁଣ ।୧୭।
ମୁକୁନ୍ଦ ଠାବରୁ ଦିବ୍ୟ କଲାର ବିସ୍ତର ।
ମନ୍ତ୍ରକୁ ଲୋକ ପାଇ ନ କଣ ବିସ୍ତର ।୧୮।
ଦିବ୍ୟ ଗୋପୀନାଥ ବୋଲେ ଅଛନ୍ତି ଗୋଳ ।
ନାମକୁ ନ ଚିହ୍ନି ସେହି ନିମନ୍ତ୍ରେ ସକଳ ।୧୯।
ବାଳକ ଯେ ସ୍ତ୍ରୀ ପୁତ୍ର ବଧୂ ଆଦିକଣ ।
ସମସ୍ତେ ହରିନାମକୁ କଣ୍ଠରେ ଯେ ଧର ।୨୦।
ଗୁରୁ ପୂଜା ନିଷ୍ଠାଧର୍ମ ନ ବୁଝିଣ ଥିବ ।
ଗୁରୁ ଅଙ୍ଗ ନ ଧରିଣ ପଥ ଯେ ପଡ଼ିବ ।୨୧।
ଶିଷ୍ୟର ଭକ୍ତିବ ସେବା କ କହିବ ଅବା ।
ମୂଢ଼ାନ୍ତ ଶିଷ୍ୟ ପୃଥ୍ୱୀରେ ବହୁତ ଯେ ଥିବା ।୨୨।
କୋଟିକେ ଗୋଟିଏ ସେହୁ ଜାଣିଣ ଯେ ଥିବ ।
କ'ନ କ୍ଷୀନ ହୋଇକରି ବୃନ୍ଦାବନ ରହିବ ।୨୩।

---

୧୬—୨ କହନ୍ତି ମନ୍ତ୍ର ନ ଜାଣେ ପ୍ରମାଣ (କ)

ସତ୍ୟେ ମୂଢ଼ ସଙ୍ଗତେ ଏକ ସେ ପଣ୍ଡିତ ।
ପଣ୍ଡିତ ବଚନ ସେ ଯେ ଖଣ୍ଡନ୍ତି ସମସ୍ତ ।୨୪
ସତ୍ୟେ ପଣ୍ଡିତ ସଙ୍ଗେ ଏକ ମୂର୍ଖ ଥିଲେ ।
ମୂଢ଼ାନ୍ତ ବଚନ ଯେତ୍ତେ ନ ରହଇ ଭଲେ ।୨୫
ତେସନ ପରସ୍ୱେ ସିନା ବସ୍ତୁଗ ଭୁଞ୍ଜିବ ।
ଉତ୍ତମ ମତ ଦେଖିଲେ ଅକାର କହିବ ।୨୬
ଚରଣ ଗୋପାଳେ ଆମ୍ଭେ ଜଣାଉଛୁ ପୁଣ ।
ମନ୍ତ୍ର ପୂଜା କରି ନ ପାରିବ ଯେଉଁ ଜନ ।୨୭
ସେ ଜନ କେମନ୍ତେ ମନ୍ତ୍ର ପାଇବ ଗୋସାଇଁ ।
ଏଥିର ସନ୍ଧେଶ ଗୁରୁ ଫେଡ଼ି ଦେବା କହି ।୨୮
ଶୁଣ ହେ ବରଜ ଦାସ ଏଥିର ବିଚାର ।
କଳିଯୁଗ ଲୋକଙ୍କୁ ଅଟଇ ବଡ଼ ଘୋର ।୨୯
ଦ୍ୱାପର ଯୁଗରେ ବଡ଼ା କରନ୍ତି ପୋଷେଲା
ସ୍ୱର୍ଗର କାନ୍ଥର ଘର ଦ୍ୱାପରର ଲୀଳା ।୩୦
ବଳିରାଜା ସୁବର୍ଣ୍ଣ ପାତ୍ରରେ ଅନ୍ନ ଖାଇ ।
ଖଡ କୁଢ଼େ ପକାନ୍ତି ଯେ ଅନ୍ନେ ଷୋଭ ନାହିଁ ।୩୧
ଏକ ଗୋଟି କହିଡ଼ି ଯେ କଳିଯୁଗେ ବଡ଼ :
ଗୁରୁଙ୍କୁ ଦେଖିଣ ଶିଷ୍ୟ ଲୁଚିବେ ଜହ୍ୱାଡ଼ ।୩୨
କଳିଯୁଗେ ଅକାର ଶିଷ୍ୟଙ୍କୁ ଯେବେ କହି ।
ବସନ ଗୋଟିଏ ଅକାରକୁ ଯେବେ ପାଇ ।୩୩
ରତ ଧାନେ ମସାଏ ସୁବର୍ଣ୍ଣ ଯେବେ ମିଳେ ।
ଶିଷ୍ୟଙ୍କୁ ଲେଖିବ ଜିହ୍ୱା ଭଗତ ଯେ ମୂଳେ ।୩୪
ବଚନ ସଂସିଦ୍ଧି ଜିହ୍ୱା ହୁଅଇ ପ୍ରମାଣ ।
ଏମନ୍ତ ହୋଇଣ ସିନା ଶିଷ୍ୟ ଗୁରୁ ପୁଣ ।୩୫

---

୨୬—୨ୟ ଧାର କହିବ (କ), ୨୯—୧ ହେ ବରଜବଣ (ଗ)
୩୩—୧ମ କର ଶିଷ୍ୟଙ୍କୁ (କ); ୩୫—୨ୟ କାରକୁ ସେ ବେଚଇ (ଘ).

ଜଡ ଯେ ପଣ୍ଡିତ ବୁଦ୍ଧି ଗୁରୁଙ୍କ ଲକ୍ଷଣ ।
ବୁଝାନ୍ତି ଶିଷ୍ୟଙ୍କୁ ଗୁପ୍ତ ମନ୍ତ୍ରର ଧାରଣ ।୩୬।
ବିଦ୍ୟାବାଦ ଅଟଇ ଯେ ମନ୍ତ୍ରଙ୍କର ମୂଳ ।
ବିଦ୍ୟାଶୂନ୍ୟ ଘଟକୁ ଯେ ଧ୍ୟାନ ଜ୍ୟୋତି ସ୍ଥଳ ।୩୭।
ବିଦ୍ୟାଧ୍ୟାନ ମୂଳ ଅଟେ ମତ ସାର ସାର ।
କଣ୍ଟକ ବୃକ୍ଷ କି ହେବ ନେନ ବିକାର । ୩୮ ।
ଭକ୍ତିବାକ୍ୟ ଶାସ୍ତ୍ରପଥ ଯେଉଁ ଜନ ଶୁଣି ।
ଶାସ୍ତ୍ର ସାଧିଣ ନେଇ ନ ପାରନ୍ତି ପୁଣି । ୩୯ ।
ଭକ୍ତିବାକ୍ୟ ଶାସ୍ତ୍ର ଶୁଣି ଶେଷନ କରନ୍ତି ।
ସୁ ଜନଙ୍କୁ ବୋଲିବା ଯେ ଭକ୍ତିସ୍ଥାନ ମତି । ୪୦ ।
ମୁକ୍ତିବାକ୍ୟ ଶୁଣିଲେ ଯେ ଭକ୍ତି ଢଳ ଢଳ ।
ଶାସ୍ତ୍ର ଶୁଣିଲେ ହୁଲୁସଇ ପ୍ରେମମୂଳ । ୪୧ ।
କହୁଗଲେ ବୁଝୁଥାଇ ଭଗତ ଯେ ନର ।
ଶ୍ରୀଭାଗବତକୁ ପରୀକ୍ଷିତ ମତସାର । ୪୨ ।
ଯେଉଁଠାରେ ନ ବୁଝନ୍ତି ଶୁକଙ୍କୁ ପଚାର ।
ଭଗତ ପଥ ହେତୁକୁ ମନରେ ବିଚାର । ୪୩ ।
ଜ୍ଞାନ ହୀନ ଅଚ୍ୟୁତ କି ମୁଖେ କହୁ ପାରେ ।
କୋଟି ଜନ୍ମ ହେଉ ଥିଲେ ଗୁରୁ ହେଉ ଧରେ । ୪୪ ।

ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ନବମ ଛାନ୍ଦ ॥



୩୬—୨ମନ୍ତ୍ର ଉଚ୍ଚାରଣ (କ)
୩୯—୨ ଶାସ୍ତ୍ର ଶୋଧିଣ (ଜ)

# ଦଶମ ଛାନ୍ଦ

ଶିଷ୍ଟ ଗୁଣାଧିପର ଯେ ନ ଦେଖନ୍ତି ଦୋଷ ।
ସେହି ଶିଷ୍ୟମାନଙ୍କର ମନ ଯେ ଅପଶ୍ୟ । ୧ ।
ସେ ଜନକୁ ଗୁରୁ ପୁଣି କି ହେତୁ କରିବ ।
ଗୁରୁଙ୍କୁ ତ ଲଜ୍ଜାଭାବ ଶୁଣିଲେ ପଡ଼ିବ । ୨ ।
ଶୁଣ ହେ ପଣ୍ଡିତ ଶାସ୍ତ୍ରଗଣଙ୍କର ବାଣୀ ।
ଟିକର-ଖଣ୍ଡିରେ ଯେହ୍ନେ ନ ରହଇ ପାଣି । ୩ ।
ଅପଶ୍ୟ ଘଟ ଗୁରୁଙ୍କୁ ଟିକରର ସମ ।
ମାଙ୍କଡ଼ା ପଥରକୁ ମୁଗୁନି କରି କମ । ୪ ।
ଆକାଶର ଜଳ ପୃଥ୍ୱୀ ସମସ୍ତରେ ପଡ଼ିଲା ।
ଟିକରେ ନ ରହେ ଜଳ ଗୁରୁ କସ କଲା । ୫ ।
ଜଳଟ ହାଣ୍ଡିର ପ୍ରାପ୍ତେ ହୋଇଲା ସେ ଘଟ ।
ଉପର ହାଣ୍ଡି ପରାତ୍ପରୁ ମତ ସାର ଶ୍ରେଷ୍ଠ । ୬ ।
ମେଘ ହୁଏ ବୃଷ୍ଟି ଯଦି ପୃଥ୍ୱୀରେ ନୋହିବେ ।
ମନ୍ତ୍ରଶୂନ୍ୟ ଧ୍ୟାନ ଶୂନ୍ୟ ଗୁରୁ ସେହି ଭାବେ । ୭ ।
ଛିଦ୍ର ଘାଟ ଦୁଇଠାରେ ଜଳ ହୋଏ ଶୂନ୍ୟ ।
ବିବେକ ଗୋଷ୍ଠିରେ ପୁଚ୍ଛି ଏମନ୍ତ ବଚନ । ୮ ।
ନିର୍ଧନ ଲୋକକୁ ଧନ ମାଗିଲେ କି ପାଇ ।
ବଚନର ଦୃଢ଼ଭାଷା କହିବ କି ବାଇ । ୯ ।
ମନ ଯା ନିଶ୍ଚଳ ନୋହି ରହିବ କି ଧ୍ୟାନ ।
ନ ଜାଣିଲା ନାହିଁ ହେବ ଜାଣିଲା ସମାନ । ୧୦ ।
ଦଣ୍ଡବତ ଅଷ୍ଟାଙ୍ଗ ଭାବରେ ମୋର ପାଦେ ।
ସଂଶୟ ଛୁଟିଲା ଗୁରୁ ଏ ମନ ବିଷାଦେ । ୧୧ ।

---

୪—୨ ମୁଗୁନି କରି ସମ (ଖ)

ନୋହିଲେ ଗୋପାଳ କୁଳ ତାରିବାର ପାଇଁ ।
ଆଜ୍ଞା ଦେଲେ ତୁମ୍ଭଙ୍କୁ ଯେ ନଦୀୟା ଗୋସାଇଁ । ୧୨ ।
ସୁଦାମ ବୃନ୍ଦାବନନ୍ଦ ସେଠାରେ ହୋଇଲ ।
ଏଠାରେ ଅଚ୍ୟୁତାନନ୍ଦ ନାମ ଯେ ବହିଲ । ୧୩ ।

ସନାତନ ନାମ ତାଙ୍କ ଶ୍ରୀଚରଣ ଦାସ ।
ତାଙ୍କ ପାଦେ ତୁମ୍ଭର ଯେ ମନର ହରଷ । ୧୪ ।
ତାଙ୍କ ଆଜ୍ଞା ମନେ ଧରି ଆମ୍ଭଙ୍କୁ କହିଲ ।
ଗୋପାଳ କୁଳକୁ ଧନ ଗୁପତେ ରଖିଲ । ୧୫ ।

ଶ୍ରୀଅଚ୍ୟୁତ ଶ୍ରୀଅଚ୍ୟୁତ ବନୁ ପରମାଣ ।
ଚରଣ ଗୋପାଳ ଅମ୍ଭେ ପଶିଲୁ ଶରଣ । ୧୬ ।
ଦୀନ ଷୀନ ହୋଇ କରି ତୁମ୍ଭ ପାଦ ତଳେ ।
ଶରଣ ରଖିବ ଗୁରୁ କଳି ଘୋର କାଳେ । ୧୭ ।

ଦୀନ ଅଟୁ ବାର ଗୋପ ଗ୍ରାମ ବାସ୍ତୁ କରି ।
ଷୀନ ବାର ଗହ୍ୱାସେ ଯେ ହତଜ୍ଞାନ ବପୁର । ୧୮ ।
ଦୀନ ଷୀନ ଏଣୁକରି ଗୁରୁଙ୍କ ଚରଣ ।
କୋଟି ଜନ୍ମ ଭାଗ୍ୟ ଥିଲ ଶୁଣିଲୁ ଶ୍ରବଣ । ୧୯ ।

ଶୁଣ ହୋ ପଣ୍ଡିତ ବୋଧ ତୁମ୍ଭେ ନୋହ ଭିନ୍ନ ।
ତୁମ୍ଭ ଆମ୍ଭ ଜନ୍ମେ ଜନ୍ମେ ସଙ୍ଗ ନୋହେ ଆନ । ୨୦ ।
ଶ୍ରୀକୃଷ୍ଣ ଆଜ୍ଞାକୁ ଶୁଣି ଉଦ୍ଧାର ଏ ମନ୍ତ୍ର ।
କୃଷ୍ଣ ହରେ ମନ୍ତ୍ରପୂଜା ଏବେ ଦେବା କହୁ । ୨୧ ।

ବତିଶ ପାଖୁଡ଼ା କରି ଦଳ ଯେ ଥାପିବ ।
ନବରତନ ବସ୍ତୁଗୋଟି ଚଉପାଶେ ଦେବ । ୨୨ ।
ଲେଖନ ଯତ କହିତେ ଯେ ଅବା ଯେ ବାଧ ।
ଶିଷ୍ୟକୁ କହିବ ଯେ ଉତ୍ତମ କରି ସିଦ୍ଧି । ୨୩ ।
ବତିଶ ଦଳ ନ ଭେଦ ଯେଉଁ ଗୁରୁ କହି ।
ପୂଜ ଯେ ପାଷାଣ୍ଡ ହୋଏ ଅନ୍ନ ନ ମିଳଇ । ୨୪ ।

ଅନ୍ଧ ଭ୍ରଷ୍ଟ ହୁଅଇ ଯେ ନ ଜାଣେ ପ୍ରମାଣ ।
ବଚନ କହିଲେ ତାର ନ ଶୁଣେ ଶ୍ରବଣ । ୧୫ ।
ଶ୍ରୀଗୁରୁ ଭଣ୍ଡାର ମୁହିଁ କହିତ କି କ୍ଷମ ।
ନ ଜାଣି କହୁଛୁ ମୁହିଁ ଅତ୍ୟନ୍ତ ଅଧମ । ୧୬ ।
ପାଇଲେ ସୁଜନଜନ ଲଗାଇବ କୂଳେ ।
ବୁଡ଼ି ଯାଉଅଛୁ ମୁହିଁ ଭବ-ନଦୀ ଜଳେ । ୧୭ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଦଶମ ଛାନ୍ଦ ।।

—:*:—

# ଏକାଦଶ ଛାନ୍ଦ

ବତ୍ସ ମୁକୁନ୍ଦ ! ବଚନ ଶୁଣ ଏ ପଞ୍ଚାକ୍ଷର ଗୁଣ ।  
ଓଁକାର ଲିଖ ଅର୍ଦ୍ଧାଙ୍ଗେ ଥୋଇ ଭିତର ଦେବ ପୂର୍ଣ୍ଣ ।  
ତ୍ରିକୋଣ ଥାପି ଉପରେ ଶୂନ୍ୟ ଏମନ୍ତ ଗୁରୁ ଭାବ ।  
ରଂ ବସାଇ ଦକାର ବନ୍ଧ ମନ୍ତ୍ରକୁ କର ଠାବ ।୧।  
ରକାର ଧର କୋଣରେ ବନ୍ଧ ରେକାର ତହିଁ ପାଶ ।  
ଋକାର ଆର କୋଣେ ବସାଇ ଏମନ୍ତ ମନ୍ତ୍ର ଘୋଷ ।  
ଚଉପାଶରେ ଏକ ବସନ ମନ୍ତ୍ରକୁ ନିଉଚ୍ଛାଳ ।  
ଅଠ ଗୁପତ ଅଠ ଏ ଗୁପ୍ତ ମନକୁ ଥିବ ଭଳ ।୨।  
ପଣ୍ଡିତ ଜନ ଥିର ବଚନ ବିବେକ ପଣ୍ୟ ଘଟ ।  
ବିବେକୀ ପାରେ ଆତ୍ମା ବସ୍ତୁରେ ତେବେ ଏ ମନ୍ତ୍ର ଭେଟ ।  
ଏମନ୍ତ ଜପ ମନ୍ତ୍ର ସ୍ୱରୂପ ମରଣ କାଳେ ସାକ୍ଷୀ ।  
ଏ ମନ୍ତ୍ର ସାଧି ସାଧିଲେ ଧ୍ୟାନେ ପାପରେ ନୋହେ ଲେଖା ।୩।  
କ୍ଷଣେ ନିମିଷେ ଏକ ଦଣ୍ଡେ ଯେ ମନ୍ତ୍ରକୁ କରୁଥିବ ।  
ପଶୁ ଯାତନ ଖଣ୍ଡନ ହେବ ଶିଷ୍ୟ ଭଗତ ଭାବ ।  
ମନ୍ତ୍ର ଗୁଣିବ ଯତ୍ନେ ବସିବ ତନ୍ତ୍ରେ କରିବ ଠାବ ।  
ଗୁରୁଙ୍କ ବୁଦ୍ଧି ଏମନ୍ତ ଚିନ୍ତି ଶୁଣ ହେ ଚନ୍ଦ୍ର ଦେବ ।୪।  
ମୁକୁନ୍ଦ ମୁହିଁ ବିନୟ ହୋଇ ସଂଶୟ ମୋର ଚଉ ।  
ଯନ୍ତ୍ର ତନ୍ତ୍ର ଏ ମନ୍ତ୍ର କର୍ମ ଓଁ ଏତେ ଯେ ବ୍ରହ୍ମମନ୍ତ୍ର ।

---

୧—୨ ଓକାର ଲିଖ (ଖ) ; ୧—୪ ରଂ ବଂ ପାଇ [କ] ; ୨—୧ ଋକାର ଆରକୁ ସେ ବନ୍ଧିବ ରେକାର ନ ଥିବ ପାଶେ [ଖ] ; ୨—୨ ମନ୍ତ୍ର ଘୋଷେ [ଖ] ; ୩—୪ ଏ ମନ୍ତ୍ର ସାଧି [ଖ] ; ୪—୧ ନିମିଷେ ଏ ଦଣ୍ଡବତେ [କ] ; ୪—୩ ମନ୍ତ୍ରେ ଶୁଣିବ (ଖ) ;

କେ ପୁଣ ବାନ୍ଧ ପାରବ ଗୁରୁ ମଞ୍ଚ ମଣ୍ଡଳେ ନର ।
ବ୍ରହ୍ମସ୍ଥା ଜଡ଼େ ଭବ ସାଗରେ କୁଷ୍ଠମ୍ଭେ ତତପର । ୫ ।
ମନକୁ ସଙ୍ଗୀ ମୁକୁନ୍ଦ ଭେଦ ଭଲ ପୂଚ୍ଛିଲ ଖ୍ୟାପା
ଜାଣିବା ଏବେ ଏ ଦୃଷ୍ଟାନ୍ତର ଓଲଟ ଭେଦ ମିଶା ।
ତରଳ ବନେ ହେମ ଯେସନେ ଆନେ କ ହୋଏ ଗୁଲ ।
ଗଛଣୀ ମୂଳେ ଧାନ ଯେସନେ ମନ୍ତ୍ରକୁ ତନ୍ତ୍ର ମୂଳ । ୬ ।
ମାପୁଣୀ—ଯାଙ୍କେ ତଣ୍ଡୁଳ ଯେହ୍ନେ ସମସ୍ତ ଜନ ବୋଧ ।
ମନ୍ତ୍ର ମନ୍ତ୍ରକୁ ତନ୍ତ୍ର ଭେଦଲେ ଶେଷର ଖଣ୍ଡେ ବାଧ ।
ଗୁରୁ ଯେସନେ ରଖି ଆସନେ ରାଜାକୁ ସିଂହାସନ ।
ତନ୍ତ୍ର ନ ଭେଦ ଗୁରୁ ହୃଅନ୍ତ ନିଷ୍ଫଳ ହୋଏ ଜନ୍ମ ।୭।
ଅମାପ କର ଅଲେଖା ଧର ଦେବେ ହୁଅଇ ଧନ୍ଦ ।
ମୂର୍ଖ ପଣ୍ଡିତ ବୁଝିବା ପାଇଁ ଗୁରୁ ବଚନ ବନ୍ଧ ।
ଯେସନେ ଏକ ଧାନରୁ ପୁଣ ବହୁତ ଧାନ ହୋଏ ।
ପାଞ୍ଚ ଗଚ୍ଛଣୀ ଧାନ ମଧ୍ୟରୁ ବହୁ ବ୍ୟାପିତ ହୋଏ ।୮।
ଗୁରୁ ବଚନ ଏମନ୍ତ ଘେନ ଶିଷ୍ୟଙ୍କୁ ଗୁରୁ କହେ ।
ସାରଙ୍ଗ ପ୍ରଭୁ କରୁଣା କଲେ ଦାନ ଅଚ୍ୟୁତ କହେ ।
ସମ୍ପଦ ତଟ କଲେକ ଥାନ ହରିଡ଼ା ମୂଳେବାସ
ରୂପ ପରିବାର ମୁଣ୍ଡି ଅଟଇ ଶୂଦ୍ର ଅଚ୍ୟୁତ ଦାସ ।୯।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଏକାଦଶ ଛାନ୍ଦ ॥

*** X ***

---

୫—... କେ ପୁଣ ବନ୍ଧ (କ)
୮—୧ ହୁଅଇ ସନ୍ଧ (କ); ୮—୨ ଗୁରୁ ବଚନ ବନ୍ଧ (କ) ; ୮—୩ ଧାନମଧ୍ୟେ (ଖ);

# ଦ୍ୱାଦଶ ଛାନ୍ଦ

ବୋଲି—ଯୁଗଳ ମନ୍ତ୍ରର ସ୍ତବ ଶୁଣ ନନ୍ଦ ଦାସ ।
ସ୍ତ୍ରୀ ସ୍ୱାଜନମାନଙ୍କୁ ଯେ ଏଣେ କର ଶିଷ୍ୟ ।୧।
କୃଷ୍ଣପକ୍ଷ ଦଶମୀ ଯେ ଏକାଦଶୀ ତିଥି ।
ଷୋଳ କୋଠା ଲେଖିବ ଯେ ଲିପିଥିବ ପୃଥ୍ୱୀ ।୨।
ଷୋଳ ଯେ ଅକ୍ଷର ତହିଁ ସଳଖି ଲେଖିବ ।
ରାଧେ କୃଷ୍ଣ ରାଧେ କୃଷ୍ଣ କୃଷ୍ଣ ଶ୍ୟାମ ଦାମ ।୩।
ଦଣ୍ଡବତ ହୋଇବ ବସନ ଏକ ଥୋଇ ।
ପଞ୍ଚାଙ୍ଗ ସ୍ତବରେ ଦଣ୍ଡବତ ଏଥି ବନ୍ଧୁ ।୪।
ମସ୍ତକ ଲଗିବ ଦୁଇ ହସ୍ତ ଭୂମିତଳେ ।
ପାଦ ଆଣ୍ଠୁ ରହିବ ଯେ ଧରଣ ନିସ୍ତଳେ ।୫।
ଅଧମ ଯେ ନନ୍ଦ ଦାସ ପଚାରଇ ବାଣୀ ।
ନାମ ନ ଘେନିଲେ କିସ ହୋଇଯାନ୍ତି ପ୍ରାଣୀ ।୬।
ଭଲ ପଚାରିଲ ଦାସ ଉତ୍ତମର କଥା ।
ବିବେକ ଜନ ଜାଣନ୍ତି ଏଥିର ବ୍ୟବସ୍ଥା ।୭।
ନାମ ନ ଘେନିଲା ଲୋକ ଚଣ୍ଡାଳରେ ସରି
ଜଳ ହସ୍ତେ ଖାଇଲେ ମଦିରା ପାନ କରି ।୮।
ଶ୍ୱାନ ବିଷ୍ଠା ପ୍ରାୟେ ମଣି ତାର ଅନ୍ନହାଥ ।
ଯେଉଁଠାରେ ବସେ ସେ ମଶାଣୀ ଭୂମିପଥ ।୯।
ପିତୃ ଲୋକମାନେ ଅନ୍ନ ନ ପାନ୍ତି ତା ଘରେ ।
ସୂର୍ଯ୍ୟଙ୍କୁ ନିଷେଧ ଜଳ ଦେଲେ ତା ହସ୍ତରେ ।୧୦।

---

୩—୨ ରାଧେ କୃଷ୍ଣ କୃଷ୍ଣ ଶ୍ୟାମ (କ); ୫—୨ ଧରଣୀ ନିସ୍ତଳେ;
୯—୧ ଅନ୍ନଶାବ (କ) ;

ବିଧବା ଯୁବତୀ ଯେହ୍ନେ ମଙ୍ଗଳେ ନିଷେଧ ।
ପୃଥିବୀ ନ ସହେ ଭାର ସେ ଯେ ନରପାତ ।୧୧।
ନାମ ନ ଘେନିଲା ଜନ ପଶୁରେ ସେ ସତ ।
ନାମକୁ ପରତେ ହେଲେ କୃଷ୍ଣ ଅଙ୍ଗ ଧର ।୧୨।
ହରିନାମ କଳିଯୁଗେ ଅଟଇଟି ସାର ।
ପାଟେଲେ ସୁଜନ ଜନ ଗୁରୁ ସେବା କର ।୧୩।
ଗୁରୁ ଅଟେ ଫଳବୃକ୍ଷ ଶିଷ୍ୟ ଯେ ଖଣ୍ଡ୍ରୋ ।
ଗୁରୁଙ୍କୁ ପୁଛିବ ଶିଷ୍ୟ ଭଗତର କଥା ।୧୪।
ଗୃହରେ ଆସନ ଦେଇ ଗୃହରେ ଭୋଜନ ।
ଫୁଲ ପାନ ଚନ୍ଦନ ଯେ ଦେଇଣ ବସନ ।୧୫।
ଗୁରୁ ମାତା ଫଳ ଦ୍ୟନ୍ତ୍ର ଗୁରୁ ପିତା ଫଳ ।
ଅନୁକ୍ଷଣେ ଧ୍ୟାଯିଥିବ ଗୁରୁ ପାଦତଳ ।୧୬।
ଗୁରୁଙ୍କର ବାକ୍ୟ ଷୋଳକଳା ଯେ ଅଟଇ ।
ଗୁରୁଙ୍କୁ ଚଣ୍ଡାଳ ବଇଷ୍ଣବ ଅଟେ ସେହୁ ।୧୭।
ଏଣୁକରି ବଇଷ୍ଣବ ଚରଣର ଧୂଳି ।
ଜନମେ ଜନମେ ଆଶ୍ରା କରିବ ସଞ୍ଚାଳି ।୧୮।
ବୈଷ୍ଣବ ଗୋସାଇଁ ସିନା ଗୁରୁ ଚହ୍ନାଇଲେ ।
ଗୁରୁ ପୁଣ କୃଷ୍ଣଠାରେ ପରଚେ ଯେ କଲେ ।୧୯।
କଳିଯୁଗେ ଏଣୁକରି ବୈଷ୍ଣବ ଠାକୁର ।
ତୋର କଳ୍ପଯୁମା ଧରି ବୈଷ୍ଣବ ବେଭାର ।୨୦।
ନୀଳାଚଳେ ଭଜନ ଯେ ରଚିଲେକ ପୁଣି ।
ପଞ୍ଚ ଭିକ୍ଷା ମାଗିକରି ହରିନାମ ଗୁଣି ।୨୧।
କଦଳୀ ପଟ ଆସନ ଗୁଲ କନ୍ଥାବଣ୍ଡ ।
ସୁଖଭୋଗ ତେଜିଣ ଯେ ହରିନାମ ଦୃଢ଼ ।୨୨।

---

୧୮—୨ ଜନ୍ମେ ଜନ୍ମେ ଆଶ୍ରା (କ); ଚୈତନ୍ୟ ଜନ୍ମେ ଜନ୍ମେ ଆଶ୍ରା (ଖ);

ଯେଣୁକରି କଳିଯୁଗେ କୃଷ୍ଣ ବଇଷ୍ଣବ ।
କଳିଯୁଗେ ବଇଷ୍ଣବ ଅଟଇ ବଡ ଭାବ ।୨୩।
ରାଜେନ୍ଦ୍ର ଠାବରୁ ବଡ଼ ଯୋଗୀନ୍ଦ୍ର ଟି ହୋଇ ।
ମନ୍ତ୍ରକୁ ପରତେ ହେତୁ ନାମ ଯୋଗ୍ୟସ୍ୱାମୀ ।୨୪।
ପରଜା ପାଳନ ସ୍ପୃହା ଅଟଇ ଯେ ଦୃଢ଼ ।
ଏଣୁକରି ରାଜେନ୍ଦ୍ରଟି ସଂସାରରେ ବଡ଼ ।୨୫।
ରାଜେନ୍ଦ୍ର ଜନର ବୀଜ ଅଟଇଟି ସତ ।
ଯୋଗୀନ୍ଦ୍ର ଜନର ଦୃଢ଼ ଅଟଇଟି ମତ ।୨୬।
ସତ ମତେ ରହିଅଛୁ ପୃଥିବୀ ଧାରଣା ।
ଜାଣୁ ଜାଣୁ ନନ୍ଦ ଦାସ ହେଉଅଛୁ ବଣା ।୨୭।
ଭଗତ ଜଣାର ହେତୁ ଅନୁଭବ ମୂଳ ।
ମନକୁ ପରତେ ହେଲେ ଭାଙ୍ଗିବ ଯେ ଗୋଳ ।୨୮।
ମନ ହେତୁ ନ ଜାଣିଣ ମୂଢ଼ ମୋର ମତ ।
ମନ ହେତୁ ହେଉ ଗୁରୁ ସଙ୍ଗ କର ନିତ ।୨୯।
ପାମର ଅଚ୍ୟୁତ ଗୁରୁଚରଣକୁ ଆଶ ।
ମରଣ ସମୟେ ପ୍ରଭୁ ହୋଇବାକ ଦୃଶ୍ୟ ।୩୦।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଦ୍ୱାଦଶ ଛାନ୍ଦ ।।



## ତ୍ରୟୋଦଶ ଛାନ୍ଦ

ବୋଲି—ଶୁଣ ହେ ଛତିଶ ଦାସ ଗୁରୁଙ୍କ ଗୁପତ ।
ପଞ୍ଚାକ୍ଷର ବୋଲି କରି ମନ୍ତ୍ର ହେଉ ତନ୍ତ୍ର । ୧ ।
ଓଁକାର ଉପରେ ଅର୍ଦ୍ଧାଙ୍ଗକୁ ବସାଇବ ।
ଅର୍ଦ୍ଧାଙ୍ଗ ଉପରେ ବିନ୍ଦୁ ଗୋଟିଏ ଥୋଇବ । ୨ ।
ପଢ଼ିଲେ ଅକ୍ଷର ଗୋଟି ଏ ମନ୍ତ୍ରଟି ହୋଇ ।
ଚତୁଷ୍କୋଣ ମଧ୍ୟରେ ଯେ ଅକ୍ଷର ବସାଇ । ୩ ।
ଗୁଣପଦେ ବସାଇବ ଗୁଣଯେ ଅକ୍ଷର ।
ହର ବୋଲି ଅକ୍ଷର ଯେ ଓଁକାର ତଳର । ୪ ।
ରଉଁ ମାତ୍ରା ବସାଇଣ ତଥିର ପାଶରେ ।
ଋକାର ବସିବ ପୁଣ ତଥିର ଅଗ୍ରରେ । ୫ ।
ଯନ୍ତ୍ର ବିଧି ଏମନ୍ତ କରିଣ ବସାଇବ ।
ନବତନ ବଦନ ଗୋଟିଏ ବେଢ଼ାଇବ । ୬ ।
ଶିଷ୍ୟଙ୍କୁ ଯନ୍ତ୍ର ବାନ୍ଧିଲେ ଏ ମନ୍ତ୍ର ବୁଝାଇ ।
ତତ୍ତ୍ୱରେ କହିବ ନୋ'ତ ଧ୍ୟାନରେ ଦେଖାଇ । ୭ ।
ମୂର୍ଦ୍ଧ୍ନରେ ଉଙ୍କାର ଯେ ରେକାର ବୁକରେ ।
ଶକାର ବସିବ ଅଷ୍ଟ ଯେବଣ ଠାବରେ । ୮ ।
ଋକାର ବସିବ ପୁଣି ଧିକାର ଉପର ।
ର ଆ ବୋଲି ସିକାର ଯେ ମନ୍ତ୍ରକୁ ବାନ୍ଧିର । ୯ ।
ମୁଖରେ ପଢ଼ିଲେ ପୂର୍ଣ୍ଣ ମନ୍ତ୍ର ବୋଲି କହୁ ।
ଅକ୍ଷର କରିଣ ପୂର୍ଣ୍ଣ ଯନ୍ତ୍ରରେ ବସାଇ । ୧୦ ।

---

୨—୧ ଓଁକାର ଉପରେ (ଖ) ୩—୨ ଚତୁର୍ଗୁଣ (କ) ୪—୨ ଓଁକାର (କ,ଖ)
୫—୧ ହର'ମାତ୍ରା.. ତହିଁର (ଗ) ୫—୨ ତହିଁର ଅଗ୍ରରେ (କ)
୯—୨ ରଉଁ ବୋଲି……ଭ୍ରମର (ଖ)

ମନ୍ତ୍ରକୁ ଶୋଧିବ ଦେହ ମଧ୍ୟରେ ବସ୍ତୁରି ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ଗୁରୁ ଶିଷ୍ୟ ସେ ସୁମରି । ୧୧ ।
କର ନ୍ୟାସ କରିବ ଯେମନ୍ତ ପୁଣି କରେ ।
ଅଙ୍ଗନ୍ୟାସ କରିବ ସେ ପୁଣି ହୃଦୟରେ । ୧୨ ।
ଏକ ସେ ଅକ୍ଷର ଯଦି ମନ୍ତ୍ରକୁ ହୁଡ଼ନ୍ତି ।
ତତକ୍ଷଣେ ମନ୍ତ୍ରହୁଡ଼ ଦୋଷ ସେ ପାବନ୍ତି । ୧୩ ।
ହୁଡ଼ଣ ନିମନ୍ତେ ମନ୍ତ୍ର ଏଣୁକରି ଯନ୍ତ୍ର ।
ଯନ୍ତ୍ର ନିବାରିଲେ କାହୁଁ ।ଇବ ତଦନ୍ତ । ୧୪ ।
ଏଣୁକରି ତତ୍ତ୍ୱ ଗୋଟି ଅଠଇଶି ବୀଜ ।
ତନ୍ତ୍ରହିଁ ତ୍ୟଜିଲେ ମନ୍ତ୍ର ଅଟେ କେଉଁ କାର୍ଯ୍ୟ । ୧୫ ।
ଏଣୁକରି ତନ୍ତ୍ରକୁ ସେ ଯନ୍ତ୍ରରେ ରଖିବ ।
ଯନ୍ତ୍ରକୁ ସେ ଜ୍ୟୋତିରୂପ ନେଇଣ କରିବ । ୧୬ ।
ଜ୍ୟୋତିକ ସେ ଅଜ୍ୟୋତି କରିଣ ଯଦି ପାରି ।
ତେବେ ସିନା ଜାଣିମା ସେ ଗୁରୁ ଆଗ୍ରେ କରି । ୧୭ ।
ଏ ଭେଦ ନ ଜାଣି ଯେଉଁ ଜନ କରେ ଶିଷ୍ୟ ।
ଅତାପ ପକ୍ଷୀର ଡିମ୍ବ ପ୍ରାୟେ ହୋଏ ନାଶ । ୧୮ ।
ସେ ଶିଷ୍ୟର ସଂଶୟ ହୋଇବ କାହିଁ ଦୂର ।
ସେ ଗୁରୁଙ୍କୁ ବ୍ୟାଧ ସଙ୍ଗେ ସରି ସମ କର । ୧୯ ।
ପେଟର ନିମନ୍ତେ ଲକ୍ଷେ ଜନ୍ତୁ ସେ ମାରଣି ।
ଉଦର ପୋଷିଣ ନ ପାରଇ ସେହୁ ପୁଣି । ୨୦ ।
ସେରୂପେ ଶିଷ୍ୟ କରିଣ ଅତାପିତ ଡିମ୍ବ ।
ସେ ଡିମ୍ବ ମଧ୍ୟରୁ ପକ୍ଷୀ କହିତ କି ଗମ୍ୟ । ୨୧ ।
ଅତ ଏ ସନ୍ଧାନ ସତ ଗୁରୁଙ୍କ ବସ୍ତୁର ।
କୋଟି ଜନ୍ମ ସନ୍ତ୍ୟରେ ସେ ଯନ୍ତ୍ର ବଧି ଧର । ୨୨ ।

---

୧୧—୧ ଯନ୍ତ୍ରକୁ ଶୋଧିବ କ)
୧୪—୨ ନଷ୍ଟଇଲେ କାହିଁ (କ); ୧୫—୧ ଯନ୍ତ୍ର ଗୋଟି (କ);

ତନ୍ତ୍ର ନ ଭେଦିଲେ ପୁଣ ଯିବ ଚଉରାଶି ।
ମାନବ ଜନମ ପୁଣ ଅଟେ ପୂର୍ଣ୍ଣମାସୀ । ୨୩ ।
ପୂର୍ଣ୍ଣମୀ ଅଟଇ ତନ୍ତ୍ର ବୁଝି ଯେ ଜାଣନ୍ତି ।
ତନ୍ତ୍ର ନ ଜାଣିଲେ ପୁଣ ଅମାବାସ୍ୟା ହୁଅନ୍ତି । ୨୪ ।
ଏଣୁକରି ତନ୍ତ୍ରଭାବ ଗୋବିନ୍ଦ ଚରଣ ।
କ୍ଷଣେ ଦଣ୍ଡେ ବସି କର ସମାଧି ଧାରଣ । ୨୫ ।
ଶିଷ୍ୟର ବୋଧ ନିମନ୍ତେ ଏତେ ପରମାଣ ।
ନୋହିଲେ ନିଷ୍ଟସ୍ଥ ଗତ ସମାଧି ଧାରଣ । ୨୬ ।
ଓଁକାର ତୋଳିବ ଦଶ ଦଳରେ ବସିଣ ।
ଦଶକୁ ରଖିବ ଷୋଳ ଦଳରେ ଯତନେ । ୨୭ ।
ଷୋଳକୁ ରଖିବ ପୁଣ ସ୍ୱରବେଦ ସ୍ଥାନ ।
ସ୍ୱର ଯେ ରହିବ ଦୁଇ ବଳେ ଯେଉଁ ଧ୍ୟାନ । ୨୮ ।
ଏମନ୍ତେଣ ଏକମାସ ଭରତ ସାଗରେ
ଧାଇବ ନିରତେ ମନ ଗ୍ରହ ଉତ୍ସବେ । ୨୯ ।
ଅଳପ ଅଳପ କରି ସାଧିବ ଭୋଜନ ।
ନିଶ୍ଚଳ କରଣ ପୁଣ କରିବ ଆସନ । ୩୦ ।
ତେବେ ସିନା ଜାଣିମା ଶିଷ୍ୟର ଗତି ହୋଏ ।
ଗୁରୁ ଚିହ୍ନାଇଲେ ପଦ ଗ୍ରହିଲ ସଂଶୟେ । ୩୧ ।
କୋଟି ଯୁଗ ଏ ଭେଦ ନ ଜାଣି ହୋଏ ଦାସ ।
ଯେତେକ ନିମନ୍ତେ ଭେକଧରିଲେ ହୋଏ ବଶ । ୩୨ ।
ଟଗଡ଼ ଜନ୍ମାଲେ ପଡ଼ି ପେଟେ ବନ୍ଧ ହେଲ ।
ପାମର ଅଚ୍ୟୁତ ଭବ ସାଗରେ ବୁଡ଼ିଲ । ୩୩ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ତ୍ରୟୋଦଶ ଛାନ୍ଦ ॥

—::O::—

୨୬-୧ ନିମନ୍ତେ ଜ୍ୟୋତ (କ); ୨୭-ଉକାର (କ); ୨୭-୨ ଦ୍ୱାଦଶ ରଖିବ (ଖ);

# ଚତୁର୍ଦ୍ଦଶ ଛାନ୍ଦ

ଶ୍ରୀଗୋପାଳ ମନ୍ତ୍ରାମନ୍ତ୍ର ଯେମନ୍ତ ଉଦ୍ଧାର ।
ସେଉପରିକି ବାଳକ ଦାସ ହେ ହେତୁ କର ।
ଗୃଶ କୋଣ ଧରିବ ଯେ ପୂର୍ଣ ଗୃଶ ଗୃହ ।
ଆଚର ଗୃଶ ଧଇଲେ ଷୋଳ ହେବ ଘର । ୧ ।
ନାମ ବୋଲି ଗୃହ ମଧ୍ୟ ରଖିବ ଯେ ପୂର୍ଣ ।
ମଧ୍ୟରେ ଗ ର ଗୋଟିଏ କରିବ ନିର୍ମାଣ ।
ଷୋଳଥାନେ ରଖିବ ଯେ ଏ ଷୋଳ ଅକ୍ଷର
ଅଷ୍ଟାଦଶ ଅକ୍ଷର ଏମନ୍ତ ସ୍ୱର କର । ୨ ।
ଏ ମନ୍ତ୍ର ଯନ୍ତ୍ର ଲେଖିଣ ଏକ ବସ୍ତ୍ର ଭିନ୍ଧି ।
ବସ୍ତ୍ର ପୂଜା ଭୋଗ ଦେଇ ଶିଷ୍ୟଙ୍କୁ ବୁଝାଇ ।
ପୂର୍ଣ ତନ ଭାଗ ଯେ କରିବ ଜନ୍ମେ ନେଇ ।
ଜନ ବଲ୍ଲଭାସ୍ତୁ ବୋଲି ଓଁକାରେ ବସାଇ । ୩ ।
ଗୋପୀ ଗେ ବିନ୍ଦାସ୍ତୁ ବୋଲି ଅନ୍ତାଙ୍ଗେ ବାନ୍ଧିବ ।
କ୍ଲୀଂ କୃଷ୍ଣାସ୍ତୁ ନମ ବନ୍ଦରେ ଗୁଣିବ ।
ଏମନ୍ତେଣ ଦଶ ଛନ୍ଦ ଏକାଦଶ ବର୍ଧ ।
ଗୁରୁ ବୁଝାଇଲେ ଶିଷ୍ୟ ଲଭଇ ସେ ସିଦ୍ଧି । ୪ ।
ଜନ ବଲ୍ଲଭାସ୍ତୁ ଶିଷ୍ୟ କରିଣ ଉଦ୍ଧାର ।
ଗୋପୀ ଗୋବିନ୍ଦାସ୍ତୁ ଗୁରୁ ଅଙ୍ଗକୁ ସୁମର ।
କ୍ଲୀଂ କୃଷ୍ଣସ୍ତୁ ନମଃ କୃଷ୍ଣ ହେତୁ ରମ୍ୟ ।
ମନ୍ତ ହୋଇଣ ଦିନ ଉଦ୍ଧାରକୁ ଗମ୍ୟ । ୫ ।

---

୪—୨ କ୍ଲୀଂ (କ);

ଜନ ଚନ୍ଦ୍ରାବଳୀ ଗୋବିନ୍ଦାଙ୍କ ରାଧା ହେତୁ ।
କ୍ଲୀଁ କୃଷ୍ଣ ଯିବଧି ଜଣବ କି ହେତ୍ର ତନ୍ତ୍ର ।
ଏମନ୍ତ ହୋଇଣ ବଜ କୃଷ୍ଣ ମନ୍ତ୍ର ଧ୍ୟାଏ ।
ଏ ଭେଦ ଜାଣିଲେ ଶିଷ୍ୟ ଗୁଡ଼ିବ ଯଣଏ । ୬ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ଯବ ଶିଷ୍ୟଙ୍କୁ ନ କହେ ।
ସେ ଗୁରୁ ଯେ ବସ୍ତ୍ର ଦ୍ରୋହ ଦୋଷ ପୁଣ ପାଏ ।
ଭିକ୍ଷା ମାଗି ଖାଇବା ଅଟଇ ବଡ ସୁଖ ।
ଗୁରୁ ପଣ ଅଟଇ ଯେ ଅତି ବଡ଼ ଦୁଃଖ । ୭ ।
ଶ୍ରୀ ଗୋପାଳ ମହାମନ୍ତ୍ର ସୁଖେ ଯେ ଭଜିବ ।
ମାଁସ ମଦ୍ୟ ମୃଗରେ ବିବର୍ଜିତ ହେବ ।
ମିଥ୍ୟା, ପରଦାର, ମୁଖେ, ଇନ୍ଦ୍ରରେ ସାଧନ ।
ଆଫୁ, ଧୂମ, ଗଞ୍ଜା, ବ୍ରଜବାସୀ ନିଷେଧନ । ୮ ।
କରପଞ୍ଚ ଯୋଡ଼ିଣ ବାଳକ ଦାସ କହୁ ।
କି ନିମନ୍ତେ ନିଷେଧ ଯେ ଏତେ ଦ୍ରବ୍ୟ ହୋଇ ।
କହିବା ପରମ ଗୁରୁ ଫେଡ଼ିବା ସଂଶୟ ।
ଶ୍ରୀରାମ ଶ୍ରୀଗୁରୁଦେବ ଆମ୍ଭେ ତାଙ୍କ ପୁଅ । ୯ ।
ଯେଉଁଠାରେ ଗୋପାଳ ରୂପକୁ ଭୋଗ ବନ୍ଧୁ ।
ସେଠାରେ ମଦ୍ୟ ମାଂସ ପକାଡ଼ି ଯେ ନୋହି ।
ମଦ୍ୟ ମାଂସ ଭୋଗ ଅଟେ ଅସୁରଙ୍କ ପୁଣ ।
ବିଷ୍ଣୁର ଭୋଗ ଅଟଇ ନିରାମିଷ ଜାଣ । ୧୦ ।
ଉଚ୍ଛିଷ୍ଟ ହୁଅଇ ହସ୍ତ ଅଙ୍ଗ ନିରନ୍ତର ।
ଏଣୁକରି ଧୂମ ଅଟେ ଅସୁର ଆହାର ।
ଜଟିକ ଅଟଇ ଶିବ ଆହାର ସେ ପୁଣି ।
ଏଣୁକରି କୃଷ୍ଣ ଭଜନେ ଗଞ୍ଜା ନାହିଁ ପୁଣି । ୧୧ ।
ଆସୁର ଜନର ଅଟେ ଆଫୁ ସେ ଆହାର ।
ପର ସ୍ତ୍ରିସ୍ତ୍ରୀ ପାପରେ ଯେ ଅତି ବଡ଼ ଘୋର ।
ମିଥ୍ୟା ଭାଷୀ ଜନ ଅଟେ କେଞ୍ଚୁଡ଼ି ଯେ ବୀଜ ।
ଜନ୍ମ ଅନ୍ତେ ଚଉରାଶୀ କୁମ୍ଭି ପାକେ ପଚ । ୧୨ ।

ମେଣ୍ଟି ନ ପାରଲେ ପାଦେ ପୂଜେଣ୍ଟି ଯେ ମିଛ ।
ଗୀତା ଭାଗବତ ବେଦ ପୁରାଣରେ ପୁଚ୍ଛ ।
ଏ ମଞ୍ଚ ମଣ୍ଡଳେ ପୁଣ ସ୍ଥାନ ବଡ ହୁଏ ।
ଜନ୍ମ ଜାତ ଭୂମିରେ ଯେ ସ୍ଥାନ ବଡ଼ ନୁହେଁ ।୧୩।
ପରମ ଗୁରୁ ବଚନ ହେଉ ହେଲା ମନ ।
ଅତି କ୍ଷୀଣ ଅଟଇ ଯେ ବାଳକ ଜୀବନ ।
ଯୋଗ ସିଦ୍ଧି ପରେ ଯେତେଦିନ ଥିବ ଦେହ ।
ଶ୍ରୀଗୁରୁ ବଚନେ ମୋର ଫିଟିଲା ସଂଶୟ ।୧୪।
ଅଚ୍ୟୁତ ପଥରେ ଯୋଗ ସିଦ୍ଧିର ବିସ୍ତର ।
ବାଳକ ଦାସ ତୋହର କହୁ ତତପର ।
ଦୀନ ଦୁଃଖୀ ଅଚ୍ୟୁତ ଯେ ପଡ଼ିଣ ସଂସାର ।
ଏ ଭବ ସଂସାର ଅଟେ ଅତି ବଡ଼ ଘୋର ।୧୫।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଚତୁର୍ଦ୍ଦଶ ଛାନ୍ଦ ॥

---

୧୪—୩ ହେଉହେଲା (କ), ୧୪—୩ ଯୋଗସିଦ୍ଧି ଠାରେ

# ପଞ୍ଚଦଶ ଛାନ୍ଦ

ଶୁଣ ହେ ଗୋବିନ୍ଦ ଦାସ କହୁବା ବଚନ ।
ଯାହା ପଚାରିଲ ତୁମ୍ଭେ ଅଟ ଏ ଗହନ ।୧।
ନର ଦେହ ବହିଣ ଅଛନ୍ତି ଯେତେ ମହୀ ।
ବୈଷ୍ଣବ ଅଟନ୍ତି ଏହୁ ସଂସାର ଗୋସାଇଁ ।୨।
ବୈଷ୍ଣବ ଗୋସାଇଁ ହେତୁ ଅମନ ଭୁବନ ।
ଅମନେ ଭୁବନେ ବାସ ଗୁରୁଙ୍କର ସ୍ଥାନ ।୩।
ସେ ଗୁରୁଙ୍କୁ ଯେଉଁ ବଇଷ୍ଣବ ଚିହ୍ନାବନ୍ତି ।
ସେ ଜନକୁ ମାନବ ସନ୍ଧତେ ନାହିଁ ବନ୍ତି ।୪।
ସୁରଜାତ ଅଷ୍ଟାଦଶ ପାଟକରୁ ସାର ।
ଛତିଶ କୁଳରୁ ଶ୍ରେଷ୍ଠ ବୋଲିଣ ବିସ୍ତର ।୫।
ସକଳ କୁଳ ପାଳଟ ଅଚ୍ୟୁତ ସେ ଗୋଟେ ।
ଏ ସନ୍ଧି ବନ୍ଧିବ ମନେ ଭାଗବତ ଶାସ୍ତ୍ରେ ।୬।
ଅନନ୍ତ ସେ ହରିମନ୍ତ୍ର କରିବ ବିସ୍ତର ।
ତ୍ରିକୋଣ ମଧ୍ୟରେ ଏକ ବସିବ ସେ ଗାର ।୭।
ହରି ସେ ଅନନ୍ତ ବୋଲି ପାଞ୍ଚ ସେ ଅକ୍ଷର ।
ପଞ୍ଚଆଡେ ବସାଇବ ପଞ୍ଚ ପାଖୁଡ଼ାର ।୮।
ତ୍ରିକୋଣ ବହୁତ ହରି ବେନି ସେ ଅକ୍ଷର ।
ଓଁକାର ବସିବ ପୁଣ ତ୍ରିକୋଣ ଶିଖର ।୯।
ଗାରପାଶେ ବେନାକ୍ଷର ନନ୍ତ ବୋଲି ଥୋଇ
ହରି ଅଟେ କୃଷ୍ଣ ସେ ଅନନ୍ତ ଦଳ କହି ।୧୦।

---

୬—୨ ବନ୍ଧବ ମନେ (କ); ୯—୧ ହରି ପାଞ୍ଚ (କ)
୧୦—୧ ଅନନ୍ତ ବୋଲି (ଖ) ? ୧୦—୨ କୃଷ୍ଣଦେବ (ଖ)

ନନ୍ତ ଅଟେ ଶିଷ୍ୟଶ୍ରବ ହରି କୃଷ୍ଣ ଧ୍ୟାୟେ ।
ଅକାର ରଖିବ ଗୁରୁଧ୍ୟାନ ପୂର୍ଣ୍ଣମୟେ ।୧୧।
ଅକାରକୁ ଅର୍ଦ୍ଧାଙ୍ଗ ମଧ୍ୟରେ ବସାଇବ ।
ନନ୍ତ ବୋଲି ବେଜାକ୍ଷର ଓଁକାରେ ବସିବ ।୧୨।
ହରି ବୋଲି ବିନ୍ଦୁମଧ୍ୟେ ବସିବ ପ୍ରମାଣ ।
ଏମନ୍ତ ହୋଇଣ ତନ୍ତ୍ର ବାଖ୍ୟମାନ ଶୁଣ ।୧୩।
ଅକାର ଯେ ଗୁରୁଅଙ୍ଗ ନନ୍ତ ଶିଷ୍ୟ କହୁ ।
ହରି କୃଷ୍ଣ ବିନ୍ଦୁମଧ୍ୟେ ତତ୍ତ୍ୱବଧ୍ୟ କହୁ ।୧୪।
ତ୍ରିକୋଣ ଆପିଣ ପଞ୍ଚ ଅକ୍ଷର ବୁଝାଇ ।
ବସନ ଗୋଟିଏ ପୂଜା ରଖିବ ଯେ ତହିଁ ।୧୫।
ଯନ୍ତ୍ର ମନ୍ତ୍ର ତନ୍ତ୍ର ହେରୁ ଶିଷ୍ୟକୁ କହିବ ।
ରାମ ଅଟେ ଅନନ୍ତ ଯେ ହରି କୃଷ୍ଣ ଦେବ ।୧୬।
ଶିଷ୍ୟର ବଚନ ଯେ ଅନନ୍ତ ହରିବାଣୀ
ଗୁରୁଙ୍କ ବଚନ ହରି ଅନନ୍ତ ଯେ ଗୁଣି ।୧୭।
ଏଣୁକରି ଅନନ୍ତ ଯେ ଅର୍ଦ୍ଧାଙ୍ଗରେ ବାସ ।
ଅର୍ଦ୍ଧାଙ୍ଗ ଅଟଇ ମାତ୍ର ଅଗ୍ନିର ପ୍ରକାଶ ।୧୮।
ହରି ଯେ ଅକ୍ଷର ଧନ ଗୁରୁଙ୍କ ପ୍ରମାଣ ।
ନନ୍ତ ବୋଲି ବେଜାକ୍ଷର ଶିଷ୍ୟରେ ଯେ ପୂର୍ଣ୍ଣ । ୧୯ ।
ଆଦ୍ୟ ଅନନ୍ତର ମନ୍ତ୍ର ଅଟଇ ଟି ଏହୁ ।
ଏଣୁ କରି ରାମକୃଷ୍ଣ ଗୋଲୋକରେ କହୁ । ୨୦ ।
କେ ବୋଲଇ ରାମ ରାମ କେ କୃଷ୍ଣ ସୁମରି ।
କେ ବୋଲଇ ଅନନ୍ତ ଯେ କେ ବୋଲଇ ହରି । ୨୧ ।

---

୧୧—୧ ଅନନ୍ତ ଅଟେ (ଖ) ୧୧—୨ ପୂର୍ଣ୍ଣମୟେ (ଖ), ୧୨—୨ଅନନ୍ତ ବୋଲି ବେଜାକ୍ଷର ଓଁକାର (ଖ), ୧୩—୨ ଏମନ୍ତ ବୋଲିଣ (କ), ୨୦—୧-ଅନନ୍ତରଚଣ (କ).

ହରି ହେ ଅନନ୍ତବାଣୀ ବ୍ରଜସୁତ ଗୁଣି ।
କାଳରୁଁ ଅକ୍ଷର ରସ ଗୋପସୁତ ଶୁଣି । ୧୨ ।
ସୁମରଣ ବ୍ରଜପୋଟସ୍ଥ ହରି ହେ ଅନନ୍ତ ।
ଅନନ୍ତ ହେ ହରି ଏଣୁ ଗାଜ ଢବା ଚନ୍ତ । ୧୩ ।

ନମୋଽନନ୍ତାୟ ସ୍ତୁତ ହେ ବ୍ରଜସୁତ କରେ ।
ହରେ ସ୍ତୁତ ଅନନ୍ତ ହେ କଲେକି ସୁସ୍ୱରେ । ୧୪ ।
ଅନନ୍ତ ହରି ହେ ଗୋଳ ଶୁଭିବ ଚହଳ ।
ଚମକିଲା କଳିଯୁଗ ପାଦ ଟଳ ଟଳ । ୧୫ ।

ଏ ଘୋର କଳିରେ ପାପ ପ୍ରବଳ ମୋହର ।
ହରି ହେ ଅନନ୍ତ ବୋଲି ଶୁଭିଲା ସୁସ୍ୱର । ୧୬ ।
କଳିଯୁଗ ପାଦତଳେ ପଡ଼ିଲାକ ଶୁଣି ।
ହରିଜନ ସଂସାରେ କି ଜାତ ହେବେ ପୁଣି । ୧୭ ।
ମୋହର ଛୁଟିବ ବଳ କର ଆଦି-ନାଥ ।
କଳିଯୁଗ ପଣ କଁପା ଫେଡ଼ିଲୁ ତୁରିତ । ୧୮ ।
ମନ୍ଦ ମନ୍ଦ ହସିଣ ହେ ଶ୍ରୀ ରଙ୍ଗାଧର ।
ପୃଥ୍ୱୀ ହେ ଗୁହାରି କଲା ଦେବ ସଭାଠାରେ । ୧୯ ।
ହରିଜନ ଜନମ ସଂସାରେ କାହୁଁ କର ।
କର୍ମ ନଷ୍ଟ ଦେଖିଣ ହେ କଳି ପାଉ ଡ଼ର । ୨୦ ।
ସଂସାରେ ହୋଇବେ ଜାତ ଭଗତ ମୋହର ।
କର୍ମ ନାଶ ବାଧି ଭକ୍ତ କରିବେ ବିସ୍ତର । ୨୧ ।

ଥୋକେ ଲୋକ ପାପିଷ୍ଠ ହେ ଖାରରେ ରହିବେ ।
ଥୋକେ ଲୋକ ପୃଥ୍ୱୀଦେବୀ ହାତରେ ହେ ଥିବେ । ୨୨ ।
ହରିଜନ ସଂସାରେ ହୋଇବ ଯେବେ ଜାତ ।
ତାଙ୍କ ଆଗେ ମୋହର କି ହୋଏ ପ୍ରଭୁ ମତ । ୨୩ ।
ବ୍ରହ୍ମାଣ୍ଡନାଥ ହେ ପୁଣ ମୃଦୁ ହସି କହୁ ।
ଅଣ ହେ ଆବୃଷ୍ଟ ଜନ ତୋର ସଙ୍ଗେ ରହୁ । ୨୪ ।

ସତ ସତ ସ୍ନାନ ସନ୍ଧ୍ୟା ଧ୍ୟାନ ସେ ଭଜନ ।
ଶ୍ରୀମୂର୍ତ୍ତି ଶ୍ରୀଗୁରୁ ସେବା ଶ୍ରୀଗୀତା ପଠନ । ୩୫ ।
ସେ ଜନ ଠାବରେ ତୋର ନାହିଁ ଅଧିକାର ।
ଅକର୍ମ ଜନର ରାଜା କଳିଯୁଗ ତୋର । ୩୬ ।

ପୁଣ ସ୍ତୁତ କଲେ ସେ କଳିଯୁଗ କହୁ ।
ସତ୍ୟ କହ ଏ କଥା ତ ଅଟଇ ଗୋସାଇଁ । ୩୭ ।
କଳିଯୁଗେ ଏହୁ ନୀତି କଲେ ସର୍ବଜନ ।
କଳିଯୁଗ ଅଟଇ ଯେ ପାପର ବିଧାନ । ୩୮ ।

ଅତଏବ ହୋଇଲେଟି ପୃଥିବୀ ହଜିବ ।
ପୃଥିବୀ ହଜିଲେ ତୋର ଯୋଗ ଭୋଗ ଯିବ । ୩୯ ।
ତୁମ୍ଭେ ଭୋଗ କର କହୁ ପୃଥ୍ୱୀଦେବୀ ଥାଉ ।
ଆମ୍ଭ ନରଦେହ ଦେଲେ ପୃଥ୍ୱୀ ସୁଖ ପାଉ । ୪୦ ।

ଯେତେ ଜନ ସୁକର୍ମ କରିବେ ଏ ମଣ୍ଡଳ ।
କ୍ଷୀଣ ହୋଇ ଥିବେ ସେହୁ ସଂସାର ସାଗର । ୪୧ ।
କଷ୍ଟେ ଦିନ କାଟିଥିବେ ମୋର ପଣ କାଳେ ।
ତାଙ୍କ ବଳ ହୋଇବ ଯେ ସତ୍ୟ କଳିବେଳେ । ୪୨ ।

ମିଥ୍ୟା ପରଦାର ପରହିଂସକ ଯେତେକ ।
ଗଜ ତୁରଙ୍ଗ ସେ ହସ୍ତୀ ଚଢ଼େ ଯେତେ ଲୋକ । ୪୩ ।
ପଦାତି ଚଢ଼ିଣ ଆଶା କରନ୍ତି ସେ ନର ।
ଏତେ ଜନ ଅଟନ୍ତି ମୋହର ସ୍ୱଗୋତ୍ର । ୪୪ ।

ମଦ୍ୟମାଂସ ଆଦି ଧୂମ ଗଞ୍ଜା ଅଫିମାହାନ ।
କୁକ୍କୁଡ଼ା ମଦର ମାଂସ ଶୂକର ଭୋଜନ । ୪୫ ।
ଏମାନ ଅଟଇ ମୋର ଆଧାରର ପ୍ରୀତି ।
ଜଡ଼ତି କରନ୍ତି ତୋର ଜନ ଏହି ଜାତି । ୪୬ ।

ସନ୍ଧ୍ୟା ଖାଏ କରେ ବୃଷ ଗୋପଥ ହରଣ ।
ଅମାବାସ୍ୟା ସଂକ୍ରାନ୍ତି ରନ୍ଧନ କରେ ପୁଣ । ୪୭ ।

ରବି ଶନି ମଙ୍ଗଳ ପାହାନ୍ତି କରେ ରତି ।
ତୋହର ଭକତ ଏହା ନବର୍ତ୍ତି କରନ୍ତି । ୪୮ ।

ପ୍ରାତସ୍ନାନ ଶୀଘ୍ରେ ଦୀପ ଉଜ୍ଜ୍ୱଳ ବସନ ।
ଅପାଲଟ ହାଣ୍ଡି ଉଆ ଅନ୍ନ ଯେ ଭୋଜନ । ୪୯ ।

ଏମାନ ଅଟଇ ମୋର ଅପ୍ରୀତି ଗୋସାଇଁ ।
ତୋହର ଭଗତ ଏହା ଭିଆଇବେ ମସ୍ତି । ୫୦ ।

ଉଚ୍ଛୁନା ଥାଉ ଭୋଜନ ମଇଳ ବସନ ।
ସନ୍ଧ୍ୟା ସାଉ ଦୀପ ଦବା ଅଙ୍ଗରେ ସ୍ନାହାନ । ୫୧ ।

ଏ ଅଟଇ ମୋର ହୃତ କଳିଯୁଗ ଜତି ।
ମୋହର ତୋ ଭଗତର ନୋହିବ ତ ପ୍ରୀତି । ୫୨ ।

ମୋର ଭକ୍ତ ପରେ ତୋ'ର ନାହିଁ ରାଜପଣ ।
ମୋର ନାମ ଶୁଣି ଭକ୍ତେ ସୁଖୀ ହେବେ ପୁଣ । ୫୩ ।

ରଖିଥିବ ଗୁପତରେ କେହି ନ ଜାଣିମ ।
ସତ୍ୟ କଳିଠାରେ ସବୁ ହୋଇବ ଉତ୍ତମ । ୫୪ ।

ମୋର ଭକ୍ତ ଜତି ହେବ ଦେଖିବୁ ରୁ ପୁଣି ।
ଶ୍ରୀମୁଖ ବଚନ କଳିଯୁଗ ଅଛୁ ଶୁଣି । ୫୫ ।

ଏଣୁ ରାମକୃଷ୍ଣ ଆଜ୍ଞା ହୃଦରେ ଗୁଣିଣ ।
ଜାତ ହେଲୁ ଓଡ୍ରରାଷ୍ଟ୍ରେ ଶୂଦ୍ରକୁଳେ ପୁଣ । ୫୬ ।

ତୁମ୍ଭେ ଗୋପକୁଳେ ଜାତ ହୋଇଲ ଗୋବିନ୍ଦ ।
ହରି ଯେ ଅନନ୍ତ ଗୁଣ କଲି ଚାଉ ଧନ୍ଦ । ୫୭ ।

ହରି ଯେ ଅନନ୍ତ ତୁମ୍ଭେ ଆମ୍ଭର ଚେତନ ।
କଳି ପାପ ଛେଦିବାକୁ ଏ ନାମ କୀର୍ତ୍ତନ । ୫୮ ।

---

୫୧—୨ 'ସାଣଦବାଦବ (କ) ?'

ଅନନ୍ତ ହୁଣ ଯେ କଥା ଅଛ ଏ ଗୁପତ ।
ଚଉଦ ଭୁବନ ଲୋକ ଅନନ୍ତ ଗର୍ଭେତ । ୬୯ ।

ଅନନ୍ତ ଗୋପାଳ ଜାତ ବ୍ରହ୍ମାଣ୍ଡ ଧାରଣ ।
ରାମ କୃଷ୍ଣ ପାଦେ ଦୀନ ଅଚ୍ୟୁତ ଶରଣ । ୭୦ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ପଞ୍ଚଦଶ ଛାନ୍ଦ ॥

—ː○ː—

# ଷୋଡ଼ଶ ଛାନ୍ଦ

ମୁକୁନ୍ଦ ଦାସର ମନ ଫେଡ଼ିବା ସଂଶୟେ ।
ଅଣାକ୍ଷର ବୋଲି କରି ମନ୍ତ୍ର ପୁଣ କହେ । ୧ ।
କେମନ୍ତେ ପଢ଼ିବା ମନ୍ତ୍ର ସେ ତ ବଡ଼ ଧନ୍ଦ ।
ଏକ ଯେ ଅକ୍ଷର ମନ୍ତ୍ର କେମନ୍ତେଣ ବନ୍ଦ । ୨ ।
ଏକ ଯେ ଅକ୍ଷର ଦଶ ପଞ୍ଚ ଯେ କରିବ ।
ପଢ଼ିବ ମନ୍ତ୍ର ଯେ ପୁଣ ଉତ୍ତମ ହୋଇବ । ୩ ।
ମଣ୍ଡଳ ଗୋଟିଏ ବେଢ଼ାଇବ ଅକ୍ଷରରେ ।
ପଞ୍ଚମାତ୍ରା ବସାଇବ ଚନ୍ଦ୍ର ଯେ ପାଶରେ । ୪ ।
ଅନାଦି ଯେ ଆଦ୍ୟମୂଳ ସପ୍ତାକ୍ଷର କର ।
ହରି ବୋଲି ବେନାକ୍ଷର ନବ ଏ ଅକ୍ଷର । ୫ ।
ହରି ବୋଲି ବେନାକ୍ଷର ପୁଣ ବସାଇବ ।
ହରି ଦୁଇ ମିଶାଇବ ତେର ଯେ ହୋଇବ । ୬ ।
ହରେ ଯେ ଅକ୍ଷର ଦୁଇ ମିଶିଲେ ପନ୍ଦର ।
ମଣ୍ଡଳ ଅଟଇ ଯେହୁ ଓଁକାର ଅକ୍ଷର । ୭ ।
ଏମନ୍ତେଟି ଏକାକ୍ଷର ଷୋଳାକ୍ଷର ହୋଏ ।
ମନ୍ତ୍ର କରି ପଢ଼ିଲେ ଯେ ଶିଷ୍ୟ ବୋଧ ପାଏ । ୮ ।
ଏ ମନ୍ତ୍ରକୁ ଓଁକାର ଉପରେ ବସାଇବ ।
ସକଳ ମନ୍ତ୍ରଙ୍କ ରାଜା ଏ ଅଟଇ ବେଦ ।୯।

---

୨—୨ କେମନ୍ତେଣ ବନ୍ଧ [କ]; ୬—୧ ହରିଂ ବୋଲି [ଖ]; ୬—୨ ହରି ଦୁଇ ମିଶାଇଣ ଧରିବ [ଗ] ୭—୨ ଅଟଇ ସେ ଓଁକାର [କ]; ୮—୧ ଷୋଳାକ୍ଷର ହୋଇ । ଏମନ୍ତ କରି ପଢ଼ିଲେ ବୋଧ ପାଇ [କ];
୯—୧ ଓଁକାର ଉପରେ (ଚ)

ଏ ମନ୍ତ୍ର ଯନ୍ତ୍ରକୁ ଦେଖା ଭେଟିଲେ ଗୋଟିଏ ।
ଏ ମନ୍ତ୍ର ସାଧି ପାରିଲେ ଭଗତ ହୁଅନ୍ତେ ।୧୦।
ଏ ମନ୍ତ୍ର ଜପିବ ମନ ସ୍ଥିର ଯନ୍ତ୍ର ଥିବ ।
ଚଞ୍ଚଳ ଚିତ୍ତ ହୋଇଲେ ପଣି ନ ପାରିବ ।୧୧।
ପବନ ସଙ୍ଗତେ ପଶି ପାରିବୁ କି ପୁଣ ।
ତେବେ ସିନା ପାଇବ ହେ ଏକାକ୍ଷର ଗୁଣ ।୧୨।
ଅକାର ଶବଦ ଯେ ଅଟଇ ପୁଣ ମୂଳ ।
ହୁକାର ଶବଦ ତହିଁ ଅଟଇ ଯେ ମେଳ ।୧୩।
ଓଁକାର ଶବଦ ପୁଣ ତହୁଁ ଯେ ଷରିଲ ।
ଚିତ୍ତରୂପ ଓଁକାରରୁ ଜନମ ହୋଇଲା ।୧୪।
ଚିତ୍ତରୂପୁଁ ପଞ୍ଚାଶ ଯେ ଅକ୍ଷର ବିହାର ।
ଏମନ୍ତ ହୋଇଣି ଅଣ ଅକ୍ଷର ବିସ୍ତର ।୧୫।
ଏ ମନ୍ତ୍ର ଅଟଇ ଗୁପତ ଶିଷ୍ୟଙ୍କୁ କହିବ ।
ବିଦ୍ୟା ଶୀଳ ପଣ୍ଡିତ ଯେ ହୃଦ ପୂର୍ଣ ହେବ ।୧୬।
ମନଭେଦୀ ସ୍ଥିର ଶାନ୍ତ ଅନୁଭବ ଥିବ ।
ଏମନ୍ତ ପାତ୍ର ଦେଖିଲେ ଅଣାକ୍ଷର ଦେବ ।୧୭।
ବନସ୍ତ ଭିତରେ ନେଇ ଧାନକୁ ବୁଣିଲେ ।
ପଡ଼ିଆ ବାଳିରେ ବୀଜ ନ ଉଠଇ ଭଲେ । ୧୮ ।
ଅପଣ୍ୟ ମୂଢ଼ ଘଟରେ ଏ ମନ୍ତ୍ର କହିଲେ ।
ପୁତ୍ର ନାତି ଦରିଦ୍ର ହୁଅନ୍ତି ତାର କୁଳେ । ୧୯ ।
ଗୁପତ ଗୁପତ ଏହୁ ଅଟ ଏ ଗୁପତ ।
ଯନ୍ତ୍ର ମଧ୍ୟେ ସାର ଅଟେ ଜାଲନ୍ଧ୍ରୀ ଯନ୍ତ୍ରତ । ୨୦ ।
ତନ୍ତ୍ର ମଧ୍ୟେ ସାର ଅଟେ ମାନବେ ଯେ ପୁଣ ।
ପାଠ ମଧ୍ୟେ ସାର ଅଟେ ନବ ବ୍ୟାକରଣ । ୨୧ ।

---

୧୦—୧ ଏମନ୍ତ ମନ୍ତ୍ରକୁ ଦେଖା (ଗ) ୧୪—୧ ଓଁକାର (ଖ);
୧୪—୨ ଓଁକାରରୁ (କ)

ଶାସ୍ତ୍ର ମଧ୍ୟେ ଗୀତା ସାର ବେଦରେ ଓଁକାର ।
ପଞ୍ଚ ମଧ୍ୟେ ଗୁରୁ ସାର ପୁରାଣ ବସ୍ତୁର ।୧୨।
ଭୋଜନକୁ ମାତା ସାର ସ୍ନେହେ ମିଷ୍ଟ ବଚ୍ଚ ।
ଭୋଜନକୁ ସାର ମହା-ପରସାଦ ବଢ଼ ।୧୩।
ଏମନ୍ତ ଶିଷ୍ୟ ଦେଖିଲେ ସନ୍ଥକୁ ଆପଣ ।
ବସ୍ତୁ ଯେ ଗୋଟିଏ ପାଶେ ବୋଢ଼ାଇଣ ଦେବ ।୧୪।
ଅବଧ ସ୍ୱସ୍ୱାଦୁ ଫଳ ଜଣବ ସେ ଭୋଗ ।
ମଣୋନ୍ଦ୍ରୁ ବଧ୍ୟ କରବ ଜାଲନ୍ଧର ଆଗ ।୧୫।
ସ୍ୱର୍ଗ ମର୍ତ୍ତ ପାତାଳ ଯେ ଚଉଦପୁର ସ୍ଥାପା ।
ଥାବର ଜଙ୍ଗମ କୀଟ ପତଙ୍ଗାଦ ମିଶା ।୧୬।
ଯାହାକୁ ଦାକଲେ ସେହୁ ହଙ୍କାରବ ପୁଣ ।
ଏଠ ସ୍ନେହେ କହିଲୁ ମୁକୁନ୍ଦ ତୋତେ ଜାଣ । ୧୭ ।
ଶ୍ରୀ ବୃନ୍ଦାବନରେ ବୃନ୍ଦାବଶ୍ର କୁଞ୍ଜଦ୍ୱାରେ ।
ମୁକୁନ୍ଦ ଦାସ ରମ୍ଭର ସେବା ତତପରେ । ୧୮ ।
ଭେଣୁକର ଶୁଣିଲେ ଦେ ଅଣ ଅକ୍ଷର ।
ଏମନ୍ତେ ଶରଣ ଦାନ ଅନନ୍ତ କଙ୍କର । ୧୯ ।

ଇତ ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ଷୋଡ଼ଶ ଗ୍ରନ୍ଥ ।

—:o:—

୧୨—୧ଓଁକାର (କ) ୧୩—୨ ମହାପରସଦ ବଢ଼ (ଖ)—ଡାକଲେ
୧୭—୧ ସ୍ନେହେ (କ)

# ସପ୍ତଦଶ ଛାନ୍ଦ

ଶୁଣ ତୁମ୍ଭେ ଅନନ୍ତ ହେ କୃଷ୍ଣ ମନ୍ତ୍ର କଥା ।
ଅତି ଏ ଗୁପତ କୃଷ୍ଣ ମନ୍ତ୍ରର ବାରତା । ୧ ।
ଏ ମନ୍ତ୍ରକୁ ଯନ୍ତ୍ରବଧି କହୁଦେବା ଶୁଣ ।
ହେତୁକରି ସୁମରିଲେ ମନ୍ତ୍ର ଶାସ୍ତ୍ରେ ପୂର୍ଣ୍ଣ । ୨ ।
ଛତ୍ରକ୍ଷର କରିବ ଯେ ଜୀବକୁ ଧରିଲେ ।
ଯନ୍ତ୍ରରେ ବସିବ ଅଷ୍ଟ ଅକ୍ଷର ତ କଲେ । ୩ ।
କଲଉଁ ବୀଜକୁ ବନ୍ଦ କଲେ ଆଠ ହୋଇ ।
ନମ ମିଶିଲେ ଟି ଯନ୍ତ୍ରେ ସଂ ଖଗ ହୋଇ । ୪ ।
ଅଷ୍ଟ କୋଣ ଧରିଲେ ଯେ ଯନ୍ତ୍ରବିଧି ତୁଲ ।
ଏମନ୍ତ୍ର ହୋଇଣ କୃଷ୍ଣ ମନ୍ତ୍ରେ ଯନ୍ତ୍ରେ ଭଲ । ୫ ।
ସେ ଯନ୍ତ୍ରକୁ ବସ୍ତ୍ର ଯେ ଗୋଟିଏ ପିନ୍ଧାଇବ ।
ତେବେ ସେ ଶିଷ୍ୟକୁ ମନ୍ତ୍ର ପରାପତ ହେବ । ୬ ।
ମନ୍ତ୍ରକୁ ପୂଜା ନ କରି ଶିଷ୍ୟକୁ କହିଲେ ।
ଗୋହତ୍ୟା ପାତକ ଦୋଷ ଲାଗଇ ଯେ ଭଲେ । ୭ ।
କୃଷ୍ଣନାମ କୃଷ୍ଣ ସର ଶୁଣ ହେ ଅନନ୍ତ ।
ଦାସର ଭକତି ହେରୁ ଦୃଢ଼ କରି ଚିତ୍ତ । ୮ ।
କଲଉଁ ଅକ୍ଷର ବନ୍ଦୁ ମଧ୍ୟରୁ ବାହାର ।
କୃଷ୍ଣାୟ ଚୋଳିଣ ମନ୍ତ୍ର ଓଁକାର ବାହାର । ୯ ।
ନମ ଦୁଇ ବସିଲେଟି ଅଷ୍ଟାଙ୍ଗରେ ସର ।
ଶାସ୍ତ୍ରାସେ ରଖିଲୁ ମନ୍ତ୍ର ଗୁପତ ଯେ କରି । ୧୦ ।

---

୧—୨-ମନ୍ତ୍ରର ବ୍ୟବସ୍ଥା (ଖ)   ୨—୨-ସ୍ମରିଲେ (କ)
୧୦—୧ ଅଷ୍ଟାଙ୍ଗରେ ସର (ଖ);

ଯନ୍ତ୍ର ତନ୍ତ୍ର ବିଧିକଥା ଅଛି ଯେ ଗହନ ।
କହୁବା ଯେ ଦୃଷ୍ଟାନ୍ତର ମନେ ତୁମ୍ଭେ ଘେନ । ୧୧ ।
ଗୃହକାର୍ଯ୍ୟ ଜନଙ୍କର ଗୁପ୍ତଧନ ଯେତେ ।
ଯେତେଠାରେ ଯେତେ ଧନ ଜାଣଇ ତା ଚିତ୍ତେ । ୧୨ ।
ଦବା ନଗି ଦୂରଠାରେ ଲୋଡ଼ିଲେ ତା ପାଏ ।
ଝଲଗ ଜନ ଖୋଜିଲେ ବଡ଼ ଧନ୍ଦ ହୋଏ । ୧୩ ।
ଏଣୁକରି ଗୁରୁ ଅଟେ ଆପଣାର ଘର ।
ସବୁ ମନ୍ତ୍ର ତନ୍ତ୍ର ଧନ ଏଣୁ ଦୃଷ୍ଟାନ୍ତର । ୧୪ ।
ଏଣୁକରି ବାର ଯେ ବରଷ ଗୁରୁ ସେବା
ସେବା କର୍ମ ଦୃଢବୃଦ୍ଧି ନିବଧି ଯେ ଦେବା । ୧୫ ।
ଅନ୍ନ ବସ୍ତ୍ର ଦେଇ ଗୁରୁ ପୂଜା ପରୁଶବ ।
ଏକ ବିଧି ଏମନ୍ତ ଯେ ଶିଷ୍ୟର ଦୁର୍ଲ୍ଲଭ । ୧୬ ।
ଅନ୍ନ ବସ୍ତ୍ର ଯେଉଁ ଶିଷ୍ୟ ଦେଇଣ ଯେ ପାଶ ।
ଦେବାର ଭଗତି ଏହୁ ଶୁଣ ହେ ବିପ୍ରଗ । ୧୭ ।
ଏ ବିଧି କଲେଣ ଶିଷ୍ୟ ଲଭଇ କାରଣ ।
ଏ କଥା ଅଛି ଦୁର୍ଲ୍ଲଭ ଗୁରୁଙ୍କ ଚରଣ । ୧୮ ।
ନୋହିଲେ ଏକ ଭଗତି ସେବା ଯେ କରିବ ।
ଗୁଲ କନ୍ଥା ଦନ୍ତ-ଧାପନା ଘଟୀ ଧରିବ । ୧୯ ।
ଚରଣ ଧଡ଼ତ କରି ଶ୍ରୀପଦ ପସ୍ତର ।
ସେବା ବିଧି ଆଚୋରଲେ ମନ୍ତ୍ର ସିଦ୍ଧି କର । ୨୦ ।
ନୋହିଲେ ସେ ଏକ କର୍ମ କରିବ ସେ ପୁଣ ।
ଗୁରୁ ଆଜ୍ଞେ ଲେଖି ହୋଇ ରହିଥିବ ପୁଣ । ୨୧ ।
ସମସ୍ତ ଯେ ଅପସର ବରଷର ଦିନ ।
ଅପସରେ କରିବ ସେ ଗୁରୁଙ୍କ ଦର୍ଶନ । ୨୨ ।

---

୧୭—୨ ବସ୍ତ୍ରଲେ (ଭ);

ନର୍କେ କଷ୍ଟ ଭୋଗିବ ସେ କିଛୁ ଧନ ଦେଇ ।
ସେବା ନର୍କେ ଦେବା ଏଣୁ ଜନ ବୁଦ୍ଧି କର୍ମ । ୧୩ ।
ନିର୍ବୁଦ୍ଧି କରଣ ଗୁରୁ ସେବା ସେ କରିବ ।
ସନ୍ତ ମନ୍ତ୍ର ତନ୍ତ୍ର ତେବେ ପରାପତ ହେବ । ୧୪ ।
ଅଗ୍ନି ତାର ପ୍ରାପ୍ତେ ମନ ହୋଇଲେ ସେ ପୁଣି ।
ଅଗ୍ନି ସେ ହୁସ୍ରବ ହୋଏ ବରଷକେ ଶୁଣ । ୧୫ ।
କପଟ ଯୁବତୀ ଯେସନ୍ତେ ସ୍ୱାମୀ ଠାରେ ଚିତ୍ତ ।
ତେମନ୍ତ ପରାପ୍ତେ ହେଲେ ମନ୍ତ୍ର ଅପ୍ରାପତ । ୧୬ ।
ଅର୍ଥୀ ଯୋଗୀ ପ୍ରଣାମେ କି ସନ୍ତୋଷେ ସେ ହୋଇ ।
ଏମନ୍ତ ପରାପ୍ତେ ହେଲେ ଭକ୍ତି ହୃଦେ ନୋହି । ୧୭ ।
ଅତ ଏ ଗୁପତ ଏହା କହିଲୁ ତୁମ୍ଭରେ ।
ରାମଚନ୍ଦ୍ର ସୁଦୟାରେ ପରାପତ ତୋରେ । ୧୮ ।
ମଧ୍ୟମତା କୃଷ୍ଣଦ୍ୱାରେ ସେବା ଯେ ତୁମ୍ଭର ।
ତେଣୁ କର କୃଷ୍ଣମନ୍ତ୍ର ହୃଦରେ ସୁମର । ୧୯ ।
ଦୀନ ସେ ଅଚ୍ୟୁତ ଭୃତ୍ୟ ପରିତ୍ରୟ ଦାସ ।
ପରମ ଗୁପତ ମନ୍ତ୍ର ଯନ୍ତ୍ର ବଡ଼ ରସ । ୩୦ ।

ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ସପ୍ତଦଶ ଛାନ୍ଦ ।



୧୭—୧ ଅର୍ଥୀ ଯୋଗୀ ପ୍ରଣତେ (କ,ଖ) କିସ ସେ ତୋଷ ହୋଇ (ଖ)

## ଅଷ୍ଟାଦଶ ଛାନ୍ଦ

ପୁଷ୍ପକ ନନ୍ଦନା ମନ୍ତ୍ର ରାଧା ଠାକୁରାଣୀ ।
ଶୁଣନ୍ତେ ଆନନ୍ଦ ଦାସ ହୃଦସ୍ଥରେ ଗୁଣି ।୧।
ରଖିବ ହୃଦସ୍ଥ ସ୍ଥାନେ ଗୁପତ ଏ ମନ୍ତ୍ର ।
ଅତି ଦୃଢ଼ ଅନ୍ତ ଗୂଢ଼ ନ କର ଉଜାଡ ।୨।
ଗୁରୁ ଗୁରୁ ଧରିଲେ ଅଠରେ ହେବ ସତ ।
ଅଷ୍ଟାକ୍ଷର ବସାଇବ ମନ୍ତ୍ରକୁ ସୁମତ ।୩।
ଶ୍ରୀ ସ୍ୱଂ ବୋଲି ବେନାକ୍ଷର ବସାଇବ ପୁଣ ।
ରାଧିକାସ୍ୱୈ ଚତୁରକ୍ଷର କରିବ ନିର୍ମାଣ ।୪।
ନାମ ଦୁଇ ମିଶିଲେ ତ ଯନ୍ତ୍ର ହେବ ତୁଲ ।
ସେହି ଯନ୍ତ୍ର ପାଞ୍ଚ ବସ୍ତୁ ଫୁଲ ଏକ ତୁଲ ।୫।
ପୂଜା ଦେଇ ଶିଷ୍ୟଙ୍କୁ ସେ କହିବ ଯତନେ ।
ଅତି ଭକ୍ତି ଥିଲେ ଶିଷ୍ୟ ଜପନ୍ତି ମନ୍ତ୍ରନେ ।୬।
ଶୀଳଶ୍ରୀ ଓଁକାର ବସେ ରାଧିକାସ୍ୱୈ ଅନ୍ତେ ।
ନାମ ସେ ଓଁକାର ଦେଲେ ଶିଷ୍ୟ ହୋଏ ବୋଧ ।୭।
ଯନ୍ତ୍ର ତନ୍ତ୍ର ମନ୍ତ୍ର ହୃଦେ ଗୁଣୁଥିବ ନିତ୍ୟ ।
ତେବେ ସିନା ପାଇବ ହେ ରାଧା-କୃଷ୍ଣ-ଭକ୍ତି ।୮।
ପ୍ରଭୁଙ୍କ ଉତ୍ତର ନାହିଁ ସଂସାରେ ବୋଲନ୍ତି ।
ସ୍ୱର୍ଗକୁ ନିଶାଣି ନାହିଁ ଦୃଷ୍ଟାନ୍ତର ଦ୍ୟନ୍ତି ।୯।
ସ୍ୱର୍ଗକୁ ନିଶାଣି ଅଟେ ଗୋବିନ୍ଦର ନାମ ।
ସତ ସେ ବଚନ ପ୍ରଭୁ ଉତ୍ତର ଜାଣିମ ।୧୦।
ଏଣୁକରି ସତଙ୍କପା ମୁଖରେ କହିବ ।
ଶ୍ରୀକୃଷ୍ଣ ଶ୍ରୀରାଧା ମନ୍ତ୍ର ମୁଖରେ ଜପିବ ।୧୧।

---

୭—୧-ଶୀରଶ୍ରୀ (ଖ); ଓଁକାର (କ);

ଇନ୍ଦ୍ରେ ଧଣେବ ଯତ ଭକ୍ତ ପର୍ବତ ।
ରାଧାକୃଷ୍ଣ ମନ୍ତ୍ର ତେବେ ହୃଦରତେ ଚିନ୍ତ । ୧୨ ।
ଯାର କଳ୍ପନାରୁ ଜାତ ଚଉଦ ବ୍ରହ୍ମାଣ୍ଡ ।
ଆକାଶ ତେଜ ନ ଅଳ ବାୟୁ ପୃଥ୍ୱୀ ଖଣ୍ଡ । ୧୩ ।
ରାଧାକୃଷ୍ଣ ଛନ୍ତି ଯେ ଚିନ୍ତାମଣି ଥାନେ ।
ଶଏ ଦୀର୍ଘ ଶଏ ସେ ଯୋଜନର ବିଧାନେ । ୧୪ ।
ସୁବର୍ଣ୍ଣ ହୀରା ମାଣିକ୍ୟ ମାରଗ ମର୍କତ ।
ବୈଦୂର୍ଯ୍ୟ ପ୍ରବାଳ ସେ ଯେ ମୁକୁତା ଯଡ଼ିତ । ୧୫ ।
ଦୁଇଶ ଯୋଜନର ଯେ ଏମନ୍ତ ଭିଆଣ ।
ଚଉଦ ଭୁବନ ସାର ଚିନ୍ତାମଣି ଥାନ । ୧୬ ।
ଚିନ୍ତାମଣିଥାନୁ ଷୋଳ ବଇକୁଣ୍ଠ ହୋଏ ।
ପଞ୍ଚଭୂତ ସ୍ୱରୂପ ଯେ ମୂର୍ତ୍ତିବନ୍ତ କାୟେ । ୧୭ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ହୋଇଲା ।
ପୃଥ୍ୱୀର ଭିଆଣ ପୁଣ ବ୍ରହ୍ମା ସରଜିଲା । ୧୮ ।
ପୁଣି ସପ୍ତ ପାତାଳ ଯେ ଶିବ ଭିଆଇଲେ ।
ବଇକୁଣ୍ଠ ବିଷ୍ଣୁ ପୁଣ ସ୍ୱର୍ଗରେ ରଚିଲେ । ୧୯ ।
ଏଣୁ କରି ସ୍ୱର୍ଗ ମଞ୍ଚ ପାତାଳଟି କନ୍ଧ ।
ବ୍ରହ୍ମା ବିଷ୍ଣୁ, ମହେଶ୍ୱର ପାତାଳ ଧରଇ । ୨୦ ।
ଥାବର ଜଙ୍ଗମ କୀଟ ପତଙ୍ଗ ଏ ସ୍ଥିର ।
ଚଉରାଶି ଯୋନରେ ଯେ ଆତଯାତ ସାର । ୨୧ ।
କୃଷ୍ଣ ରାଧା ମନ୍ତ୍ର ଜପେ ସାଧୁ ଦେହ ହୋଏ ।
ମାୟା ଜଡ଼େ ଭୁଲିଲେ ସେ ପଶୁ ଜନ୍ମ ପାଏ । ୨୨ ।
ପ୍ରାତଃ ସ୍ନାନ କରି ରାଧାକୃଷ୍ଣ ମନ୍ତ୍ର ଗୁଣ ।
ଛନ ଧୂପ ପାଞ୍ଚ ଅବକାଶରେ ଶରଣ । ୨୩ ।
ଷଣେ ଦଣ୍ଡେ ନମି ଷ ହୋ ତୁଳସୀ ମାଳରେ ।
ଚନ୍ଦ୍ରେ ଗ୍ରହେ ପର୍ବେ ଜପ ଲକ୍ଷେ ବା ମୁଖରେ । ୨୪ ।

---

୨୪—୨ ଶ୍ରେଷ୍ଠ ଗ୍ରହେ ପବେ ଜପ (କ) ?

କୃଷ୍ଣ କଥା ନ କହୁଣ ଅନ୍ୟ କଥା କହେ ।
କାକ ମୁଖ ବୋଲି ଜାଣ ସେ ମୁଖ ନିଶ୍ଚୟେ । ୨୫ ।
କୃଷ୍ଣ ଧ୍ୟାନ ନ କରଣ ଅନ୍ୟେ କର ମନ ।
ଜାଣିମା ସେ ଚର୍ମପଟ୍ଟ ଅନ୍ଧର ଲୋଚନ । ୨୬ ।
କୃଷ୍ଣ ଭକ୍ତ ନ ଭୁଞ୍ଜାଇ ଆନକୁ ଭୁଞ୍ଜାଇ ।
ଗୃଧ୍ରକ ପକ୍ଷୀକୁ ଅନ୍ନ ଦେଲା ପ୍ରାୟେ ହୋଇ । ୨୭ ।
କୃଷ୍ଣ ଭକ୍ତ ଭୁଞ୍ଜାଇଣ ଖାଇବ ଯେ ଶେଷ ।
କୃଷ୍ଣ ମନ୍ତ୍ର ସୁମରଣ ଥିବ ଗୃହ ବାସ । ୨୮ ।
ଭାଗ୍ୟ ଯୁକ୍ତ ଆନୋଲେ ତାର କ୍ଷୟ ହୋଏ ।
କୃଷ୍ଣ ମନ୍ତ୍ର ଜପ ଭକ୍ତପାଦ ରେଣୁ ଧ୍ୟାୟେ । ୨୯ ।
କୃଷ୍ଣନାମ ଅଟେ ସତ ବେଦରେ ବର୍ଣ୍ଣିତ ।
ମରଣ ସମୟେ କୃଷ୍ଣମନ୍ତ୍ର ନାମ ଚିନ୍ତ । ୩୦ ।
ମାୟାଧର ଅବୋଧ ଯେତେକ ଅଛି ପୁଣ ।
ସକଳ ଉଦ୍ଧରନ୍ତ ଗ୍ରନ୍ଥ ମରଣ କାଳେଣ । ୩୧ ।
ଗୁରୁସେବା କୃଷ୍ଣ-ସେବା ଧନ ଯେତେ ଦେବା ।
ତୀର୍ଥ ବ୍ରତ ମନ୍ତ୍ରଜପ ଏ ପଥେ ଚଳିବା । ୩୨ ।
କୃଷ୍ଣ କୃଷ୍ଣ ସୁମର ହେ ପାପ ହେବ ନାଶ ।
ପାମର ଅଚ୍ୟୁତ ରଙ୍ଗା ଚରଣକୁ ଆଶ । ୩୩ ।
କରୁଣା କରବ ନାଥ ଏ ଭବ ସାଗରେ ।
ଶ୍ରୀକୃଷ୍ଣ କରୁଣା କଲେ ଭବ ସିନ୍ଧୁ ତରେ । ୩୪ ।

ଇତି ଶ୍ରୀଗୁରୁଭକ୍ତ ଗୀତା କଥନେ ନାମ ଅଷ୍ଟାଦଶ ଗ୍ରନ୍ଥ ॥

—:o:—

## ଜନବଂଶ ଛାନ୍ଦ

ମନ୍ତ୍ରରାଜ ବୋଲିକରି ମନ୍ତ୍ରଙ୍କର ରାଜ ।
ହ୍ଲୀଁ ଶ୍ଲୀଁ କ୍ଲୀଁ ପୁଣି ଅଟେ ତିନି ବୀଜ । ୧ ।
ଶୁଣ ଗୋପ ବସ୍ତ୍ରଦାସ ଏମନ୍ତ୍ର ଯନ୍ତ୍ରରେ ।
ଗୋପୀଜନ-ବଲ୍ଲଭସ୍ୱ ମନ୍ତ୍ରରେ ସୁମରେ । ୨ ।
ଅଷ୍ଟକୋଣ ମଧ୍ୟରେ ଯେ ତ୍ରିକୋଣ ରଖିବ ।
ତ୍ରିବୀଜକୁ ତ୍ରିକୋଣରେ ନେଇଣ ଥୋଇବ । ୩ ।
ତ୍ରିକୋଣ କନକ୍ଷେତ୍ରେ ରଖ କ୍ଲୀଁ ଯେ ଅକ୍ଷର ।
ହ୍ଲୀଁ ଶ୍ଲୀ ରଖ ପୁଣ ଏ ଦେନି ପାଶର । ୪ ।
ଗୋପୀଜନ ବୃତ ଯେ ରଖିବ ଆଦ୍ୟ ବୃତ ।
ବଲ୍ଲଭସ୍ୱ ବୃତ ସ୍ତ୍ରାନ୍ତ ବୃତରେ ସୁମର । ୫ ।
ଶୁକଳ ପାଟ ବସନ ଏକ ବେଢ଼ାଇଣ ।
ଶିଷ୍ୟ ଯେ କରିବ ତେବେ ମନ୍ତ୍ର ଦରଶନ । ୬ ।
ଗୋପୀ ଦୁଇ ଅକ୍ଷର ଯେ ଶ୍ରୀଁ ବୀଜରେ ରହେ ।
ଜନ ଦୁଇ ଅକ୍ଷର ଯେ ହ୍ଲୀଁ ବୀଜରେ ରହେ । ୭ ।
ବଲ୍ଲ ଦୁଇ ଅକ୍ଷର ଯେ କାଲଉଁରେ ଥୋଇ ।
ତ୍ରିବୀଜେଣ ଛତ୍ରଷର ଛଦଣ ଅଛଇ । ୮ ।
କାଲଉଁ ଉଁକାରେ ଥୋଇ ଶୀଲଉଁ ଅର୍କରେ ।
ସ୍ଲରଉଁ ଓଁଢାରେ ଥୋଇ ମନ୍ତ୍ର ବିଧିଷରେ । ୯ ।

---

୧—୨ ସ୍ଲରଉଁ ଶୀଲଉଁ କାଲଉଁ (ଖ); ୨—୧ ଏ ମନ୍ତ୍ର ଜପରେ (କ)
୪—୧ ସ୍ଲରଉଁ ଶୀରଉଁ (ଖ); ୭—୧ ଶ୍ରିସ୍ୱଂ ବଟେଜ ରହେ (ଖ);
୭—୨ ସ୍ଲରଉଁ (ଖ); ୮—୧ କ୍ଲୀ ରେ ଥୋଇ (କ)
୯—୧ କ୍ଲୀଁ ଈକାରେ · ଶ୍ଲୀଁ ଅର୍କରେ (ଭ); ୯— · ହ୍ଲୀଁ ଓଁକାରେ (ଭ)···
ଇନ୍ଦ୍ରିୟ [ଖ]:

ଏଣୁ କରି ଓଁକାରଟି ବେଦର ପ୍ରମାଣ ।
ଗୀତା ଭାଗବତ ଶାସ୍ତ୍ର ଓଁକାରୁ ତିଆଣ । ୧୦ ।
ବହୁଷଣ୍ଠି ବର୍ଣ୍ଣ ଶୂଦ୍ର ଘୃଣଲାଦି ନର ।
ଅଷ୍ଟାଦଶ ପାତକ କୃଷ୍ଣ ଅଙ୍ଗରୁ ବାହାର । ୧୧ ।
ଏଣୁକରି କୃଷ୍ଣ କୃଷ୍ଣ ସର୍ବଦା ସୁମର ।
କୃଷ୍ଣ ଅଟେ ପିତା ମାତା ରାଧା ରାଧା ସ୍ମର । ୧୨ ।
କୃଷ୍ଣଙ୍କୁ ନ ଭଜି ଅନ୍ୟ ଦେବତାଙ୍କୁ ଭଜେ ।
ସମୁଦ୍ର ମଧ୍ୟରେ ଯେହ୍ନେ ବୋଇତ ଯେ ଭଜେ । ୧୩ ।
ତେସନ ପରସ୍ପେ ନରଦେହ ହୋଏ ନାଶ ।
କୂଳରେ ଲାଗିଲେ କୃଷ୍ଣ କୃଷ୍ଣ ତହ୍ନେ ଘୋଷ । ୧୪ ।
ଗଙ୍ଗାରେ ସ୍ନାହାନ କଲେ କୂପେ ନାହିଁ ଆଶ ।
ନୃପତି ସେବିଲେ ପାଣ୍ଡଠାରେ କାର୍ଯ୍ୟ କିସ । ୧୫ ।
ସଂସ୍କୃତ ବିଦ୍ୟା ଥିଲେ ପ୍ରାକୃତ କି ଗଢ଼ ।
ଧାନ ଯେ ତଣ୍ଡୁଳ ଥିଲେ ଦୁର୍ଭିକ୍ଷ କି ବଡ଼ । ୧୬ ।
ନରଜନ୍ମ ଗୋଟାକୁ ଯେ କୃଷ୍ଣନାମ ଗଢ ।
ଗୃହଧର୍ମ କରୁଥିଲେ ପୂଜିବ ଅତିଥି । ୧୭ ।
ଅତିଥି ପୂଜା ନକଲେ ନପାଇ ଏ ଭେଦ ।
ଖୋଜିଲ ଲେକ ତରଇ ବାଦୀକ ପ୍ରମାଦ । ୧୮ ।
କୃଷ୍ଣନାମ ଖୋଜୁଥିବ ସାଧୁଙ୍କ ମୁଖରେ ।
ହରିନାମ ପୁଚ୍ଛିବ ଯେ ଅତିଥିଠାବରେ । ୧୯ ।
ପୁଣ ଗୋଷ୍ଠି ମେଳାରେ ଖୋଜିଲେ ପାଇ ଧନ ।
ଖୋଜୁଥିବେ ମନମେଳେ କୃଷ୍ଣ ଯେ ଗୋବିନ୍ଦ । ୨୦ ।
ନୋହିଲେଟି ଶାସ୍ତ୍ରପଥେ ଖୋଜ କୃଷ୍ଣ-କଥା ।
ମୂଢ଼ଜନ କହିବକ ପଣ୍ଡିତ ବାରତା । ୨୧ ।

---

୧୨—୧ ଓଁକାରଟି [ଖ];
୧୦—୨ ଓଁକାରୁ [ଖ],

ସାଧୁଜନ ସଙ୍ଗେ ଦରିଦ୍ରକୁ କଲେ ଘୃଣ ।
ଦରିଦ୍ରକୁ ଧନ ଯେ ମାଗିଲେ ଫୁଟି ମଣ । ୧୨ ।
ଖୋଜ ଭେଦ କୋଟିକେ ଗୋଟିଏ ସିନା ସାର ।
ଖୋଜିଲ ଲୋକ ଯେ ପାର ହୁଅଇ ସଂସାର । ୧୩ ।
ଖୋଜ ଭେଦ ଅଙ୍ଗ ନୋହୁ ଶିଷ୍ୟ ଯେବେ କରେ ।
ଗୁରୁ ଶିଷ୍ୟ ବସନ୍ତି ଯେ ପଥର ନାବରେ । ୧୪ ।
ପୃଥ୍ୱୀପର୍ଯ୍ୟଟନ କରେ ବାର ଯେ ବରଷ ।
ମେଳା ଖେଳା ମନ୍ତ୍ର ଜପ ପାପ ହେବ ନାଶ । ୧୫ ।
ପରମ ଗୁପତ ଭକ୍ତି ଗୁରୁଗୀତା ପାଠ ।
ନ ଫେଡ଼ ନ ଫେଡ଼ ଅନେ ଗୁରୁଭକ୍ତି କୋଠ । ୧୬ ।
ଚମ୍ପକଲତା ସଖୀର କୁଞ୍ଜଦ୍ୱାର ସେବା ।
ପୂର୍ବଜନ୍ମେ ଜନ୍ମଫଳେ ଏମନ୍ତକୁ ଦେବା । ୧୭ ।
ଦୀନ ଦୁଃଖୀ ଶୂଦ୍ର ମନ୍ଦ ପାମର ଅତ୍ୟନ୍ତ ।
ପାଷାଣ୍ଡ କହିଲେ ଗୁରୁ ଦରିଦ୍ର ପ୍ରାପତ । ୧୮ ।

ଇତି ଶ୍ରୀଗୁରୁଭକ୍ତିଗୀତା କଥନେ ନାମ ଊନବିଂଶ ଛାନ୍ଦ ॥

—※—

# ବଂଶ ଛାନ୍ଦ

ରାମ ସେ ତାରକ ମନ୍ତ୍ର ଯନ୍ତ୍ର-ବନ୍ଧ ଶୁଣ ।
ଯାଦ୍ଧାସ ଯାଦବଦାସ ତୁମ୍ଭେ ଶ୍ରେଷ୍ଠ ପୁଣ । ୧ ।

ପଞ୍ଚକୋଡ଼ି ତନକ୍ଷର ଅଟଇ ସେ ସାର ।
ଓଁକାରକୁ ପାଞ୍ଚଧର ଦ୍ୱେବ ଅକ୍ଷୋଉର । ୨ ।

ଓଁ ଆତ୍ମାରାମ ପରମାତ୍ମା ରାମ କନ୍ଧ ।
ତତ୍ତ୍ୱ ନିରଞ୍ଜନ ସେ ତାରକ ରାମ ବନ୍ଧ । ୩ ।

ଅନ୍ଦରମେ ଅନ ଦ ସେ ରାମ କୃଷ୍ଣ ଧର ।
ନିରଞ୍ଜନ ତାରକକୁ ହୃଦରେ ସୁମର । ୪ ।

ରାମ କାଶୀକ୍ଷେତ୍ର ବାରାଣସୀସ୍ଥାନ କନ୍ଧ ।
ତତ୍ତ୍ୱ ନିରଞ୍ଜନ ସେ ତାରକ ରାମ ଧାମ୍ଭେ । ୫ ।

ଜ୍ୟୋତରାମ ଅନ୍ୟୋନ୍ୟ ସେ ରାମତତ୍ତ୍ୱ ଧର ।
ନିରଞ୍ଜନ ତାରକ ସେ ରାମଗଢ କର । ୬ ।

ରାମ ଅଗଡକ୍ତ ଗଢ ରାମତତ୍ତ୍ୱ ସାର ।
ନିରଞ୍ଜନ ତାରକ ସେ ରାମକୁ ସୁମର । ୭ ।

ତେର ଅସ୍ଥ ଧଣ୍ଡ ସେ ମନ୍ତ୍ରକୁ ଲେଖିବ ।
ଭୂମ ସେ ଖଣ୍ଡେ ଏ ପୁଣି ଲିପି କରି ଦେବ । ୮ ।

ସେ ଭୂମିରେ ଚୂର୍ଣ୍ଣକରି ମୃତ୍ତିକା ରଖିବ ।
ଯନ୍ତ୍ର ଗୋଟି ଲେଖି ପୂଜାବସ୍ତୁ ବେଢ଼ାଇବ । ୯ ।

---

୨—୨ ଓଁକାରକୁ ବେଦ ଧର [କ];
୪—୨ ତରେ ଦନ୍ତ ସେ ନ ତଳ [ଖ]

ତେବେ ସେ ଶିଷ୍ୟର ହେବ ବଡ଼ ମନସାର ।
ଯନ୍ତ୍ର ନ ଭେଦଲ ଶିଷ୍ୟ ଅଗାଡ଼ୁରେ କର ।୧୦।

ଅଗାଡ଼ୁ ମଧ୍ୟରୁ ଯେହ୍ନେ ବୀଜନୋହେ ଜାତ ।
ଗୋଷ୍ଠି ସନ୍ଥ ଜାଣନ୍ତି ଯେ ବଚନ ଉଦନ୍ତ ।୧୧।

ମୂଢ଼କୁ କହିଲେ ଶାସ୍ତ୍ର ନ ବୁଝଇ ପୁଣି ।
ପଥରକୁ ପାଣି ଯେହ୍ନେ ନ ପାରଇ ଜଣି ।୧୨।

ପଦ୍ମପତ୍ରେ ପାଣିଯେହ୍ନେ ନ ମିଶଇ ପୁଣ ।
ମନକୁ ଅବଶ କଲେ ଏସନ ଯେ ଜାଣ ।୧୩।

ପଣ୍ଡଘଟ ଅଟଇ ଯେ କ୍ଷୀରେ ନୀର ମତ ।
କୃଷ୍ଣକଥା ଶୁଣିଲେ ଯେ ଆନନ୍ଦିତ ଚିତ୍ତ ।୧୪।

ଧନ ଅରଜଣ ଯେତ୍ତୁ ଗୁରୁଙ୍କୁ ନ ଦେଲ ।
କୃଷ୍ଣଭକ୍ତ ଦେଖି ଚିତ୍ତ ଦୃଢ଼ ଯେ ନ କଲ ।୧୫।

ଯେଉଁ ଜନ ପଦାର୍ଥଟି କୃଷ୍ଣ ସ୍ନେହ ନାହିଁ ।
ଧିକ ଧିକ ଜୀବନ ତା ମୁଖହିଁ ନ ଚାହିଁ ।୧୬।

ସେ ଜନର ମୁଖ ଯଦି ପ୍ରଭାତୁ ଚାହିଁବ ।
ତନ୍ତ୍ରେ ନାମ ଜପି କୃଷ୍ଣ ରୂପକୁ ଧ୍ୟାଇବ ।୧୭।

କଳିଯୁଗେ ଦଣ୍ଡାସାର ନାମ ମୁଖେ ଧର ।
ସେବେ ଥିଲେ ମୁଠିଏ ଯେ ପରଧିସ୍ତ କର ।୧୮।

ନ ଥିଲାର ଜନ ପୁଣ କାହୁଁ ଆଣିଦେବ ।
ଥିଲା ଲୋକ ନ ଦେଲେ ତା ଗୃଧ୍ରକ ବୋଲିବ ।୧୯।

ଶ୍ୱାନ କାକ ଜନ୍ମ ହେଲେ ସୁହେଉ କପାଳ ।
ମାନବ ଦେହକୁ ସାର ଭକ୍ତ ସେବା ବଳି ।୨୦।

---

୧୧—୨ ବଚନ ଦଢ଼ ଅନ୍ତ [କ];

କୋଟିକରେ ଗୋଟିକକୁ ଏ ଗ୍ରନ୍ଥ କହିବ ।
ଧନ ଲୋଭେ ଦେଲେ ଗ୍ରନ୍ଥ ଦରିଦ୍ର ହୋଇବ ।୧୧।

ବାର ଯେ ବରଷ ଗୁରୁ ପାଦରେ ସେବଣ ।
ଧନ ଦାର ଏଡ଼ିଲ ଯେ ମନରେ ମୋ ପୂଣ ।୧୨।

ସେବା ଲେଶ ଦେବା ଧନ ଦେଖିଲେ କହିବ ।
ମୁଁ କାରପଣ ବହିଲେ କୃଷ୍ଣ ବ୍ୟାଧି ହେବ ।୧୩।

ଗୁରୁ ଭଣ୍ଡାରର ଧନ କର୍ଣ୍ଣରେ ଶୁଣିଲ ।
ସମୁଦ୍ର ଜଳରୁ କୁଶ ଅଗ୍ରେ ଜଳ ନେଲ ।୧୪।

ବିନା ଶିଷ୍ୟେ ନ କହିବ ଏ ଗ୍ରନ୍ଥ ବିଚାର ।
ଦାମ୍ଭିକ ନାସ୍ତିକ ଆଗେ ଗୋପ୍ୟ ଗୋପ୍ୟ କର ।୧୫।

ଚଣ୍ଡାଙ୍ଗୀ ନଦୀର ତଟେ ମୋହର ଜନମ ।
ଅନନ୍ତ ଗୋପାଳ ଆଗ୍ରେ ଅଚ୍ୟୁତ ମୋ ନାମ ।୧୬।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ବଂଶ ଗ୍ରନ୍ଥ ।।

— X —

# ଏକବିଂଶ ଛାନ୍ଦ

ଚୈତନ୍ୟ ମନ୍ତ୍ର ତେର ଅକ୍ଷର ଧରିବ ।
ଶ୍ରୀବୀଜକୁ ବେଦ କଲେ ଚଉଦ ହୋଇବ ।୧।

ଦୁଇ ପଦ୍ମ ଧଇଲେ ଯେ ମନ୍ତ୍ର ହେବ ସଣ ।
ଚଇତନ୍ୟ ମନ୍ତ୍ରକୁ ଯେ ସନ୍ତରେ ସ୍ମରଣ ।୨।

ଶ୍ରୀକୃଷ୍ଣ ଯେ ବୋଲି ମନ୍ତ୍ର ଦିନ ଷରକର ।
ଚୈତନ୍ୟ ଗୌରାଙ୍ଗ ଆଠ ଅକ୍ଷର ଯେ କର ।୩।

ନମ ଦୁଇ ମିଶିଲେ ଯେତେ ଅକ୍ଷର ହୋଇ ।
ମନ୍ତ୍ର ଯନ୍ତ୍ର କଲେ ପୁଣ ଶିଷ୍ୟ ବୋଧ ପାଇ ।୪।

ଶିଷ୍ୟ ବେଦାକ୍ଷର ରଖ ଅଙ୍ଗାଙ୍ଗରେ ପୁଣ ।
ନମ ବେଦ ଅକ୍ଷରକୁ ଓଁକାରେ ରଖିଣ ।୫।

ଏଗାର ଅକ୍ଷର ପୁଣ ବିନ୍ଦୁରେ ରଖିବ ।
କୃଷ୍ଣ ଚଇତନ୍ୟ ମନ୍ତ୍ର ଏମନ୍ତେ ଯେ ଜାବ ।୬।

କଳିଯୁଗରେ କୃଷ୍ଣ ନାମ ଅଟଇ ଯେ ସାର ।
କଳିଯୁଗେ କୃଷ୍ଣଭକ୍ତ ପ୍ରୋବଧି କର ।୭।

ତୋର କହୁଅନ କଳିଯୁଗେ ବଡ଼ସୁଖ ।
ଭିକ୍ଷ ମାଗି କୃଷ୍ଣ ନାମ ଜପୁଥିବ ମୁଖ ।୮।

---

୭—୧ ବିନ୍ଦୁରେ ଧରିବ (ଖ)

ସ୍ୱେଚ୍ଛା ନାଶି ମିଥ୍ୟା ଦ୍ୱନ୍ଦ୍ୱ ନ ଧରିବ ଅଙ୍ଗ ।
ତେବେ ସିନା ପାଇବ ହେ କୃଷ୍ଣ ଭକ୍ତ ସଙ୍ଗ ।୯।

ପାମର ଅଚ୍ୟୁତଙ୍କୁ ଯେ ଉଚ୍ଚାରଣ କର ।
କୃଷ୍ଣ-ଭକ୍ତ ପାଦ ଧୋଇ ମସ୍ତକରେ ଧର ।୧୦।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଏକବିଂଶ ଛାନ୍ଦ ।



# ଦ୍ୱାବିଂଶ ଛାନ୍ଦ

ଶୁଣ ହେ ପବନ ଦାସ ଗୁପତ ବସ୍ତୁର ।
ହରେକୃଷ୍ଣ ମହାମନ୍ତ୍ର ସନ୍ଧିବନ୍ଧ କର । ୧ ।
ଚହ୍ଲଗ କରବ ଯେ ବଢ଼ାଇଣ ଗୁଣ ।
ଅଠ ଖଗ ଧଇଲେ ଯେ ଷୋଳ ହେବ ସର । ୨ ।
ଷୋଳରେ ବେଢ଼ିବ ଷୋଳ ହୋଇଣ ବତିଶ ।
ଅକ୍ଷର ଗୋଟିଏ ଦଳ ଗୋଟିକରେ ଘୋଷ । ୩ ।
ହରେକୃଷ୍ଣ ହରେକୃଷ୍ଣ ମନ୍ତ୍ରଙ୍କର ସାର ।
କୃଷ୍ଣ କୃଷ୍ଣ ହରେ ହରେ ହୃଦରେ ସୁମର । ୪ ।
ହରେରାମ ହରେରାମ ଜପ ସୁମରିବ ।
ରାମ ରାମ ହରେ ହରେ ନନ୍ଦଣ ଅକ୍ଷରେ ଗୁଣିବ । ୫ ।
ସନ୍ଧିବନ୍ଧ ଏମନ୍ତେଣ ଲେଖିବାକୁ ମନ୍ତ୍ର ।
ଶୁକଳ ପାଟ ବସନ ଯନ୍ତ୍ରକୁ ବେଢ଼ାଇ । ୬ ।
ଶିଷ୍ୟ କର୍ଣ୍ଣ ମୂଳରେ ଯେ କରିବ ଶବଦ ।
ତେବେ ସିନା ପାଇବ ଯେ ଶବଦର ଭେଦ । ୭ ।
ହରେ ଯେ ଓଁକାର ଯୋଗ କୃଷ୍ଣ ଯେ ବିନ୍ଦୁରେ ।
ରାମ ଯେ ଅର୍ଦ୍ଧାଙ୍ଗେ ଯୋଗ ଜପ ନାମ ସ୍ୱରେ । ୮ ।
ବତିଶରୁ ତେତିଶ ହୋଇଲେ ବଡ଼ ପାପ ।
ଗୋହତ୍ୟା ଦୋଷ ଲାଗଇ ମନ୍ତ୍ର କଲେ ଜପ । ୯ ।
ଏକତିଂଶ ଅକ୍ଷର ହୋଇଲେ ପଦ ପୁଣି ।
ବ୍ରହ୍ମହତ୍ୟା ପାତକ ଯେ ମନ୍ତ୍ର ପଦ ଗୁଣି । ୧୦ ।
ଏଣୁକରି ଯନ୍ତ୍ର କଲେ ହୁଡ଼ଣ ଯେ ନୋହୁ ।
ସନ୍ଧିବନ୍ଧ ନ ଜାଣିଲେ ମୂଢ଼ ବୋଲି କହୁ । ୧୧ ।

ବିନା ମାରେ ଘଟ ଗୃହେ ରଖିଣ ଯେ ଥିବ ।
ତୃଷିତ ଜନ ଯେସନେ ନଗ୍ରଣ ନୋହିବ । ୧୨ ।
ଗୁହ୍ୟ ତତ୍ତ୍ୱ ନ ଭେଦିଲା ଗୁରୁ ସେହ୍ନ ମତ ।
ପଣ୍ଡିତ ଜନଙ୍କୁ ପୁଚ୍ଛ ବଚନ କେମନ୍ତ । ୧୩ ।
ବିଶାଖା ସଖୀର କୁଞ୍ଜ ଦ୍ୱାରେ ରୁନ୍ଧ ସେବା ।
ପାଇଲ ଯେ ମନ୍ତ୍ର ଗୁହ୍ୟ ବିଧି ଅଟେ ସେବା । ୧୪ ।
ବିନା ଶିଷ୍ୟେ ନ କହିବ ଏ ଗ୍ରନ୍ଥଙ୍କୁ ପୁଣି ।
ଗୁରୁ ନ ସେବିଲା ଜନେ ନ କହିବ ପୁଣି । ୧୫ ।
ଅନ୍ଧ-ମୂର୍ଖ ଛବେ କି ଅମୃତ-ଆସ୍ୱାଦ ।
ସ୍ୱେରକୁ ଧର୍ମ ପୁରାଣ ଅଟଇ ଯେ ଦୂର । ୧୬ ।
ଅପଶ୍ୟ ହୋଇଲେ ଶିଷ୍ୟ ତେସନ ପରାଧେ ।
ନ ଭେଦିଲ ଗୁରୁ ତହିଁ ସଙ୍ଗତରେ ଥାଏ । ୧୭ ।
ସାଧୁ ସଙ୍ଗ ଗୁରୁ ସଙ୍ଗ ନିରନ୍ତରେ କର ।
ଲେପ୍ୟ ହେବା ଯାଏ ଘଟ ଶାସ୍ତ୍ର-ପଥ ସ୍ମର । ୧୮ ।
ତେବେ ସେ ପାଇବ କିଛି ଗୁରୁଙ୍କ ଭଣ୍ଡାର ।
ଏ ସଙ୍ଗ ନ କଲେ ବସେ ଦଦସ୍ତ ନାବର । ୧୯ ।
ଦୀନ ଦୁଃଖୀ ଅବ୍ୟକ୍ତ ମୁଁ ଭବରେ ପଡ଼ିଣ ।
ଭରସା କରିଛୁ ନାବ ସନ୍ଥର ଚରଣ । ୨୦ ।
ଏକଙ୍କୁ ଆରେକ ଏହୁ ସଂସାରେ ଅହ୍ୱନ୍ତା ।
ହରି କଥା ଛାଡ଼ି କୁଟ କଥା କରେ ଚିନ୍ତା । ୨୧ ।
ହରେକୃଷ୍ଣ ହରେକୃଷ୍ଣ ମୁଖରେ ସୁମର ।
ସେରେ ଥିଲେ ମୁଠିଏ ଯେ ପର ହସ୍ତ କର । ୨୨ ।
ଧନ ଜନ ପୁଣ ଅଟେ ଗୋବିନ୍ଦ ଭଣ୍ଡାର ।
ନଷ୍ଟର ପରିସ୍ୱେ ହଟ ଭଣ୍ଡାନ୍ତ ସଂସାର । ୨୩ ।
ହଟିଆ ନାଗର ହଟ କରୁଛୁ ଛନ୍ଦେଣ ।
ଏକଙ୍କୁ ଦିଅଇ କିଛି ଦିନ ଧନ ପୁଣ । ୨୪ ।

ଧନପଣ ଜନେ କେବଳ ହୁଅଇ ଶରୀର ।
କୁତ୍ସି ପଥ ଛାଡ଼ି ମାୟାପଥେ ଜର ଜର । ୧୫ ।
ଏ ହେତୁ ଜାଣିଣ ତୁମ୍ଭେ ସଂସାରେ ଯେ ଫେର ।
ନାମ କୀର୍ତ୍ତନ କର ପ୍ରାଣୀ ହେବେ ପାର । ୧୬ ।
ଶୁଣ ହେ ପବନ ଦାସ ପୁଣ ପୁଣ ତୁହ୍ମ ।
ଏଥ ଏ ଗୁପତ ଗ୍ରନ୍ଥ ପାଷାଣ୍ଡେ ନ କହ । ୧୭ ।
ଆନକୁ କହିଲେ ପାଠ ଦରିଦ୍ର ହୋଇବ ।
ଧନ ଲୋଭେ ପାଠ ଦେଲେ ପୁତ୍ର ନାଶ ହେବ । ୧୮ ।
ଅଷ୍ଟାଙ୍ଗ ପଞ୍ଚାଙ୍ଗ ବୁଦ୍ଧି ଯେଉଁ ଜନ କରେ ।
ଏ ଜନକୁ କହିଲେ ଯେ ଦୋଷ ନାହିଁ ତାରେ । ୧୯ ।
ସନାତନ ଗୁରୁ ମୋତେ କହିଲେ ନୃପତେ ।
ନୃପତେ କହିଲ ମୁହିଁ ରାମଚନ୍ଦ୍ର ହୁତେ । ୨୦ ।
ରାମଚନ୍ଦ୍ର କହିଲେ ଯେ ପବନ ସୁତରେ ।
ପବନ କହିବ ତୁମ୍ଭେ ତୁମ୍ଭ ଶିଷ୍ୟ ଘରେ । ୨୧ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଦ୍ୱାବିଂଶ ଗ୍ରନ୍ଥ ॥



## ନୟୋବଂଶ ଛାନ୍ଦ

ଶୁଣ ଅହେ ଗନ୍ଧାସର ସମସ୍ତ ଗୋପାଳ ।
ରାମଚନ୍ଦ୍ର ପାଞ୍ଚସାର ସାନ୍ତ ତୁମ୍ଭେ ମେଳ ।୧।
ଉତ୍ଥାନ ପାଞ୍ଚ ସାଙ୍ଗରେ ସାତପୁଅ ଥାଏ ।
ବେନି ଦ୍ୱାଦଶରେ ମନ୍ତ୍ର କରିବ ଯେ ଲକ୍ଷ୍ୟେ ।୨।

ବୃତ୍ତି,ଖର ଧଇଲେ ଯେ ପୂର୍ଣ୍ଣ ଗୁଣ ହେବ ।
ପୂର୍ଣ୍ଣ ବ୍ରତ ଧଇଲେ ଯେ ଦ୍ୱାଦଶ କରିବ ।୩।
ପୂର୍ଣ୍ଣ ବ୍ରତ ଧଇଲେ ଯେ ସୋଳ ଖଣ୍ଡ ହୋଏ ।
ଷୋଳନାମ ଯନ୍ତ୍ରରେ ଗୋଟି କରିବ ଯେ ଲକ୍ଷ୍ୟେ ।୪।

ହରେରାମ କୃଷ୍ଣ ଶ୍ୟାମ ସୁମରିବ ମନ ।
ହରିଓଁ ଶୀରଓଁ ନୀଳ ଦାମ କରି ଧ୍ୟାନ ।୫।
ନନ୍ଦ କନ୍ଦ ଦୀନ ଧନ୍ନି ବସ୍ତ୍ରଭୂଷଣ କର ।
ସାଧୁ ମଧୁ କାମ ବ୍ରହ୍ମ ଷୋଳ ନାମ ଧର ।୬।

ଏକ ନାମ ଏକ ଥାନେ ଲେଖିବ ଯନ୍ତ୍ରରେ ।
ଷୋଳ ଯେ ମୁରଲି ବସ୍ତ୍ର ଦେବ ସେ ଯନ୍ତ୍ରରେ ।୭।
ବସ୍ତ୍ରତ ବସ୍ତ୍ରତ କ୍ଷୀର ଦେବ ସେଠାବର ।
ଭୂମିଦାନ ଦେବ ଶିଷ୍ୟ ଗୁରୁଙ୍କ ସେବାର ।୮।

ଅଷ୍ଟରତ୍ନ ଦକ୍ଷିଣା ଯେ ଦେବ ପୁଣ ଶିଷ୍ୟ ।
ଅତିଗୋପ୍ୟ ଅତିଗୋପ୍ୟ ନ କର ପ୍ରକାଶ ।୯।
କୋଟିକରେ ଗୋଟିଏ ଦେଖିବେ ହେତୁ ମନ ।
କହୁ ଯେ ପାଇବ ସେ ବରଷେ ଦେଲେ ଧ୍ୟାନ ।୧୦।

---

୧—୧ ଶୁଣ ହେ ଗନ୍ଧାସ ରସ (କ);
୨—୧ ସାତ ପୁଣ ଥାଏ (କ)

କାଳଇଁ ବନ୍ଧୁରେ ଦେବ ଶ୍ରୀଁ ରାମ ଅର୍ଦ୍ଧ ।
ହ୍ରାଂ ହ୍ରରେ ଓଁକାରେ ଯେ ଶିଷ୍ୟ ପାଉ ବୋଧ । ୧୧ ।
ଶ୍ୟାମ ଯେ ଶୂନ୍ୟରେ ଥୋଇ ଶ୍ରୀ ନାମକୁ ଥୁଅ ।
ନନ୍ଦ କନ୍ଦ ଓଁ କାରରେ ମନ୍ତ୍ର ଗୋଟି ଦିଅ । ୧୨ ।

ଧାନ ଯେ ବନ୍ଧୁରେ ଥୋଇ ଧର୍ମ୍ମ ଯେ ଅର୍ଦ୍ଧରେ ।
ସାଧୁ ଯେ ବନ୍ଧୁରେ ଦେଲେ ମଧୁ ଯେ ରାମରେ । ୧୩ ।
କାମ ଯେ ଓଁ କାରେ ଦେଲେ ହୋଇଲାକ ଭୁଲ ।
ଢନ ପାଞ୍ଚେ ପନ୍ଦର ଯେ ବର୍ତ୍ତିଲେ ଭଲ । ୧୪ ।

ବ ଅ କୁ ବନ୍ଧୁରେ ଦେଲେ ର କୁ ମଧ୍ୟରେ ।
ହୃ କୁ ଯେଠାବରେ ଯେଂଷୋଳରେ ବାମରେ । ୧୫ ।
ଭୂପତିମାନଙ୍କୁ ସିନା ମିଳେ ଭୂମିଦାନ ।
ଅନ୍ୟଜନ କାହୁଁ ଦେବ ଏ ଦକ୍ଷିଣା ପୁଣ । ୧୬ ।

ଏ ବଡ଼ ସଂଶୟ ଅଟେ ଲାଗିଲା ତ ଧନ୍ଦ ।
ଏ କଥାକୁ ପ୍ରତିକାର କର ଗୁରୁଦେବ ।୧୭।
ଶୁଣ ଆହେ ଗୋପସୁତ କହୁବା ବିସ୍ତର ।
ବରଷ ଦିନରେ ଉପୁଜିବ ଯେତେ ଘର ।୧୮।

ସେ ଧନକୁ ଷୋଳ ଭାଗ କରିବ ମନରେ
ବରଷ ଦିନରେ ଭାଗେ ଦେବ ଗୁରୁ ଘରେ ।୧୯।
ଏକଥା ଅଟଇ ଭଲ ବିସ୍ତରକୁ ପୁଣ ।
ଫେଡ଼ିଲେ ସଂଶୟ ଗୁରୁ ପାଇଲୁ କାରଣ ।୨୦।

ଗୁରୁ ଯେ ଗୋଲୋକ ହେଲେ ଏ ଦକ୍ଷିଣା ପୁଣ ।
ଶିଷ୍ୟର ଦକ୍ଷିଣା କାହିଁ ଲାଗିବ କାରଣ ।୨୧।

---

୧୧—୧ କଲଉଁ ବନ୍ଧୁ, କୃଷ୍ଣବନ୍ଧ, ଶ୍ରିସ୍ୱଂ ରାମ ଅର୍ଦ୍ଧ (କ);
୧୨—୧ ଶ୍ରିସ୍ୱଂ ଦାମ ଥୁଅ (କ);
୧୩—୨ ମସ୍ତକୁ ନେଇ ଠାରେ ଷୋଳରେ (ଖ); ବାମରେ (କ)

ଭୂମିର ଯେତେକ ଫଳ ଉପୁଜାଇ ମଧ୍ୟ ।
ପୁଷ୍ପ ନାହିଁ ଥିଲେ ଗୁରୁ ତୁଲ ଅଟେ ସେହି ।୨୨।
ପୁଷ୍ପ ନାହିଁ ନ ଥିଲେ ଯେ କରିବ ବସ୍ତୁର ।
ଗୁରୁଙ୍କର ମହୋତ୍ସବ ଦିବସ ସେ କର ।୨୩।

ଷୋଳଅଙ୍ଗୁଁ ଖଗ ଯେ କରିବ ଏମନ୍ତ ।
ମୃତ୍ୟୁ ମଣ୍ଡଳରେ ଜାତ ହୋଇଲେ ମର୍ତ୍ତରେ ତ ।୨୪।
ବସ୍ତୁ ହିଁ ସ୍ୱତନ୍ତ୍ର ବେଶ ଧଇଲେ ମଞ୍ଚରେ ।
ଅସୁରଙ୍କି ମରନ୍ତି ଯେ ପାଇଥିଲେ ବରେ ।୨୫।

ସବୁଜ ଅଟଇ ନରଙ୍କର ତ ମରଣ ।
ବାସନା ରହଇ ଏଥା ଯୁଗେ ଯୁଗେ ପୁଣ ।୨୬।
କାଠ ସଙ୍ଗେ ଚନ୍ଦନ କି କରିବା ଯେ ସରି ।
ମାଙ୍କଡ଼ା ପଥରି ସଙ୍ଗେ ହୀରା ତୁଲକିନ୍ତୁ ।୨୭।

ଧାନକୁ ଅଗାଡ଼ି ସେହ୍ନେ ନୁହଇଟି ତୁଲ ।
ହସ୍ତୀର ସଙ୍ଗତେ ତୁଲ ଅଟେ କି ଶୃଗାଳ ।୨୮।
ନାମର ଭଜନ ଯେ ବାସନା ସେହି ମଠ ।
କାଠ ଅଟେ ନାମ ନ ଭଜିଲା ସେହି ମଠ ।୨୯।

ଶ୍ରୀରାମ ଯେ ସୁମରିଲ ବିଭୀଷଣ ମନେ ।
ତ୍ରେତୋଯୁଗେ ଅମର ଯେ ହୋଇଲ ସେ ଥାନେ ।୩୦।
ଅସୁରୀ ବାହାର ହେଲା ରାମ ନାମ ଧରି ।
ବାସନା ରହିଲ ସତ୍ୟ ଜଳରେ ଯେ ପରି ।୩୧।

ଯୁଗେ ଯୁଗେ ଜାତେଶ୍ୱର ହୋଇଲ ସେ ପୁଣ ।
ଅମର ବୋଲଇ ସେ ଏମନ୍ତ କରି ଜାଣ ।୩୨।
ଜାତେଶ୍ୱର ପୁରୁଷକୁ ଅମରଟି କହ ।
ଶ୍ରୀରାମ ଭଜିଲେ ମୃତ୍ୟୁ ଯମ ଭୟ ନାହିଁ ।୩୩।
ଅହିଲ ଯେ କୃଷ୍ଣ ନାମ ଧରିଣ ଅମର ।
ଭୁଷଣ୍ଡ କାକ ହୋଇଲ ଜନ୍ମ ଜାତେଶ୍ୱର ।୩୪।

ଏଣୁକର କୃଷ୍ଣଜନ ଜାତେସ୍ୱର-ଦେହ୍ନ ।
ଘଟଗଲେ ହେବୁ ଭାଙ୍କ ବସ୍ତରବେ କାହ୍ନି ।୩୫।
ଯେଉଁ ଜନ୍ମ ହେଲେ ହର ଦଅନ୍ତୁ ଦର୍ଶନ ।
ଅହଲ୍ୟା ପଥର ହେଲା ସଂଜୀବ ଯେସନ ।୩୬।

ହରେକୃଷ୍ଣ ରାମଶ୍ୟାମ ଦାମୋଦର ଧର ।
ଶ୍ରୀ ନନ୍ଦନନ୍ଦନ ନାମ ହୃଦରେ ସୁମର ।୩୭।
ଅଦିମୂଳ ଦୀନବନ୍ଧୁ ବାସୁଦେବ ନାମ ।
ଶ୍ରୀ ମଧୁସୂଦନ ନାମ କୃପାମୟ ଧାମ ।୩୮।

ଶରଣ ସୋଦର ନାଥ ବ୍ରହ୍ମାଣ୍ଡ ଗୋସାଇଁ ।
ସ୍ମରଣି ରାମ ଶୀରଣି ରାଧା କାଳଣି କୃଷ୍ଣ କହ । ୩୯ ।
ରାଧାକୃଷ୍ଣ ରାମ ଲେବଗାରେ କର ହେତୁ ।
ତୋପର ଚଣ୍ଡ ମାଳା ଅତ୍ୟନ୍ତର ହେତୁ ।୪୦।

ଏ ଗ୍ରନ୍ଥ ବନ୍ଧ ପାରିଲେ ଅଁଟସ୍କ ହରଣ ।
ରୂପକେ ରଖିଲୁ ମନ୍ତ୍ର ପଧଟ ଦାରଣ ।୪୧।

ଇତି ଶ୍ରୀ ଗୁରୁଭକ୍ତ ଲୀଳା କଥନେ ନାମ ଅଟପ୍ରାକଂଶ ଗ୍ରନ୍ଥ ।।

# ଚତୁର୍ବିଂଶ ଛାନ୍ଦ

ଢାଳି ଯେ କଣ୍ଠୀଳ ମାଳା କନ୍ଧୁବା ଗୋସାଇଁ ।
କି ରୂପରେ ମନ୍ତ୍ର ଶିଷ୍ୟେ ଯନ୍ତ୍ର କର କନ୍ଧୁ । ୧ ।
ଏକଥା ମନରେ ବଡ଼ ରହିଲା ତ ଧନ୍ଦ ।
ଜନତ କରୁଛୁ ମୁହିଁ ମୂଢ଼ ଯେ ମୁକୁନ୍ଦ । ୨ ।
ମଣ୍ଡଳ ଯେ ଦୁଇଗୋଟି ଲେଖିବ ଭୂମିରେ ।
ଦ୍ୱାଦଶର ଆଦ୍ୟ ସ୍ୱର ରହିବ ତହିଁରେ । ୩ ।
ତହୁପରେ ସପ୍ତ ଅଙ୍କ ଲେଖିବ ଯେ ପୁଣି ।
ଆଠ ଅଙ୍କ ତଥିପାଶେ ଲେଖିବ ଯେ ପୁଣି । ୪ ।
କର ମାଝା ଦେଇ ମଧ୍ୟେ ପୋଡ଼ା ଅନୁସ୍ୱାର ।
ଅର୍ଦ୍ଧାଙ୍ଗ ଉପରେ ଦେଇ ବସିବ ଓଁକାର । ୫ ।
ପଢ଼ିଲେ ଅକ୍ଷର ହେବ ବନ୍ଧଲେଣି ମନ ।
ଅପଶ୍ୟ ହୋଇଲେ ମନ ଗ୍ରନ୍ଥ ହେବ ଶୂନ୍ୟ । ୬ ।
ପବନକୁଁ ବ୍ୟଶାକ୍ଷର ଧରିବ ଯେ ପୁଣି ।
ନମ ଦୁଇ ଅକ୍ଷର ଯେ ମିଶାଇବ ଗୁଣି । ୭ ।
ଆଦ୍ୟାକ୍ଷର ଲେଖିବ ଯେ ଡାହାଣ ଭାଗରେ ।
ଛଡ଼ାକ୍ଷର ଲେଖିବ ଯେ ବାମ ମଣ୍ଡଳରେ । ୮ ।
ଆଦ୍ୟରେ ମଣ୍ଡଳେ ଏକ ପିନ୍ଧିଲା ବସନ ।
ବାମର ମଣ୍ଡଳେ ସବୁ ପାଟ୍ଟେଢ଼ା ଯେ ହୀନ । ୯ ।
ବେନି ବସ୍ତ୍ର ବେଢ଼ାଇଣ ଦେବ ସେ ଯନ୍ତ୍ରରେ ।
ଶିଷ୍ୟ ଯେ ଦର୍ଶନ କଲେ ସର୍ବ ପାପ ହରେ । ୧୦ ।

ଆଦ୍ୟାକ୍ଷର ଓଁକାରରେ ଲେଖିବ ଯେ ପୁଣି ।
ପବନ ନମ ମଧ୍ୟରେ ବସ୍ତୁଣବ ପୁଣି । ୧୧ ।
ହୁଁ କାରକୁ ଯେ ରଖିବ ବନ୍ଧୁକୁ ସହିତ ।
ଏମନ୍ତେଣ ତନ୍ତ୍ରବଧି ହୃଦରେ ସ୍ମରଣ । ୧୨ ।

ଯେ ଗୁରୁ ଏ ଭେଦ ନ ଜାଣିଣ ଗ୍ରହାସରେ ।
ଶିଷ୍ୟକୁ ମିଶାନ୍ତି ଆଣି ଗ୍ରହାସ ଠାବରେ । ୧୩ ।
ବଶୁଲ ପାତକ ଦୋଷ ଲଗଇ ତାହାରେ ।
ଶିଷ୍ୟ ବୁଡ଼ି ମରଇ ହେ ଅଗାଧ ଜଳରେ । ୧୪ ।

ଆଦବସ୍ତୁ ଯେତେବେଳେ ବ୍ରହ୍ମାଣ୍ଡ ରଚିଲ ।
ପବନ ସ୍ୱରୂପ ପୁଣ ଅଙ୍ଗୁ ଜାତ କଲ । ୧୫ ।
ସେ ପବନ ଅଙ୍ଗେଣ ମୂରତ ଧରଣ ।
ବସ୍ତୁକୁ ଲଗିଲ ଭୟ ତାହାର ତେଜେଣ । ୧୬ ।

କୋପେ ବସ୍ତୁ ଚକ୍ରରେ ଛେଦିଲେ ପୁଣ ତାରେ ।
ଜାଣି ଅଙ୍ଗୁଷ୍ଠିର ପଦେ ଛୁଡ଼ିଲ ପ୍ରହାରେ । ୧୭ ।
ଖଣ ତାହାର ତେଜ ସ୍ତୁତି କରେ ପୁଣ ।
କି ମାଗିବ ବର ମାଗ ଦେବୁ ପୁଚ୍ଛ ପୁଣ । ୧୮ ।

ତୋହର ସ୍ୱମୁରେ ମୋର ରହିବ ଆରତ ।
ଦେବ ନର ମୋର କଥା ଶୁଣୁଥିବେ ନିତ । ୧୯ ।
ଏହିବର ମାଗୁଅଛୁ ସ୍ୱମୁରେ ତୁମ୍ଭର ।
ତୁମ୍ଭର ଆଜ୍ଞାରେ ଜାତ ହୋଇଛୁ ସଂସାର । ୨୦ ।

ସେହୁ କନଷ୍ଟାଙ୍କୁ ସ୍ୱର ଖଗ ହେ କରଣ ।
ଆଦ୍ୟର ଯେ ଦୁଇ ଖଗ ଭରତାଳ ପୁଣ । ୨୧ ।
ପ୍ରାନ୍ତର ଯେ ଦୁଇଖଗ ତାଳ ଯେ କରବା ।
ତାଣ୍ଡବ ସହାସ ନୃତ୍ୟ ଏଥିରେ ରଖିବା । ୨୨ ।

---

୧୧—୧ ପୋଡ଼ା ଅନୁସାର (କ); ୧୨—୧ ବନ୍ଧଲେ ଗମନ (କ),

କରତାଳ ଲୀଳା କୁଞ୍ଜବନରେ ରଚିବୁ ।
ଦେବସଭା ଠାରେ ତାଳକୃତ୍ୟ ଯେ କହିବୁ । ୧୩ ।
ରହିବ ଏ ତୋର କଥା ମୋହର ପ୍ରମାଣ ।
କଳିଯୁଗେ ତୋର ଲୀଳା ଘରେ ଘରେ ପୁଣ । ୧୪ ।

କଂସ ଯେ ଅସୁର ରୂପ ଧରିବୁ ତୁ ପୁଣି ।
କଂସ ବିଷ୍ଣୁ ବିବାଦ ଯେ ଲାଗିଥିବ ପୁଣି । ୧୫ ।
ନଉମିସ ଯବନ ତୁ ହୋଇବୁ କଳିରେ ।
ବୈଷ୍ଣବ ହୋଇବୁ ଆମ୍ଭ ଗଙ୍ଗାର ତଟରେ । ୧୬ ।

ଚଇତନ ଅବତାର କଂସାଳ କରିଣ ।
ସକଳ ଜନ ଜାଣିବେ ତୋହର ସେ ଗୁଣ । ୧୭ ।
ତୋର ମନ୍ତ୍ର ସ୍ତୁତି ନ ଜାଣିବେ ଯେଉଁ ପ୍ରାଣୀ ।
ଯେ ହସ୍ତେ ବାଇବ ପୁଣ ପାପ ହେବ ପୁଣି । ୧୮ ।

ସର୍ବ ତନ୍ତ୍ର ସ୍ତୁତି କରି ବାଇବେ ଯେ ଜନ ।
ସେ ଜନ ପାଇବେ ପୁଣ ବଇକୁଣ୍ଠ ଥାନ । ୧୯ ।
କରତାଳ ମନ୍ତ୍ର ଯନ୍ତ୍ର ସ୍ତୁତି ଯେ କହିଲୁ ।
ବ୍ରହ୍ମାସ ଭକତ ତୁମ୍ଭେ ତୁମ୍ଭକୁ ଯେ ଦେଲୁ । ୨୦ ।

ପବନ, ରାବଣ, କଂସ, ନଉମିସ ଚାରି
ଚାରି ଯୁଗେ ଲୀଳା କଲ ବିଷ୍ଣୁ ବର ଧରି । ୨୧ ।
କୃଷ୍ଣକୁ ବଇରି କରି ଲଭିଲ କାରଣ ।
କଂସର କାରାରେ କୃଷ୍ଣ ମଞ୍ଚେ ଜାତ ପୁଣ । ୨୨ ।

ବିଷ୍ଣୁର ବଚନ ପାଳି ତା ନାମ ଗୁଣିବ ।
ତାକୁ ମନ୍ତ୍ର ସ୍ତୁତି କଲେ ସେ ଶାନ୍ତ ମଣିବ । ୨୩ ।
ମନ୍ତ୍ର ସ୍ତୁତି ନ କରିଣ ଯେ ବାବନ୍ତ ପୁଣି ।
ନର ଜନମାନେ ତାକୁ ନ ପାରନ୍ତି ଜିଣି । ୨୪ ।

ମନ୍ତ୍ର ଯନ୍ତ୍ର ତନ୍ତ୍ର ସ୍ତୁତି ନ ଜାଣି ଣ ପୁଣ ।
ପୂଜା ଯେ ବସନ ନ ଦିଅନ୍ତି ଯେଉଁ ଜନ । ୨୫ ।

ଏ ବାଧ୍ୟ ନ କର ଯଥ କରତାଳ ଧରେ ।
ସେ ଜନ ଅଟଇ ପାପୀ କହୁଁଛି ତାହାରେ । ୩୬ ।
ଛୁଇଁଲେ ଯେ ବ୍ରହ୍ମ ନାମ ଶୁଣିବ ମନର ।
ସପ୍ତ ଯୁଗ ପାପ ବସେ ତାହାର ଅଙ୍ଗର । ୩୭ ।

କରତାଳ ଯେତେ ଦୋଷ ହୃଦବେଣ ଥାଏ ।
ଯେ ମନ୍ତ୍ର ନ ଜାଣି ବାଜ୍ୟ ତାର ଅଙ୍ଗେ ରହେ । ୩୮ ।
ବିଷ୍ଣୁଙ୍କୁ ଦେଖିଲା କପାଁ ରହିଲା ତା ପାପ ।
ଏ କଥା ଅଟେ କେମନ୍ତ କହିବା ସ୍ୱରୂପ । ୩୯ ।

ହେ ଗୁରୁଦେବ ତ ବଡ଼ ଅଟଇ ଏ ଗୂଢ଼ ।
ଶ୍ରୀ ଗୁରୁଦେବ କହିବା ଅଟଇ ମୁଁ ମୂଢ଼ । ୪୦ ।
ପବନ ସ୍ୱରୂପେ ଯେତେ ପାପ ଥିଲା ଭଷ ।
ଆମ୍ଭର ଦର୍ଶନେ ଗତ ରୂପ ସେହୁ ଧର । ୪୧ ।

ସେ ପାପ ରହିଣ ଅଛୁ କଳିଲୀଳା ପାଇଁ ।
ମନ୍ତ୍ର ଶୂନ୍ୟ କରତାଳ ବୀଣକାକୁ କହୁ । ୪୨ ।
ଏ କଥା ବଡ ସଂଶୟ ଲଗିଲା ତ ଚିତ୍ତେ ।
ବୀଣକାକୁ ଭେଟ ସେହୁ ହୋଇବେ କେମନ୍ତେ । ୪୩ ।

ଶୁଣହେ ଶ୍ରୀକୃଷ୍ଣ ଲୀଳା କହିବାକ ପୁଣ ।
ଚାରି ଯୁଗେ ବିଷ୍ଣୁ ଲୀଳା କରନ୍ତି ଭିଆଣ । ୪୪ ।
ଅହଲ୍ୟା କେମନ୍ତେ ଭେଟ ହୋଇଲା ରାମରେ ।
କୁବଳୟ କୃଷ୍ଣଙ୍କୁ ଯେ ଲଭିଲା ଦ୍ୱାପରେ । ୪୫ ।

ଦେହ ଗଲେ ଜନ୍ମଜାତ ହୋଇଣ ଯେ ଥିବ ।
ଯୁଗ ଶେଷ ହୋଇଲେ ସେ ବୀରଜା ଭେଟିବ । ୪୬ ।
କୃଷିକାର୍ଯ୍ୟ ଯେସନେ କେ କୃଷି ରଖି ଥାଇ ।
ପୁଣି କୃଷି ଉପୁଜାଇ କୃଷି ସେ ବାନ୍ଧଇ । ୪୭ ।

---

୩୯—୨ ନର ଜନ୍ମମାନେ ଖ):

ଯେଉଁ ବୀଜ ଯେଉଁ ତେଜ ଜାଣଇ ସେ ପୁଣ ।
ତେସନ ପରସ୍ତେ ଅଟେ ବିଷ୍ଣୁର ଭିଆଣ । ୪୮ ।
ପାପୀ ପାପ ହେତୁରୁ ଯେ ପାପ ଦେହ ପାଏ ।
ପୁଣ୍ୟ କଲେ ପୁଣ୍ୟ ଜନ୍ମ କୃଷ୍ଣ ପାଦେ ରହେ । ୪୯ ।
ଏଣୁକରି ବିଷ୍ଣୁର ଯେ ଅଟଇ ସଂସାର ।
ଏ ଛନ୍ଦ ନ ଜାଣେ ଯେତୁ ମୂଢ଼ମତି ନର । ୫୦ ।
ସତ୍ୟ ଯେ ତ୍ରେତୟା ଯୁଗ ଦ୍ୱାପର ଯେ କଳି ।
ଚ୍ଚିର ଯୁଗେ ପୁଣ୍ୟ ପାପୀ ଅଛନ୍ତି ଯେ ମେଳି । ୫୧ ।
ପୁଣ୍ୟ ଜନେ ପାପୀଜନ କରିବା କି ଲକ୍ଷ ।
ଗୋରୁ ସଙ୍ଗେ ଖର ଗୋଟା କରିବା କି କକ୍ଷ । ୫୨ ।
କଣ୍ଟକ ବୃକ୍ଷ ସଙ୍ଗତେ ତୁଳସୀ କି ସରି ।
ହେତୁ ଅହେତୁ ଏହି ରୂପେଣ ବିସ୍ତରି । ୫୩ ।
ଗତ ହେତୁ ସଙ୍କଳ ହେ ଗୋପକୁଳେ ଜାତ ।
ରାଧାସ ଭଗତ ତୋରେ କହିଲୁ ଅଚ୍ୟୁତ । ୫୪ ।

ଇତି ଶ୍ରୀଗୁରୁଭକ୍ତଗୀତା କଥନେ ନାମ ଚତୁର୍ବିଂଶ ଛନ୍ଦ ॥

———

## ପଞ୍ଚବିଂଶ ଛାନ୍ଦ

ସାଷ୍ଟାଙ୍ଗ ପ୍ରଣାମ ହୁନ୍ତୁ ଚରଣର ତଳ ।
ସଂଶୟ ଫେଡ଼ିବା ଗୁରୁ ଖୋଲ ଯେ ମର୍ଦ୍ଦଳ ।୧।
ଏହୁ ଲୀଳା ଭିଆଣ ଯେ କାହିଁ ପୁଣି ହୋଇ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର କହୁ ଶିଷ୍ୟ ବୋଧ ପାଇଁ ।୨।

ମଧ୍ୟରେ ଲେଖିବ ଦୀର୍ଘ ମଣ୍ଡଳ ଗୋଟିଏ ।
କନିଷ୍ଠ ମଣ୍ଡଳ ଏକ ବାମଭାଗେ ରହେ ।୩।
ତ୍ରିକୋଣ ଆଦ୍ୟେ ଲେଖିବ ଡାହାଣ ଭାଗରେ ।
ତ୍ରିକୋଣ କୋଣରେ କ୍ଷୁଦ୍ର ମଣ୍ଡଳା ଯେ ଧରେ ।୪।

ଡାହାଣ ମଣ୍ଡଳ ତ୍ରିକୋଣରେ ନମ ଦୁଇ ।
ବାମ ମଣ୍ଡଳ ଦୁଇରେ ହରଇଁ ଅଛଇ ।୫।
ଏମନ୍ତେଣ ଯନ୍ତ୍ରଥି ଲେଖିବ ଭୂମିର ।
ତେବେ ସେ ପାତକ ଶିଷ୍ୟ ହୋଇବ ଯେ ଦୂର ।୬।

ହଟେ ବସନ ଧୋବ ବସ୍ତ୍ର ଦୁଇ ଆଣି ।
ଡାହାଣ ବେନି ଅଷ୍ଟରେ କରି ଦକ୍ଷିଣି ୭ ।
ରଙ୍ଗ ଯେ ଶ୍ୟାମଳ ବେନି ବସନ ବାମରେ ।
ଗୃହ ବସ୍ତ୍ର ଦେଇ ଶିଷ୍ୟ ଦଣ୍ଡବତ କରେ ।୮।

ଖୋଳ ଗୋଟି ସେଠାବରେ ରଖିଛ ଯେ ଥିବ ।
ଅମୃତ ମନୋହର ଦେଇଣ ମନ୍ତ୍ର କହିବ ।୯।
ଶିଷ୍ୟର କନ୍ଧରେ ଗୁରୁ ଖୋଳ ପୁଣି ଦେଇ ।
ଶିଷ୍ୟ ପୁଣ ଭୂମିଗତେ ଦଣ୍ଡବତ ହୋଇ ।୧୦।

---

୫—୧ମ ଉ ଦୁଇ (କ);

ଁକାରେ ଲେଖିବ ହରଂ ବେନ ଯେ ଅକ୍ଷର ।
ଓଁକାର ମଧ୍ୟରେ ନାମ ବେନ କ ସୁନ୍ଦର ।୧୧।
ତତ୍ତ୍ୱବନ୍ଧ ନ ଜାଣିଣ ବଜାବନ୍ତି ଖୋଳ ।
ହସ୍ତ ଦେଲେ ଲଗଇ ଯେ ଗୋହତ୍ୟା ସକଳ ।୧୨।
ନୃସିଂହ ସ୍ୱରୂପ ହେଲେ ହରଣୀର ଛଳେ ।
ପୃଷ୍ଠକୁ ସୁଗଢ ଦେଇ ପେଟକୁ ମାଇଲେ ।୧୩।
ହରଣୀ ମାଗିଲା ବର କରୁଣା ଯେ କର ।
ଅନୁକ୍ଷଣେ ସେବଥିବ ଶ୍ରୁମ୍ଭର ସଙ୍ଗର ।୧୪।
ଏକ ଗୋଷ୍ଠି ମର୍ଦ୍ଦିଲ ଯେ କଲେକ ଭିଆଣ ।
ତାଳ ତଳେ ମାଦଳ ଯେ ଥୋଇଲେ ସେ ପୁଣ ।୧୫।
ମୃଦଙ୍ଗ ଭିଆଣ କରି କର୍ତ୍ତ୍ତଲେ ଥୋଇଲେ ।
ତାଣ୍ଡବ ରାହାସ ଲୀଳା ହୋଇବ ବୋଇଲେ ।୧୬।
ଦ୍ରୁଲୁ ଦ୍ରୁଲୁ ଦାଦା ଦାଦା ଢମି ଢମି ସ୍ୱର ।
ଧ୍ୱନରେ ସନ୍ତୋଷ ହେଲେ ଦେବତା ଅସୁର ।୧୭।
ଧୌ ଧୌ ଧେଯ୍ୟା ନାଦ ଶବଦ ମଙ୍ଗଳ ।
ଏଥିରେ ସନ୍ତୋଷ ହେବେ ମାନବ ସକଳ ।୧୮।
ନନ୍ଦଘରେ ଜାତ ହେଲୁ ମାନବ ଦେହରେ ।
ଗୋପୀଏ ବାଇବେ ଖୋଳ କର୍ତ୍ତାଲ ଯେ କରେ ।୧୯।
ବୃନ୍ଦାବନେ ରଚବୁ ଯେ ଏ ରଙ୍ଗ ରାହାସ ।
ସରସ୍ୱତୀ ଭଣ୍ଡାରରେ ଥୋଇଲେ ହରଷ ।୨୦।
ପୁଣ ନବଦ୍ୱୀପେ ଜାତ ହୋଇବୁ ମଣ୍ଡର ।
ସଂକୀର୍ତ୍ତନ ଆରମ୍ଭିବୁ ଦ୍ୱାଦଶ ସଙ୍ଗର ।୨୧।
ଏମନ୍ତେଣ ନରହରି ତାହାକୁ ଯେ ବର ।
ଦେଲେ ତାକୁ ଶ୍ରୀମୁଖରେ ଶ୍ରୀରଙ୍ଗା ଅଧର ।୨୨।

---

୧୧—୨ ମଧ୍ୟେ ବେନ (କ);

ସୁନ୍ଦରାନନ୍ଦ ହୋଇଲ ଚଇତନ୍ୟଠାରେ ।
ସେ ଜନ୍ମ ଅନ୍ତର କଲୁ ଗୋଲୋକପ୍ରେରୁରେ ।୧୩।
ନୀଳାଚଳ ଭଜନରେ ଠାକୁର ଅନ୍ତର ।
ଆଜ୍ଞା ଦେଲେ ସୁନ୍ଦରାନନ୍ଦ ହେ ହେରୁ କର ।୧୪।

ଏହୁ ଓଡ଼ରାଷ୍ଟ୍ର କ୍ଷେ ଅଛନ୍ତି ଯେ ମେଳ ।
ତୁମ୍ଭେ ଜାତ ହୁଅ ଏବେ ନେମ୍ବାଳ ଯେ ସ୍ଥଳ ।୧୫।
ଏଣ୍ଡ ଗୋପୀ ଗୋପାଳ ଯେ ଅଛନ୍ତି ବହୁତ ।
ସେ ସ୍ଥଳରେ ତୁମ୍ଭେ ଶାଖା ଘେନ ହୁଅ ଜାତ ।୧୬।

ଦ୍ୱାଦଶରେ ତୁମ୍ଭେ ସାର ଅଟ ତ ପ୍ରମାଣ ।
ତୁମ୍ଭର ଦ୍ୱାଦଶ ଜାତ କରିବ ଯେ ପୂର୍ଣ ।୧୭।
ଦ୍ୱାଦଶରୁ ଦ୍ୱାଦଶ ଯେ ହୋଇବ ଭିଆଣ ।
ସନ୍ନ୍ୟାସ ରହିବ ସେହୁ ଓଡ୍ର ଯେ ସଂକ୍ଷେପେଣ ।୧୮।

ଶ୍ରୀକୃଷ୍ଣକରୁଣା କଲେ କହିଲୁ ତୁମ୍ଭରେ ।
ଚିତ୍ତହେରୁ ବସଥିଲ ତୁମ୍ଭେ କି ମନରେ ।୧୯।
ହିରଣ୍ୟମଣ୍ଡଳ ଖୋଳ ଅଟଇ ଏ ଲୀଳା ।
ମନ୍ତ୍ର ଜାଣି ବାଇଲେ ସେ ପାତକ ଧୂଳିଲ ।୨୦।

ମନ୍ତ୍ର ଯନ୍ତ୍ର ନ ଜାଣିଲେ ପାତକ ଲଭିଲ ।
ରଜକୀ ମଳିନ ବସ୍ତ୍ର କାଠରେ କୋଡ଼ିଲ ।୨୧।
ଖୋଳ ଯେ କଂସାଳ ଯେହୁ ଅଙ୍ଗରେ ବନ୍ଧିବ ।
ବୈରାଗ ନାସ୍ତି ମିଥ୍ୟା ଠାରେ ନିବର୍ତ୍ତି କରିବ ।୨୨।

ଏ ଭେକ ଧରଣ ବୈରାଗ ନାସ୍ତି ମିଥ୍ୟା କଲେ ।
ଅନ୍ତର୍ଗତେ ବ୍ୟାଧି ତାକୁ ହୁଅଇ ଯେ ଭଲେ ।୨୩।
ସେବନ କରିବ ଅଳପ ବଚନ ଯେ ସ୍ଥିର ।
ତଥା ଅନ୍ନ ଗୁଆଘୃତ ନିରାମିଷ ଧର ।୨୪।

ପ୍ରସ୍ତରୁ ସାଧିବ ଧ୍ୟାନ ଷୋଳ କ୍ୟୋଢ଼ କଳା ।
କଣ୍ଠରେ ସାକ୍ଷ ଥୋଇଲେ ଲକ୍ଷ୍ୟ ଯେ ଧରିଲା ।୩୫।
ନୋହିଲେ ପାଳିଟ ଭ୍ରାନ୍ତି କରିବ ଯତନ ।
ଆମୁଖଜନର ଘରେ ନ କରି ଭୋଜନ ।୩୬।

ଏ ହେତୁ ନ ଧରି ପେଟ ନମନ୍ତେ ଭକ୍ଷିଲେ ।
ଯେତେ ଅରଜିଲେ ଲକ୍ଷ୍ମୀ ଛାଡ଼ିଇ ତାହାରେ ।୩୭।
ମତ୍ସ୍ୟ ମାଂସ ମଳିନ ଯେ ବସନକୁ ଦୂର ।
ଲୁଞ୍ଜି ଗୁଞ୍ଜି କଷା ବସ୍ତ୍ର ଛନ୍ଦି ଅଙ୍ଗେ ଧର ।୩୮।

ବ୍ୟାଘ୍ରନଖ ପଇତା ଯେ କଠାଉ ପାଦରେ ।
କାଛଟି ମେଖଳା ଟୋପି ବନ୍ଧିବ ଅଙ୍ଗରେ ।୩୯।
ଆଉ ଚୂଳ କୁଣ୍ଡଳ ଯେ କଙ୍କଣ କାଛଟି ।
ଗୋପାଳ ସୁହାସ ବେଶ ଏମନ୍ତରେ ଘଟି ।୪୦।

ଏ ଭେକ ଛାଡ଼ି ସଂସାରେ ଭେକ ଯେ ଧରିଲେ ।
ହୁ କୁ ଳ ଧରଣି ଭକାର ଥୋଇଲେ ।୪୧।
କ ରେ ବା ଅକ୍ଷର ଙକାର ମିଶାଇ ।
ଏମନ୍ତ ଲୋକର ସଙ୍ଗେ ଲକ୍ଷ ପୁଣି ସେହୁ ।୪୨।

ଏଣୁ କରି ଗୋପାଳର ଭେକ ତୁମ୍ଭେ ଧର ।
ଅଚ୍ୟୁତ ପଥରେ ବାର ଗୋପାଳ ଯେ ସାର ।୪୩।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ପଞ୍ଚବିଂଶ ଗ୍ରନ୍ଥ ॥

—○—

---

୩୫—୨ ଥୋଇଲେ ଲକେଷ (କ);

# ଷଡ଼୍‌ବିଂଶ ଛାନ୍ଦ

ରାମ ପଞ୍ଚ ଭ୍ରାତ ସଙ୍ଗେ ସପ୍ତ ଭ୍ରାତ ମିଳି ।
ଚନ୍ଦ୍ର ଦାସ ନିରଞ୍ଜନ ଦୁଇ ଗୋପ କେଳି । ୧ ।
ଚକ୍ରୀ ରାମ ଲେହ୍ନ ରାମ ଗୋପ ରାମ ସଙ୍ଗ ।
ଗୋପଲୀଳା ବିନୋଦ ଯେ କଲି ଖେଡ଼ ରଙ୍ଗ । ୨ ।
ଦକ୍ଷିଣଚନ୍ଦ୍ର ହେ ଦାସ ପଗ୍ଭଲେ ସାଧ୍ୱା ।
ହରେକୃଷ୍ଣ ମନ୍ତ୍ରରୁ ଯେ କୃଷ୍ଣାଦ ହୋଇଲ । ୩ ।
କୃଷ୍ଣ ହରେ ଯେ ସେ ବୋଲି ଛଡ଼ ଯେ ଅକ୍ଷର ।
ଷଟ କୋଣ ବସାଇଣ ମନ୍ତ୍ରକୁ ସୁମର । ୪ ।
କୃଷ୍ଣ ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ ହରେ ।
ଯେ ସେ କୃଷ୍ଣ ସେ ସେ ହରେ କୃଷ୍ଣ କୃଷ୍ଣ ହରେ । ୫ ।
ଏମନ୍ତେଣ କୃଷ୍ଣାଦ ଯେ ଭଗତ ଭଜନ ।
କୃଷ୍ଣ କୃଷ୍ଣ ବୋଲି କର ମୁଖରେ କୀର୍ତ୍ତନ । ୬ ।
ଷଟ କୋଣ ଆପି ବସ୍ତୁ କର ନିଉଜ୍ଜ୍ୱଳ ।
ଶିଷ୍ୟ ଆସି ଭୂମିଗତେ ଦେବାକ ମଣ୍ଡଳ । ୭ ।
ଯନ୍ତ୍ର ମନ୍ତ୍ର ଦରଶନେ ପାତକ ନାଶଇ ।
ପୂର୍ବଭାଗ୍ୟ ଥିଲେ ସିନା ଏ ଗୁରୁ ମିଳଇ । ୮ ।
ହ ଅ ଯେ ବେନି ଅକ୍ଷର କରିବ ଏକତ୍ର ।
ରେ ସେ ଦୁଇ ଅକ୍ଷର ଯେ କରିବ ଗୁପତ । ୯ ।
କୃଷ୍ଣ ବେନି ବନ୍ଦ୍ରେଟି ତନ୍ତ୍ରରେ ରଖିବ ।
ହ କାର ଢକାରେ ଯୋଗ ମନ୍ତ୍ରକୁ ବାନ୍ଧିବ । ୧୦ ।
ରେ କାର ମଧ୍ୟରେ ଦେଲେ ହୋଇବାକ ଶୂଳ ।
ଯନ୍ତ୍ର ମନ୍ତ୍ର ହେତୁ ଭକ୍ତ ବାସନାର ଫୁଲ । ୧୧ ।

---

୩—୨ ମନ୍ତ୍ରରୂପେ (ଖ); ୯—୨ ରେ ଶବଦ ଦୁଇଅକ୍ଷର କରିବ ଗୁପତ(ଖ);

ଗୁରୁପାଦେ ସେବା କରି ମନ୍ତ୍ରକୁ ସୁମର ।
ତେବେଟି ଜୀବର ଗତି ହେବ ତ ଉଦ୍ଧାର । ୧୨ ।
କିରୂପେ ଗୁରୁଙ୍କ ସେବା କଲେ ଗତି ହୋଏ ।
ଅଗାଧ ସମୁଦ୍ର ଜଳେ ପଶି ପୁଣ ନୋହେ । ୧୩ ।
ଗୁରୁ ପୁଣ ସୁଦୟା କଲେଣ ସିନା ଚିତ୍ତ ।
କପଟ କଲେଣ ଗୁରୁ ମନ୍ତ୍ର ଅପ୍ରାପତ । ୧୪ ।
ଅଗାଧ ସମୁଦ୍ର ଜଳେ ବୋଇତରେ ଯାଇ ।
ସେବା ଯେ ଭଗତି ଚିତ୍ତ ବୋଇତ ଅଟଇ । ୧୫ ।
ସେବା ହେତୁ କର ଗୁରୁ କରିବେ କରୁଣା ।
ଚନ୍ଦ୍ରଦାସ ମନ ତୋର କର ହେ ଫୁରୁଣା । ୧୬ ।
ଶିଷ୍ୟ ଘରେ ଗୁରୁ ଯେବେ ହୋଇବେ ପ୍ରବେଶ ।
ଆସନ ଦେବ ଯେ ପୁଣ କମଳ ଯେ କୁଶ । ୧୭ ।
ବ୍ୟାଘ୍ରାମ୍ବର କୃଷ୍ଣାଜିନ ଗ୍ରୁଳ ଆଣି ଦେବ ।
ଏ ଆସନ ନ ମିଳିଲେ ତୃଣ ଶଯ୍ୟା ଦେବ । ୧୮ ।
ଏକ ପୀଢ଼ା ଉପରେଣ ପାଦବେନି ଥୋଇ ।
ପତି ପତ୍ନୀ ମିଳି ପାଦ ଧୋଇବେ ଯେ ଯାଇ । ୧୯ ।
ଚରଣ ଧୋଇବ ପତି, ପତ୍ନୀ ଦେବ ଜଳ ।
ଯତନ କରି ପୋଛିବ ଚରଣ ଯୁଗଳ । ୨୦ ।
ନବତନ ଏକବସ୍ତ୍ର ପୋଛିବ ଯେ ପାଦ ।
ପାଦ ଜଳଗ୍ରୁଳ ସେବା ହେତୁ ମନେ ବନ୍ଦ । ୨୧ ।
ଯେଉଁଠାରେ ପାଦ ବେନି ଧୋଇଣ ଯେ ଥିବ ।
ମସ୍ତକରେ ଜଳ କିଛି ନେଇଣ ଥୋଇବ । ୨୨ ।
କିଛି ଜଳ ଗର୍ଭକୁ ଯେ କ୍ଷେପିବ ତ୍ୱରିତ ।
ଭୃତ୍ୟଭାବେ କରଯୋଡ଼ି ଥିବ ସେ ସଙ୍ଗତ । ୨୩ ।

---

୧୩—୧ ଦୟା ହୋଏ (ଗ); ୧୫—୨ ସେବା ଯେ ମଚ୍ଛିନ୍ଦ୍ର (କ);

କ୍ଷୁଧାନ୍ତ ପୁଚ୍ଛି ଦେବ ଜଳପାନ ଆଣି ।
ବରଷରେ ଗୁରୁଦନେ ଗୃହେ ପୂଜା ଆଣି । ୨୪ ।
ଘୃତ ଦୁଗ୍ଧ ପିଠାପଣା ଅନ୍ନ ଯେ ବ୍ୟଞ୍ଜନ ।
ଫୁଲ ପାନ ଚନ୍ଦନ ଯେ ସେବାର ବିଧାନ । ୨୫ ।
ବାରମାସି ଖର୍ଚ୍ଚ ଦେବ ଗୁରୁଙ୍କ ହୁମୁର ।
ବାରଷିକ ବୋଲି ଗୁରୁ ଦକ୍ଷିଣା ବେଭାର । ୨୬ ।
ବାରମାସି ଗୁରୁବୃଧି କେତେକ ଅଟଇ ।
ଏଥୁ ବଡ଼ ସମ୍ବନ୍ଧ ତ ମନକୁ ଲାଗଇ । ୨୭ ।
ବାରଷିକ ଗୁରୁବୃଧି କେମନ୍ତ ପ୍ରକାର ।
ଶିଷ୍ୟ ଗୁରୁ ବ୍ରହ୍ମସ୍ୱରୁ ହୋଇବ ତ ପାର । ୨୮ ।
ଷାଠିଏ ଗୌଣୀ ଧାନ ଦେବ ଭୋଜନରେ ।
ପାଞ୍ଚ ବସ୍ତ୍ର ଦେବ ପୁଣ ଏ ଜନ କାଳରେ । ୨୯ ।
ଦ୍ୱାଦଶ ପଦକା ଦେବ ହାଣ୍ଡି ର ନିମନ୍ତ୍ର ।
ଅଗ୍ନି ବୋଧ ନିମନ୍ତ୍ରେଣ ଜନ ନ'ହାଣ ତ । ୩୦ ।
ଘୃତ ଦୁଧ ନିମନ୍ତ୍ରେଣ ତୃତ୍ରୁ ଯେ ନାହାଣ ।
ଲବଣକୁ ଦେବ ପୁଣ କରଣ ନିମିଣ । ୩୧ ।
ଆସନକୁ ଦେବ ପୁଣ ବସୁପଣ ଲେଖି ।
ଗୃହ ଛୁଇବାକୁ ଯେ ଦ୍ୱିକୋଡ଼ି ପଣ ଲେଖି । ୩୨ ।
ଫୁଲପାନ ନିମନ୍ତ୍ରେଣ ଦ୍ୱିକୋଡ଼ି ଯେ ପୁଣ ।
ବାରମାସି ଖରଚ ଯେ ଗୁରୁଙ୍କ ଭିଆଣ । ୩୩ ।
ଏଣୁକରି ବାରଷିକ ଗୁରୁଙ୍କର ନିୟାଏ ।
ଶିଷ୍ୟ ଯେ ନ ଦେଲେ ଗୁରୁ ବ୍ରହ୍ମସ୍ୱ ବୁଡ଼ାଏ । ୩୪ ।
ବ୍ରହ୍ମ ଅଂଶ ଗୁରୁ ଅଂଶ ରାଜ ଅଂଶ ଜନ ।
ଏ ଜନଠାରେ ବର୍ଣ୍ଣ ସ ଟଙ୍କେ ଥିବ ଯେନ । ୩୫ ।

---

୨୬—୧ ବାରମାସ ଗଣ୍ଡି (ଖ); ୨୭—୨ ବଡ଼ ସନ୍ଧି ଏତ (ଖ);
୨୮—୨ ଗୁରୁ ବ୍ରହ୍ମସ୍ୱରୁ ଶିଷ୍ୟ ହୋଇବାକ ପାର (ଖ);

ଜୀବନ ରଖଇ ସାନ୍ତୁ ଦେଇଣ ସେ ଅନ୍ନ ।
ଜୀବକୁ ଉଦ୍ଧରେ ଗୁରୁ ମନ୍ତ୍ର ଦେଇ କର୍ଣ୍ଣେ । ୩୬ ।
ରାଜସ୍ଥାନବଳେ ଯିନା ମନ ହୋଏ ସ୍ଥିର ।
ସଂସାରେ ଅଟନ୍ତି ସାର ଏ ଧନ ସେ ନର ।୩୭।
ଏଣୁକରି ଗୁରୁଙ୍କର ଦକ୍ଷିଣାଟି ଦେବ ।
ଗୁରୁପାଦେ ଏଣୁକରି ତନ ମନ ଥିବ ।୩୮।
ବାର ସେ ଦ୍ୱିଗୁଣ ହୋଏ ଚବିଶ କାହାଣ ।
ତଦଙ୍କ ଲେଖିଲେ ହୋଏ ଦ୍ୱାଦଶ କାହାଣ ।୩୯।
ତଦଙ୍କ ଲେଖିଲେଣ ସେ ଛଡ଼ ପୁଣ ହୋଏ ।
ତଦଙ୍କ ଲେଖିଲେ ତିନି କାହାଣରେ ରହେ ।୪୦।
ପୁଣ ସ୍ୱଳ୍ପୋଗ ଏହା କରିବା ଭିଆଣ ।
ଦେଢ଼ ସେ କାହାଣ ତହୁଁ ଅଙ୍କ ହୋଏ ଜାଣ ।୪୧।
ତଦ ଅଙ୍କ ଦ୍ୱାଦଶ ପଣ ସେ ପରମାଣ ।
ତଦ ଅଙ୍କ ଛଡ଼ ପଣ କଲେକ ଭିଆଣ ।୪୨।
ଏରୂପେଣ ବାରମାସି ଖରଚକୁ ଦେଇ ।
ମେଲାଣି କରିବ ତାଙ୍କୁ ବିନୟ ସେ ହୋଇ ।୪୩।
ଏରୂପେଣ ଗୁରୁସେବା କଲେ ମନ୍ତ୍ର ପାଏ ।
ନଷ୍ଟଲେ ନଷ୍ଟନା ହୋଏ ଗୁରୁସ୍ୱ ବୁଡ଼ାଏ ।୪୪।
ନାରାୟଣ କହିଲେ ସେ ମୁନିଙ୍କି ସତ୍ୟରେ ।
ରାଘବ କହିଲେ ପୁଣ ତ୍ରେତୟା ଯୁଗରେ ।୪୫।
ନାରଦ କହିଲେ ପୁଣ ଦ୍ୱାପର ଯୁଗର ।
ହରିଗୁରୁ କହିଲେ ସେ ଏ କଳି ଯୁଗର ।୪୬।
ରାମାନନ୍ଦ, ନିମାନନ୍ଦ ଅଟନ୍ତି ଏ ଦୁଇ ।
ମାଧ୍ୱାଚାର୍ଯ୍ୟ, ବିଷ୍ଣୁସ୍ୱାମୀ ହରିଗୁରୁ କହି ।୪୭।

---

୪୨—୨ ପୁଣ ସକଳ ଜନରେ (କ);

ଏ ଗୃହ ଗୁରୁ ଯେ କଲେ ବାର୍ଷିକ ପୁଣ ।
କଳିଯୁଗେ ହରିନାମ ଶୁଣିଲେ ଶ୍ରବଣ ।୪୮।
ଧନ ଯେ ବସନ ଘୃତ ଦୁଗ୍ଧ ଯେ ବ୍ୟଞ୍ଜନ ।
ଆସନ ତୃଣ ଲବଣ ଫୁଲ ଯେ ଚନ୍ଦନ ।୪୯।
କାଠ ହାଣ୍ଡି ଲେଖିକର ଦ୍ୱାଦଶ ଯେ ବେଳ ।
ପାଞ୍ଚ ଓଣା ଶଏରୁ ଯେ ପାଏ ଲେଖା ଯେଣ ।୫୦।
ପାରିଲେ ଶଏ କାହାଣ ଦେବ ପୁଣ ଶିଷ୍ୟ ।
ତଦପାସ୍ତେ ତଙ୍କଣ ଯେ ଲେଖାରେ ପ୍ରବେଶ ।୫୧।
ମୁକ୍ତବନ୍ଧ ବସ୍ତ୍ରଗଣ ଚଇତନ୍ୟ ହରି ।
ଉଆସନ୍ନ ଗୁଆଘୃତ ଭୋଜନ ଯେ କରି ।୫୨।
କାମିନୀ କୋଲ ତେଜିଣ ମଦ୍ୟମାଂସ ଦୂର ।
ହରେକୃଷ୍ଣ ମନ୍ତ୍ରଜପ ପାପ ହେବ ଦୂର ।୫୩।
ଶଏ ବାରଷିକ ଦେବ ଗୁରୁଙ୍କ ଦକ୍ଷିଣା ।
ନ ରୁଚିଲା ମନକୁ ଏ ମନ ଅପରୁଣା ।୫୪।
ନିତ୍ୟାନନ୍ଦ କହେ ଭାଇ କଳିର ଏ ନର ।
ମାଛ ମାଂସ କାମିନୀ ଏ ନ କରିବେ ଦୂର ।୫୫।
ଗୁରୁଙ୍କୁ ଦକ୍ଷିଣ ଏହୁ ନ ପାରିବେ ଦେଇ ।
ଉଶ୍ୱାସ କହିବା ନାମ ଭଜିବେ ସେ ତେଇଁ ।୫୬।
ବାରମାସେ ବାରବୋଡ଼ି ଦେବେ ବାର୍ଷିକ ।
ବାରଦିନ ମାସରେ ଯେ ରତ ଆବଶ୍ୟକ ।୫୭।
ବାର ଯେ ପୂର୍ଣ୍ଣିମୀ ବାର ସଙ୍କରାନ୍ତି ଲେଖି ।
ବାର ଏକାଦଶୀ ବାର ଅମାବାସ୍ୟା ଯେ ରଖି ।୫୮।
ଏତେଦିନ ମଦ୍ୟ ମାଂସ ନ ଖାଇବେ ପୁଣି ।
ଅଳ୍ପେ ଅଳ୍ପେ ଛାଡ଼ିବେ ହେ ଭାଇ କୃଷ୍ଣ ଶୁଣି ।୫୯।

---

୫୬—୨ ଅବଧେକ (କ), ଅମିଷେକ (ଖ),

ବ୍ରଜମାଢ ବୁଝିଲେ ସେ କପାଳଁ ଖାଇବେ ।
ଶ୍ରୀମୂର୍ତ୍ତି ପୂଜା କଲେଣ ବେହ୍ନାରେ ଘୁଞ୍ଚିବେ ।୨୦।
ଗୃହସ୍ଥ ବୈଷ୍ଣବ ଯେ ନଦୀଆର କଥା ।
ଶ୍ରୀଚରଣ ଦାସ ଗୁରୁ ହସ୍ତେ ମୋର ମଥା ।୨୧।
ଯାହା ମୋତେ ବୁଝାଇଲେ କହିଲୁ ତୁମ୍ଭରେ ।
ରାମଚନ୍ଦ୍ର ଦ୍ୱାଦଶ ଯେ ଚନ୍ଦ୍ରଦାସ ତୋରେ ।୨୨।
ବାରଟିଆ ଗୋପାଳ ହେ ମୁକୁନ୍ଦ ପବନ ।
ମଦ୍ୟମାଂସ ଛଡ଼ାଇଲୁ ଗୋପାଳ ଯେ ଜନ ।୨୩।
ମଦ୍ୟ ମାଂସଖିଆ ଜନ ରାହାସେ ନ ବର ।
ପୁରାଣେ ନିଷେଧ କୃଷ୍ଣ ଭୋଗର ବିଚାର ।୨୪।
ବଦରିକାନାଥ, ରାମନାଥ, ଜଗନ୍ନାଥ ।
ଗୋପୀନାଥ, ଲୋକନାଥ, ବିଶ୍ୱନାଥ ତ ।୨୫।
ବରେନ୍ଦ୍ରନାଥ, ରଙ୍ଗ ଯେ ନାଥ ପୁଣ କାହ୍ନୁ ।
ମଥୁରାନାଥ, ଦ୍ୱାରିକାନାଥ ଯେ ଅଛଇ ।୨୬
ଅନନ୍ତନାଥ ଯେ ପୁଣ ଚୈତନ୍ୟ ପ୍ରଭୁ ତ ।
ଏତେଠାରେ ଅଶୁଚି ଯେ ଦ୍ରବ୍ୟ ବିବର୍ଜିତ ।୨୭।
ଅନନ୍ତ କୋଟି ବୈଷ୍ଣବ ସଙ୍ଗରେ ନିଷେଧ ।
କୃଷ୍ଣକ୍ଷେତ୍ର ନିଷେଧ ହେ ମନକର ବୋଧ ।୨୮।
ଦୀନ ଅଚ୍ୟୁତର କଥା ହୃଦରେ ଘେନିଣ ।
ଗୋପାଳ ଲୋକେ ଭଣିବ ଏ ଉଡ଼ରାଣ୍ଟେଣ ।୨୯।
ଏହୁ ଗୁରୁଭକ୍ତଗୀତା ଯେ ପଢ଼ିବ ନିତ ।
ମନ୍ତ୍ର ଯେ ସିଦ୍ଧ ହେବ ବଢ଼ିବ ଭଗତ ।୨୦।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଷଡ଼ବିଂଶ ଗ୍ରନ୍ଥ ॥

—୧୦—

# ସପ୍ତବଂଶ ଛାନ୍ଦ

ଶୁଣ ଆହେ ଲୋହରାମ ହରେ ରାମ ଦୁଇ ।
ହରେ ରାମ ହରେ ରାମ ମନ୍ତ୍ର ଯେ ଅଟଇ ।୧।
ରାମ ରାମ ହରେ ହରେ ସୁମରଣ କର ।
ଯେ ଯେ ରାମ ସେ ସେ ହରେ ମନ୍ତ୍ରଙ୍କ ବିସ୍ତର ।୨।
ରାମ ରାମ ହରେ ହରେ ହରାଦଷ୍ଟି କହୁ ।
କୃଷ୍ଣାଦ୍ୟ ବୀଜ ଛାଡ଼ିଲେ ପ୍ରସାଦ ଯେ ହୋଇ ।୩।
ଷଟ୍‌କୋଣ ଧରଣ ଏ ବତିଶ ଅକ୍ଷର ।
ଛଡ଼ ବୀଜ ବସାଇବ ମନ୍ତ୍ରର ମଧ୍ୟର ।୪।
ଯନ୍ତ୍ରରେ ରଖିବ ମନ୍ତ୍ର ନାମ ଦେବାବେଳେ ।
କଳା ନୀଳ ବସ୍ତ୍ର ଏକ ବେଢ଼ାଇ ମଣ୍ଡଳେ ।୫।
ଷୋଡ଼ଶ ପୂଜାବିଧି ଦେଇ ଶିଷ୍ୟଙ୍କୁ ଯେ କହେ ।
ତେବେ ସେ ଶିଷ୍ୟ ହୃଦରୁ ଛାଡ଼ିବ ସଂଶୟେ ।୬।
ହ ଅଙ୍କୁ ଓଁକାରେ ଯୋଇବ ରେ କ ମଧ୍ୟରେ !
ମ ଅଙ୍କୁ ବିନ୍ଦୁରେ ଦେଲେ ସ କୁ ଅର୍ଦ୍ଧରେ ।୭।
ଆଉ ଯେଉଁ ଦୁଇଅକ୍ଷର ଅଟେ ତାର ସାକ୍ଷୀ ।
ଯନ୍ତ୍ର ମନ୍ତ୍ର ବିଧିରେ ଯେ ଶିଷ୍ୟ ହୋଏ ସୁଖୀ ।୮।
ଲୋହରାମ ଦାସର ଯେ ଏକ ସୁତ ଶୁଣ ।
ଲେଖନ ପୂଜାବସନ ନ ଥିବ ଯେ ଜଣ ।୯।
ସେ ଜନ କେମନ୍ତ ପାଏ ହରିନାମ କଣ୍ଠେ ।
ଏ କଥା କେମନ୍ତ ବିଧି ପାଇବା ଯେ ଆନ ।' ୭

---

୮—୧ ଯେ ଯେ ଦୁଇ ଅକ୍ଷର ସେ (କ);

ମକର ଖେଳ କରିବ ତଣ୍ଡୁଳ ଯେ ଦନ୍ତ ।
ଦ୍ୱାଦଶ ଅଙ୍ଗୁଳ ସୂତା ହସ୍ତରେ ବେଢ଼ାଇ ।୧୧।
ତୁଳସୀ ଡେମ୍ଫ ଲେଖନ କରିବ ଯେ ପୁଣ ।
ନିଛ ନ ଶିଷ୍ୟକୁ ଗତି ଗୁରୁ କରେ ପୁଣ ।୧୨।
ଯେଉଁ ବୀଜ କୃଷି କରି ସେ ବୀଜ ଅମଳ ।
ଇକ୍ଷୁ ସଙ୍ଗେ ହୋଇବ କି ଶୁଁଆ ବୀଜଫଳ ।୧୩।
ବସନ ଫଳ ସଙ୍ଗତେ କୋଳଥ କି ସରି ।
ସୁବର୍ଣ୍ଣ ପିତ୍ତଳ ଦୁଇ ସରି ନକ କରି ।୧୪।
ସାଧୁ ସଙ୍ଗ କରି ପୁଣ ଅସାଧୁ କି ହୋଏ ।
ନିଧନ ଧନ ଯେମନ୍ତ ସଂସାରରେ ରହେ ।୧୫।
ଧନବନ୍ତ ସଙ୍ଗେ ପୁଣ ନିଧନ ଯେ ରହେ ।
ଗୁରୁ ଯେ ସାଧୁତ ମତ ଦସ୍ୟୁ ତାକୁ ହୋଏ ।୧୬।
ନିଛନକୁ ଗୁରୁ ହଦ ମନ୍ତ୍ର ଯେ ନ ଦେବ ।
ସେ ଶିଷ୍ୟ କେମନ୍ତେ ପୁଣ ଗତି ଯେ ପାଇବ ।୧୭।
ପାଇଲେହେ ଲୋହଶ୍ରମ ସନ୍ଦେଶ ବଗୁର ।
ଅଚ୍ୟୁତ ଉଦ୍ଧାର କର ଏ ଭବ ସାଗର ।୧୮।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ସପ୍ତବିଂଶ ଗ୍ରନ୍ଥ ।

—:O:—

# ଅଷ୍ଟାବିଂଶ ଛାନ୍ଦ

ଶୁଣ ଆହେ ଚକ୍ରୀରାମ ଶ୍ରୀକୃଷ୍ଣର କଥା
ରାମ ନାମ ସୁମରନ୍ତେ ଛାଡ଼ ମନବ୍ୟଥା ।୧।
ରାମ ହରେ ରାମ ହରେ ସୁମରିବ ମନ ।
ରାମ ରାମ ହରେ ହରେ ଚତୁର୍ଗୁଣ ଘେନ ।୨।
ଯେ ସେ ରାମ ସେ ସେ ହରେ ସୁମରଣା କର ।
ରାମ ରାମ ହରେ ହରେ ବତିଶ ଅକ୍ଷର ।୩।
କୃଷ୍ଣ ବୀଜ ଛାଡ଼ିଲେଟି ରାମାଦ୍ଧ ଅଟଇ ।
ହରାଦ୍ଧ ରାମାଦ୍ଧ କୃଷ୍ଣ ନିବଧିଟି କହୁ ।୪।
ଷଟ୍‌କୋଣ ବସାଇବ ହରେ ରାମ ଯେ ସେ ।
ସନ୍ଧିବନ୍ଧ ବୁଝାଇବ ଉତ୍ତମ ଯେ ଶିଷ୍ୟେ ।୫।
ହକାର ଓକାରେ ଥୋଇ ରକାର ଅର୍ଦ୍ଧରେ ।
ମକାର ବିନ୍ଦୁରେ ଥୋଇ ବ ରେ ସେ ଈକାରେ ।୬।
ହେ-ସ୍ୱ-କ୍ଷୁ ଅର୍ଦ୍ଧାଙ୍ଗେ ଦେଲେ ମନ୍ତ୍ର ତତ୍ତ୍ୱ ତୁଲ ।
ସନ୍ଧିବନ୍ଧ ବୁଝାଇଲେ ଶିଷ୍ୟ ହେତୁ ଭଲ ।୭।
ବେଣ୍ଣ ବପ୍ର ଯନ୍ତ୍ର ତନ୍ତ୍ରେ ଦେଖାଇ ଯେ ପୁଣ ।
କୃଷ୍ଣମନ୍ତ୍ର ଶିକ୍ଷାଠାରେ ଯୋଗ ଦେବ ଜାଣ ।୮।
ଏକ ମୂର୍ତ୍ତି କହୁଅଛୁ ଚକ୍ରୀ ରାମ ଦୁଇ ।
ନାମ ନ ଘେନନ୍ତି ପ୍ରାଣୀ କି ଦୋଷ ଅଛଇ । ୯ ।
ଅଚ୍ୟୁତ ଦାସର କଥା ଶୁଣ ବାବୁ ସୁତ ।
ଦଶମାସ ଗର୍ଭେ ଜାତ ହୋଏ ଯେଉଁ ପୁତ୍ର । ୧୦ ।

---

୭—୧ ହକାରେ ଥୋଇ (କ) ।

ଅଷ୍ଟଦନ ଭିତରେଣ ନବଦ୍ୱନ ହୋଇ ।
ନବଦନ ହୋଇଲେ ଯେ ଦୀକ୍ଷା କର୍ଣ୍ଣେ କହ୍ମ । ୧୧ ।
ସେହୁକ୍ଷଣି ସେହୁ ପୂତ ମୃତ୍ୟୁ ଯଦ ପାଏ ।
ଶ୍ରୀବନ୍ତ ଲୋକର ଘରେ ଜାତ ପୁଣ ହୋଏ । ୧୨ ।
ଜନ୍ମ ହୋଏ ବଇଷ୍ଣବ ଘରେ ପୁଣ ଯାଇ ।
ପୂର୍ବର ବାସନା ଯେଣ ଶ୍ରୀକୃଷ୍ଣ ଘୋଷଇ । ୧୩ ।
ଦୀକ୍ଷା ଯେବ ରହେ ଯଦ ନୋହଇ ମରଣ ।
ତାହାର ସୁଗତ ହୁଏ ଭଗତ କାରଣ । ୧୪ ।
ଅଣଦୀକ୍ଷା ବାଳକଙ୍କୁ ଗୃହେ ରଖିଥିଲେ ।
ଶ୍ମଶାନ ଅଟେ ସେହୁ ଗୃହରେ ବସିଲେ । ୧୫ ।
ତାଙ୍କୁ କୋଳେ ଧରଥିଲେ ଅଷ୍ଟରଣୀ ଜାଣ ।
ନବଦନେ ହରନାମ ଏଣୁ ପରମାଣ । ୧୬ ।
ନଳମାଢଲରେ ମାର ପତ୍ୱସ୍ଥେ ଶଙ୍ଖର ।
ଶ୍ରବଣେ ବାରେକ ହରନାମ ହେତୁ କର । ୧୭ ।
ନବଦନଠାରୁ ବାରବରଷ ଧଇବେ ।
ଏଥିମଧ୍ୟେ ବାଳକଙ୍କୁ ଉପଦେଶ ଦେବ । ୧୮ ।
ନବଦନେ ଦେବ ଦୀକ୍ଷା ତନ ବରଷରେ ।
ପାଞ୍ଚ ଯେ ବରଷେ ଦେବ ସାତ ବରଷରେ । ୧୯ ।
ନବ ଯେ ବରଷେ ଦେବ ଦ୍ୱାଦଶ ବରଷ ।
ନାମର ବଧି ଅଟଇ ଏମନ୍ତ ଯେ ରସ । ୨୦ ।
ଦକ୍ଷିଣ ଦଗକୁ ବୃନ୍ଧି ନାମ ଦେଲେ ପୁଣ
ଗୁରୁଘରେ ଶୋକଜାତ ହୋଇବ ମରଣ । ୨୧ ।
ନୈର୍‌ତ କୋଣକୁ ବୃନ୍ଧି ନାମ ଯେବେ ଦେଇ ।
ନଷ୍ଟ ହୁଅଇ ଏଥି ଦୋଷ କିଛୁ ନାହିଁ । ୨୨ ।
ପଶ୍ଚିମ ଉତ୍ତମ ହୋଇ ବାଇବ୍ୟରେ ଭଲ ।
ଉତ୍ତରେ ଗତ ଲଭନ୍ତ ଇଶାନ୍ୟେ ସୁଫଳ । ୨୩ ।
ସବ ସିଦ୍ଧି ହୁଅଇ ଯେ ପବ ଦ୍ୱାରେ ପୁଣ ।
ଅଗ୍ନିକୋଣେ ନଷେଧ ଯେ ଏକଥା ପ୍ରମାଣ । ୨୪ ।

ବୈଶାଖ ମାସରେ ଦେଲେ ଭଗତ ପ୍ରାପତ ।
ଜ୍ୟେଷ୍ଠମାସେ ମୃତ୍ୟୁ ହୁଏ ଏକଥା ନିଶ୍ଚିତ । ୨୫ ।
ଆଷାଢ଼ ମାସରେ ଦେଲେ ଶମ ଭକ୍ତ ହୋଇ ।
ଶ୍ରାବଣ ମାସରେ ଦେଲେ ସର୍ବ ସିଦ୍ଧି ପାଇ । ୨୬ ।
ଭାଦ୍ରବ ମାସରେ ଦେଲେ ଦାସ୍ୟା ଶାନ୍ତ ଚିତ୍ତ ।
ଅଶ୍ୱିଣେ ରତ୍ନ ସମ୍ପଦ ହୁଅନ୍ତି ପ୍ରାପତ । ୨୭ ।
କାର୍ତ୍ତିକରେ ମହାଲକ୍ଷ୍ମୀ ପରାପତ ହୋଇ ।
ମାର୍ଗଶୀରେ ଧନ ଜନ ସେ ଜନ ଲଭଇ । ୨୮ ।
ପୌଷେ ଶତ୍ରୁ ହାନି ହୋଏ ପଡ଼େ ଅପବାଦ ।
ମାଘରେ ଦୀକ୍ଷା ଘେନଲେ ବଢ଼ଇ ସମ୍ପଦ । ୨୯ ।
ସର୍ବସିଦ୍ଧି ଲଭନ୍ତି ଯେ ଫଗୁଣ ଶୁକ୍ଳ ।
ଚଇତରେ ସର୍ବହାନି ନାଶ ଯାଏ କୁଳ । ୩୦ ।
ଶୁକ୍ଳ ପକ୍ଷରେ ଦେବ ପୁରୁଷଙ୍କୁ ପୁଣ ।
ହରେକୃଷ୍ଣ ରାମ ଧନ ବୀଜ ଯେ ଘେଣିଣ ୩୧ ।
କୃଷ୍ଣପକ୍ଷେ ଦେବ ଦୀକ୍ଷା ସ୍ତ୍ରୀ ଜନବୃନ୍ଦ ।
ରାଧେ କୃଷ୍ଣ ଶ୍ୟାମ ବୋଲି ଗୁଢ଼ ବୀଜ କନ୍ଦ । ୩୨ ।
ଦୀନ ଅଚ୍ୟୁତର ଦୀକ୍ଷା ମନେ ହେତୁ କର ।
ଚବିଶ ଭଗତେ ତୁମ୍ଭେ ସୁହୃଦ ଆମ୍ଭର । ୩୩ ।
ଏହୁ ଗୁରୁଭକ୍ତି ଗୀତା ଯେ ବୁଝିବ ମନ ।
ସର୍ବ ଶାସ୍ତ୍ର ବୀଜ ଏହୁ ହେତୁ ମନେ ଘେନ । ୩୪ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଅଷ୍ଟାବିଂଶ ଛାନ୍ଦ ॥

—※—

# ଊନବିଂଶ ଛାନ୍ଦ

ଶୁଣହେ ମୁକୁନ୍ଦ ଦାସ ଉପଦେଶ ବାଣୀ ।
ଦାସ ଯେ ଅନନ୍ତ ତୁମ୍ଭେ ଅଛ ଦୁଇ ପୁଣି । ୧ ।
ଗୋମୟ ଛଞ୍ଚଣ ଭୂମି ଖଣ୍ଡେ ଲିପି ଦେବ ।
ଦଣ୍ଡବତ ବନ୍ଧ କରି ଚକ୍ରକୁ ଲେଖିବ । ୨ ।
ଅଷ୍ଟକୋଣ ଧରଣ ତ୍ରିକୋଣ ବସାଇବ ।
ଏକ ଏକ କୋଣ ବେନି ଭାଗ ରଖିଥିବ । ୩ ।
ଉପରେ ରଖିବ ଏକ କୋଣ ପୁଣ ନେଇ ।
ମଧ୍ୟରେ ଛନ୍ଦିବ ଅଷ୍ଟକୋଣ ପୁଣ ଛନ୍ଦି । ୪ ।
ବେନି କୋଣେ ବସାଇବ ସ୍ୱରଉଁ ଶୀରଉଁ ।
ମଧ୍ୟ କୋଣେ ବସାଇବ ଅଧର କ୍ଲୀଉଁ । ୫ ।
ଗୋପୀଜନ ବଲ୍ଲଭାୟ ଅଷ୍ଟକୋଣେ ବସେ ।
ନ ମ ଦୁଇ ଅକ୍ଷର ଯେ ତ୍ରିକୋଣେ ପ୍ରକାଶେ । ୬ ।
ହ୍ମକାର ଶିଷ୍ୟର ଥାନ ଗୁରୁ ସକାରରେ ।
କକାରକୁ ଧ୍ୟାନ କଲେ ସର୍ବ ପାପ ହରେ । ୭ ।
ଏ ଚକ୍ର ଆପଣ ଗୁରୁ ଅଙ୍ଗେ ଯେ ଧରିବ ।
ଅଶ୍ୱତ୍ଥ ତୁଳସୀ ବେନି ଠାବରେ ବସିବ । ୮ ।
ନୋହିଲେ ଉତ୍ତମ ଗୃହ ଥିବ ଯେଉଁଠାରେ ।
ନାମ ଦେବ ଶିଷ୍ୟକୁ ଯେ ଏ ତିନି ଠାବରେ । ୯ ।
ହଳଦୀ ଏକ ବସନ ପିନ୍ଧିଥିବ ଶିଷ୍ୟ ।
ହଳଦୀ ବସନ ଏକ କାନ୍ଧରେ ଥିବଟି । ୧୦ ।
ହରିଦ୍ରା ବସନ ବେନି ଗୁରୁଙ୍କର ପାଇଁ ।
ଶ୍ରୀଫଳ ହରିଡ଼ା ହସ୍ତେ ଅଞ୍ଜଳି ପୂରାଇ । ୧୧ ।

ଦଣ୍ଡବତ କରିଣ ଯେ ହସ୍ତ ହୋଇଥିବ ।
ଗୁରୁ ପୁଣ ଆଜ୍ଞା ଦେଇ ବାମେ ବସାଇବ । ୧୨ ।
ବାରଥର ତୁଳସୀର ପାଣି ସିଞ୍ଚି ଶିର ।
ମନ୍ତ୍ର ସ୍ଥାନ ମନ୍ତ୍ର ଗୋଟି ସୁମରି ମନର । ୧୩ ।
ଭୂତ ଶୁଦ୍ଧି କରିବ ଯେ ଗୁରୁଶିଷ୍ୟ ଅଙ୍ଗ ।
ଛେଦିବ ଯେ ଗୁରୁ ପାପ ସମାଧିର ସଙ୍ଗ । ୧୪ ।
ମନ୍ତ୍ରବଳେ ଶିଷ୍ୟ ପାପ ଛେଦନ କରାଇ ।
ଶିଷ୍ୟ ପୁଣ ଯାଇ ବସ୍ତ୍ର ଲେକରେ ମିଶଇ । ୧୫ ।
ଗୁରୁ ଅଙ୍ଗେ ପାପ ପୁଣ ହୁଅଇ ପ୍ରବେଶ ।
ଅଣାକ୍ଷର ଏକାକ୍ଷର ଷୋଡ଼ଶ ଯେ ଘୋଷ । ୧୬ ।
ନାରାୟଣ ପଞ୍ଚାକ୍ଷର ଭଜନ ଯେ କଲେ ।
ଗୋହତ୍ୟା କାଟଇ ଅଣାକ୍ଷର ଜପ କଲେ । ୧୭ ।
ଏକାକ୍ଷର ଜପ କଲେ ବ୍ରହ୍ମହତ୍ୟା ଦୂର ।
ଷୋଡ଼ଶ ଜପିଲେ ମାତୃ ହରଣରୁ ପାର । ୧୮ ।
ଭଗ୍ନୀ ହରଣରେ ପାପ ନାରାୟଣେ ନାଶ ।
ପଞ୍ଚାକ୍ଷରେ ସୁରାପାନ ହୁଅନ୍ତି ସେ ଧ୍ୱଂସ । ୧୯ ।
ଅଷ୍ଟକୋଟି ପାପେ ଏହି ପଞ୍ଚ ପାପ ସାର ।
ଏ ପାପେ ଯହିଁ ଲୁଚନ୍ତି ଆଉ କେଉଁ ଗୁର । ୨୦ ।
ଦ୍ୱାଦଶ ପୁରୁଷ ଗୁରୁ ସୁମରଣା କଲେ ।
ଦ୍ୱାଦଶ କୋଟି ପାପ ଯେ ନ ରହେ ଶରୀରେ । ୨୧ ।
ଅଗ୍ନିକି ଦେଖିଲେ ଯେହ୍ନେ ତମ ଘୁଞ୍ଚି ଯାଇ ।
ସୂର୍ଯ୍ୟ ପ୍ରକାଶିଲେ ଯେହ୍ନେ ରାତ୍ର ଭୟ ନାହିଁ । ୨୨ ।
ଯନ୍ତ୍ର ଜ୍ୟୋତି ସମାଧିରେ ପାପ ହୋଏ ନାଶ ।
ସର୍ବ ମନ୍ତ୍ର ସାର ପଞ୍ଚ ମନ୍ତ୍ର ଯେ ପ୍ରକାଶ । ୨୩ ।
ଶ୍ରଦ୍ଧା ସେ ଅବାଡ଼ ନାମ ଘୋଷୁଣ ଯେ ଥିବ ।
ଏତେ ଗୁଣ ଘୋଷି କରି ଶିଷ୍ୟ ଯେ କରିବ । ୨୪ ।

ଏତେ ଗୁଣ ନ ଘୋଷିଣ ଶିଷ୍ୟ ଯେବେ କର ।
ପରଲୋକେ ନ ତରଇ ଇହଲୋକେ ମର । ୧୫ ।
ତାର ସେ ପୁରୁଷ ଗୁରୁ ଦଣ୍ଡବତ ଶିଷ୍ୟ ।
ନାମ ସେ କହିବ ତାର ଥର କର୍ଣ୍ଣ ଦେଶ । ୧୬ ।
ଜମାନନ୍ଦ ବୈଷ୍ଣବ ଯେ ତେବେ ସେ ହୋଇବ ।
ଅଚ୍ୟୁତ ବଚନ ତାର ଗୋପାଳ ଧରିବ । ୧୭ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଊନବିଂଶ ଛାନ୍ଦ ।



## ବିଂଶ ଛାନ୍ଦ

ଚବିଶ ଗୋପାଳ ସ୍ତୁତି କରୁଛୁଁ ଗୋସାଇଁ ।
ରାମ ଭୃଥ ଧର୍ମ୍ମ ବିଷ୍ଣୁ ବଳ ପଷକଇ । ୧ ।
ରାମ ରାମ ନିରଞ୍ଜନ ନନ୍ଦ ଯେ ଦକ୍ଷିଣ ।
ମୁରାରି କନ୍ଦ ମିଶିଣ ଦ୍ୱାଦଶ ଯେ ଜଣ । ୨ ।
ରାମ ଭୃଥ ଦ୍ୱାଦଶ ଯେ ଆବର କହନ୍ତି ।
ହତ୍‌ଥାନ ପବନ ଯେ ଅନନ୍ତ ତନ ମୂର୍ତ୍ତି । ୩ ।
ମୁକୁନ୍ଦ ଗୋବିନ୍ଦ ଯେ ଆନନ୍ଦ ତନ ଜଣ ।
ବସ୍ତ୍ର ଯେ ଯାଦବ ବେନ ସୁଦାମ ଯେ ପୁଣ । ୪ ।
ବାଳକ ଯେ ବୃନ୍ଦାବନ ମଥୁରା ଯେ କନ୍ତୁ ।
ଗୁରୁ ଯେ ପ୍ରଣାମ ବିଧି କେମନ୍ତ ଅଟଇ । ୫ ।
ଶୁଣ ଅହେ ଗୋପସୁତ ଅଚ୍ୟୁତ ବଚନ ।
ଗୁରୁ ଉପଦେଶ କଥା ଅଟ ଯେ ଗହନ । ୬ ।
ପ୍ରଥମେଣ ମହାଶୂନ୍ୟ ଅଟଇଟି ଶୁଣ ।
ତହୁଁ ଶିଷ୍ୟ ହୋଇଲେ ଯେ ତତ୍ତ୍ୱ ବ୍ରହ୍ମପୂର୍ଣ୍ଣ । ୭ ।
ତତ୍ତ୍ୱ ବ୍ରହ୍ମଶିଷ୍ୟ ହେଲେ ପରବ୍ରହ୍ମ ପୁଣି ।
ପରବ୍ରହ୍ମ ଶିଷ୍ୟ ଯେ ହୋଇଲେ ବ୍ରାହ୍ମ ଶୁଣି । ୮ ।
ବ୍ରହ୍ମ ତହୁଁ ଶିଷ୍ୟ ପୁଣ ବୀଜ ଯେ ହୋଇଲେ ।
ବୀଜ ତହୁଁ ଓଁ କାରୁ ଯେ ଶିଷ୍ୟ ଦୀକ୍ଷା ନେଲେ । ୯ ।
ଓଁ କାର ଠାବରୁ ଶିଷ୍ୟ ଅରବ୍ରହ୍ମ ହୋଇ ।
ଅରବ୍ରହ୍ମ ଠାରୁ ଶିଷ୍ୟ ଆଦ୍ୟ ମୂଳ ପାଇ । ୧୦ ।

---

୯—୧ ବ୍ରଜ ଯେ (ଖ); ୯—୨ ବ୍ରଜ ତହୁଁ (ଖ) ଓଁ କାର ଯେ (କ, ଖ,);

ଆଦ୍ୟମୂଳ ତହୁଁ ଶିଷ୍ୟ ହୋଇଲେ ପ୍ରକୃତ ।
ପ୍ରକୃତ ଠାବରୁ ଶିଷ୍ୟ ବହ୍ନ ବହ୍ନ ହୋନ୍ତି । ୧୧ ।
ବହ୍ନ ବହ୍ନଠାରୁ ଶିଷ୍ୟ ବ୍ୟୋମ ଯେ ହୋଇଲେ ।
ବ୍ୟୋମଠାରୁ ପ୍ରଣବ ଯେ ଶିଷ୍ୟ ଦୀକ୍ଷା ନେଲେ । ୧୨ ।
ପ୍ରଣବ ଠାବରୁ ଶିଷ୍ୟ ମହତତ୍ତ୍ୱ ହୋଇ ।
ମହତତ୍ତ୍ୱ ଶିଷ୍ୟ ଆଦ ନାରାୟଣ କହି । ୧୩ ।
ଆଦ ନାରାୟଣ ଶିଷ୍ୟ ସନକାଦ ହେଲେ ।
ସନକାଦଠାରୁ ଦୀକ୍ଷା ନାରଦ ଘେନଲେ । ୧୪ ।
ନାରଦ ଠାବରୁ ବ୍ୟାସମୁନ ଶିଷ୍ୟ ହୋଇ ।
ବ୍ୟାସମୁନ ଠାରୁ ଗହତମ ମୁନ ପାଇ । ୧୫ ।
ଗହତମମୁନ ଶିଷ୍ୟ ଜାଲାମ୍ବର ମୁନ ।
ଜାଲାମ୍ବରମୁନ ଶିଷ୍ୟ ନବାଣ ଯେ ଘେନ । ୧୬ ।
ନବାଣ ମୁନଙ୍କଠାରୁ କୃଷ୍ଣ ମୁନ ଶିଷ୍ୟ ।
କୃଷ୍ଣମୁନ ଗୋପାଳ ମୁନଙ୍କି ଉପଦେଶ । ୧୭ ।
ଗୋପାଳ ମୁନଙ୍କ ଶିଷ୍ୟ ଗରୁଡ଼ ଯେ ମୁନ ।
ଗରୁଡ଼ ମୁନ ଠାବରୁ ଶ୍ରୀଧର ମୁନ ଘେନ । ୧୮ ।
ଶ୍ରୀଧର ମୁନଙ୍କ ଶିଷ୍ୟ ପୁରୁଷୋତ୍ତମ ମୁନ ।
ପୁରୁଷୋତ୍ତମ ଠାରୁ ମହା ଆଚାର୍ଯ୍ୟ ଯେ ଘେନ । ୧୯ ।
ମହା ଆଚାର୍ଯ୍ୟରୁ ବିଷ୍ଣୁ ଆଚାର୍ଯ୍ୟ ହୋଇଲେ ।
ବିଷ୍ଣୁ ଆଚାର୍ଯ୍ୟରୁ ପୁରୁଷୋତ୍ତମ ଯେ ଘେନଲେ । ୨୦ ।
ପୁରୁଷୋତ୍ତମ ଆଚାର୍ଯ୍ୟ ବିଳାସରେ କହି ।
ବିଳାସ ଆଚାର୍ଯ୍ୟେ ସ୍ୱରୂପ ଆଚାର୍ଯ୍ୟ ହୋଇ । ୨୧ ।
ସ୍ୱରୂପ ଆଚାର୍ଯ୍ୟ ଶିଷ୍ୟ ମାଧବ ଆଚାର୍ଯ୍ୟ ।
ମାଧବ ଆଚାର୍ଯ୍ୟ ଶିଷ୍ୟ ବଳଭଦ୍ରାଚାର୍ଯ୍ୟ । ୨୨ ।

---

୧୦—୧—ଉକ୍ତ ର ଠାବରୁ,

ବଳଭଦ୍ର ଆଚାର୍ଯ୍ୟଙ୍କୁ ସେ କଦମ୍ବ ଆଚାର୍ଯ୍ୟ ।
କଦମ୍ବ ଆଚାର୍ଯ୍ୟ ଶିଷ୍ୟ ଶ୍ୟାମ ସେ ଆଚାର୍ଯ୍ୟ । ୨୩ ।
ଶ୍ୟାମ ଆଚାର୍ଯ୍ୟଙ୍କ ଶିଷ୍ୟ କୃପାଳୁ ଆଚାର୍ଯ୍ୟ ।
କୃପାଳୁ ଆଚାର୍ଯ୍ୟ ଶିଷ୍ୟ ଗୋପାଳ ଆଚାର୍ଯ୍ୟ । ୨୪ ।
ଗୋପାଳ ଆଚାର୍ଯ୍ୟ ଶିଷ୍ୟ କୃଷ୍ଣ ସେ ଆଚାର୍ଯ୍ୟ ।
କୃଷ୍ଣ ଆଚାର୍ଯ୍ୟଙ୍କ ଶିଷ୍ୟ ଦେବ ସେ ଆଚାର୍ଯ୍ୟ । ୨୫ ।
ଦେବ ଆଚାର୍ଯ୍ୟର ଶିଷ୍ୟ ସୂର୍ଯ୍ୟଭଟ୍ଟ ହୋଇ ।
ସୂର୍ଯ୍ୟଭଟ୍ଟ ଶିଷ୍ୟ ସେ ନୃପେନ୍ଦ୍ର ଭଟ୍ଟ କହି । ୨୬ ।
ନୃପେନ୍ଦ୍ର ଭଟ୍ଟର ଶିଷ୍ୟ ପଦ୍ମଭଟ୍ଟ ପୁଣ ।
ପଦ୍ମଙ୍କର ଭଟ୍ଟ ଶିଷ୍ୟ ଚରଭଟ୍ଟ ଜାଣ । ୨୭ ।
ଚରଭଟ୍ଟଙ୍କର ଶିଷ୍ୟ ରାମଭଟ୍ଟ ହୋଇ ।
ରାମଭଟ୍ଟୁ ବାମନ ଭଟ୍ଟ ସେ ପୁଣ ସେହି । ୨୮ ।
ବାମନଭଟ୍ଟଙ୍କ ଶିଷ୍ୟ କୃଷ୍ଣଭଟ୍ଟ ହେଲେ ।
କୃଷ୍ଣଭଟ୍ଟୁ ଗୋପାଳ ଭଟ୍ଟ ସେ ଦୀକ୍ଷା ନେଲେ । ୨୯ ।
ଗୋପାଳ ଭଟ୍ଟଙ୍କ ଶିଷ୍ୟ ଶ୍ରବଣ ଭଟ୍ଟନ ।
ଶ୍ରବଣ ଭଟ୍ଟଙ୍କ ଶିଷ୍ୟ ଅଟେ ନମାନୁଜ । ୩୦ ।
ନମାନନ୍ଦଙ୍କର ଶିଷ୍ୟ ତ୍ରିରଙ୍ଗ ଭଟ୍ଟ ହୋଇ ।
ତ୍ରିରଙ୍ଗ ଭଟ୍ଟ ଶିଷ୍ୟ ମାଧବଭଟ୍ଟ ହୋଇ । ୩୧ ।
ମାଧ ଭଟ୍ଟଙ୍କର ଶିଷ୍ୟ ରାମ ଭଟ୍ଟ ପୁଣ ।
ରାମଭଟ୍ଟଙ୍କର ଶିଷ୍ୟ ଗୋପାଳ ଭଟ୍ଟ ଜାଣ । ୩୨ ।
ଗୋପାଳ ଭଟ୍ଟଙ୍କ ଶିଷ୍ୟ ବଳଭଦ୍ର କହି ।
ବଳଭଦ୍ର ଭଟ୍ଟ ଶିଷ୍ୟ ଗୋପୀନାଥ ହୋଇ । ୩୩ ।
ଗୋପୀନାଥ ଭଟ୍ଟ ଶିଷ୍ୟ ଗଙ୍ଗାଭଟ୍ଟ ହେଲେ ।
ଗଙ୍ଗାଭଟ୍ଟୁ ସୁକୁମାର ଭଟ୍ଟ ଶିଷ୍ୟ ହେଲେ । ୩୪ ।

---

୨୭—୨ ପଦ୍ମଙ୍କର ଭଟ୍ଟ ଶିଷ୍ୟ କରଭଟ୍ଟ ଜାଣ (କ);

ସୁକୁମାର ଭକ୍ତ ଶିଷ୍ୟ ଶ୍ରୀଭକ୍ତ ଅଟଇ ।
ଶ୍ରୀଭକ୍ତ ଶିଷ୍ୟ ବାସବ ଇନ୍ଦ୍ରଦେବ କହ୍ନ । ୩୫ ।
ବାସବ ଇନ୍ଦ୍ରଙ୍କ ଶିଷ୍ୟ ହରିହର ଦେବ ।
ହରିହର ଶିଷ୍ୟ ନରହରି ବାସୁଦେବ । ୩୬ ।
ନରହରି ବାସୁଦେବ ଶ୍ରୀଚୈତନ୍ୟ ଦେବ ।
ଚଇତନ୍ୟ-ଦେବ ଶିଷ୍ୟ ଶ୍ରୀମାଧବ ଦେବ । ୩୭ ।
ମାଧବେନ୍ଦ୍ର ଦେବ ଶିଷ୍ୟ ଶ୍ରୀଈଶ୍ୱର ଦେବ ।
ଈଶ୍ୱର ଦେବଙ୍କ ଶିଷ୍ୟ ଶ୍ରୀଚୈତନ୍ୟ ଦେବ । ୩୮ ।
ଶ୍ରୀଚୈତନ୍ୟ ଶିଷ୍ୟ ହେଲେ ସାରଙ୍ଗ ଗୋସାଇଁ ।
ସାରଙ୍ଗ ଗୋସାଇଁ ଶିଷ୍ୟ ଶାମ ଘୋଷ ହୋଇ । ୩୯ ।
ଶାମ ଘୋଷଙ୍କର ଶିଷ୍ୟ ରାମକୃଷ୍ଣ ଦାସ ।
ରାମକୃଷ୍ଣଙ୍କଠାରୁ ନବକିଶୋର ଯେ ଶିଷ୍ୟ । ୪୦ ।
ନବକିଶୋରଙ୍କ ଶିଷ୍ୟ ଶ୍ରୀଚରଣ ଗୋସାଇଁ ।
ଶ୍ରୀଚରଣ ଗୋସାଇଁ ଶିଷ୍ୟ ଅଚ୍ୟୁତ ମୁହିଁ । ୪୧ ।
ଅଚ୍ୟୁତଙ୍କର ଶିଷ୍ୟ ହେଲେ ରାମଚନ୍ଦ୍ର ଦାସ ।
ମୁକୁନ୍ଦ ହନୁମାନ ଯେ ପବନ ରାମ ଶିଷ୍ୟ । ୪୨ ।
ଯାଦବ, ଅନନ୍ତ ଯେ ବାଳକ ବୃନ୍ଦାବନ ।
ଗୋବିନ୍ଦ ଛଡ଼ ହେ ଶୁଣ ଗୁରୁ ଦୀକ୍ଷାମାନ । ୪୩ ।
ଆନନ୍ଦ ସୁଦାମ ମଧୁ ଅଟ ଭଅକଇ ।
ହରି ନାମ ଭଗତ ଯେ ତୁମ୍ଭଠାରେ ରହ୍ନ । ୪୪ ।
କହିଲୁ ଗୁପତ ଗ୍ରନ୍ଥ ଶ୍ରୀକୃଷ୍ଣ କରୁଣା ।
ଗୋପ୍ୟ ରଖି ପାଠକୁ ଯେ କରୁଥିବ ଗୁଣା । ୪୫ ।
ବାର ଯେ ଗୋପାଳ ତୁମ୍ଭେ ଅଟ ହେ ପ୍ରଧାନ ।
ତୁମ୍ଭେ ଆରାଧିଲ ହରିନାମ କୀର୍ତ୍ତନ । ୪୬ ।

---

୬୮—୧ ଜର ଭକ୍ତ (କ); ୩୧—ତୁରଭକ୍ତ (କ);

ଖୋଲ ଯେ କର୍ତ୍ତାଳ ସିଂଘା ତର୍ଜଣୀ ଯେ କସ ।
ଚନ୍ଦ୍ରଚୂଳ ଜଟାକୁ ଯେ ହୃଦେ ଥିବ ବେଶ । ୪୭ ।
ଏ ବେଶ ଧରଣ ତୁମ୍ଭେ ହରି ନାମ ଗାଇ ।
ଅଚ୍ୟୁତ ପଥ ଧାରଣା ଅଛ ବାର କହୁ । ୪୮ ।
ଧନ ପୀଢ଼ି ଅର୍ଦ୍ଧକୁ ତ ସୁଖ ଭୋଗ ଯିବ ।
ହରିହ ସ୍(ଭ)ଜନ କାଳେ ହେଲଣ ହୋଇବ । ୪୯ ।
ନଷ୍ଟଭ୍ରଷ୍ଟ ହୋଇବ ସଂସାରେ ପ୍ରାଣୀମାନେ ।
ସ୍ୱଜା ଭଣ୍ଡି ନେଉଥିବ ପରଜାର ଧନେ । ୫୦ ।
ସ୍ତ୍ରଜାଠ ଅଷ୍ଟାଦଶ ଛତ୍ରଶ ଏ କୁଳ ।
ମାଳା ଧରି ତିଳକ ଯେ ଅଙ୍ଗେ ଥିବ ବୋଲ । ୫୧ ।
ମାଛ ମାଂସ ଖାଇଣ ଯେ ହୋଇଥିବେ ଦାସ ।
ପର ରମଣୀରେ ରତ କରବେ ହରଷ । ୫୨ ।
ପଦାନ୍ତ ତୁରଙ୍ଗ ଚଢ଼ିବାକୁ ବଡ଼ ମନ ।
ଦମ୍ଭପଣେ କହିବେ ଗୁରୁଗୁଣ୍ଠ କଥାମାନ । ୫୩ ।
ଅଙ୍ଗନ୍ୟାସ କରନ୍ୟାସ ଷଡ୍ଙ୍ଗ ନ ଜାଣି ।
ମାତୃକା ଯେ ଭୂତଶୁଦ୍ଧି ନ ପାରବେ ଗୁଣି । ୫୪ ।
ମାସର ଅନ୍ତ୍ରିର ମାଇ ନ ଜାଣିବେ ପୁଣ ।
ମନ୍ତ୍ରର ଅନ୍ତ୍ରିର ମାଇ ନ ଘେନ ପ୍ରମାଣ । ୫୫ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ହେତୁ ଅଭ୍ୟାସ ନ କରି ।
ଶିଷ୍ୟ କରୁଥିବେ ଆଣି ବଳେ କର୍ଣ୍ଣ ଧରି ।୫୬ ।
ନଷ୍ଟ ଭ୍ରଷ୍ଟ ଗୁରୁ ଶିଷ୍ୟ ଏଣୁକର ହେବ ।
ଅଠର ଲକ୍ଷ ମାଳଥା ବୀରଜା ଖାଇବ । ୫୭ ।
ଗୁପ୍ତ ଗୁପ୍ତ ମହାଗୁପ୍ତ ନ କର ପ୍ରକାଶ ।
ପ୍ରକାଶିଲେ ଦରିଦ୍ର ଯେ ହୋଇବ ପ୍ରବେଶ । ୫୮ ।

---

୪୭—୨-ତର୍ଜଣୀ ଯେ ବସା (ଗ), ୪୮—୨-ବାରକଇ (ଖ)

ବଧିର କୁଷ୍ଠ ଯେ ଆନଭ୍ରଷ୍ଟ କୁଳ ହେବ ।
ଧନ ଲୋଭେ ଗ୍ରନ୍ଥ ଦେଲେ ପ୍ରମାଦ ପଡ଼ିବ । ୫୯ ।
ସାଧୁଙ୍କ ପଶୁଙ୍କ କୃତାଞ୍ଜଳି ଯେ ହୋଇବ ।
ଶ୍ରଦ୍ଧାବନ୍ତ ହୋଇ କର ଶାସ୍ତ୍ର ଶୁଣିବ । ୬୦ ।
ପରଦାର ମଦ୍ୟମାଂସ ମାନନ୍ତ ନ ଭକ୍ଷେ ।
ଏମନ୍ତ ଚିହ୍ନ ଯାହାର ହୋଇଣ ଯେ ସୁଖେ । ୬୧ ।
ସେ ଜନ ଅଗରେ ଏହୁ ଗ୍ରନ୍ଥକୁ ପଢ଼ିବ ।
ଅଶରଧା ଅଭଗତେ କେବେ ନ କହିବ । ୬୨ ।
ଶ୍ରୀ ଗୁରୁ ଚରଣେ ଯାର ଦୃଢ଼ ହୋଏ ଚିତ୍ତ ।
ଦର୍ଶନେ ଲଭଇ ବ୍ରହ୍ମା ବିଷ୍ଣୁ ମହେଶ ତ । ୬୩ ।
କୋଟି କୋଟି ତୀର୍ଥଫଳ ଗୁରୁଙ୍କ ଦର୍ଶନେ ।
କୋଟି କୋଟି ଗ୍ରନ୍ଥ ପୁଣ୍ୟ ଗୁରୁଙ୍କ ବଚନେ । ୬୪ ।
ମାତା ପିତା ଦେଲେ ନାମ ସନାତନ ପୁଣ ।
ଗୁରୁ ଆଜ୍ଞା ଦେଲେ ଶ୍ରୀଚରଣ ଦାସ ଶୁଣ । ୬୫ ।
ଶ୍ରୀଚରଣ ଗୋସାଇଁଙ୍କ ଚରଣକୁ ଆଶ ।
ଗୁରୁଙ୍କ ପ୍ରଣାମ ତାଙ୍କ ମୁଖରୁ ପ୍ରକାଶ । ୬୬ ।
ସେ ଯାହା କହିଲେ ମୁଖେ ତାହା ମୁଁ ଲେଖିଲି ।
ଢଳକଣା ଗ୍ରାମରେ ମୁଁ ଉପଦେଶୀ ହେଲି । ୬୭ ।
ଘାନବନ୍ଧୁ ଖୁଣ୍ଟିଆ ଯେ ମୋହର ପିତର ।
ଶଦ୍ରାନାସି ପଦ୍ମାମାତା ଅଟନ୍ତି ମୋହର । ୬୮ ।
ଲବଣ ଧାର ତଟ୍ଟ ଉପୂଳାର ତୀର ।
ପଦ୍ମବନ ଲେମ୍ବୋଲ ଯେ ଜନ୍ମ ମୋର ଆଳ । ୬୯ ।
ପାମର ଅତ୍ୟନ୍ତ ଗୁରୁ ଚରଣକୁ ଆସ ।
ଇତି ଗୁରୁଭକ୍ତି ଗୀତା କଲଇଁ ପ୍ରକାଶ । ୭୦ ।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ବିଂଶ ଛାନ୍ଦ ।

—※—

## ଏକବିଂଶ ଛାନ୍ଦ

ଶ୍ରୀଗୁରୁପରମଗୁରୁ ମୁଖରେ ପ୍ରମାଣ ।
ରାମାନନ୍ଦ ବଇଷ୍ଣବ କେଉଁ ମନ୍ତ୍ର ପୁଣ । ୧ ।
ମୁକୁନ୍ଦ ଅନନ୍ତ ଦେ ଯାଦବ ଦାସ ଶୁଣ ।
ସନ୍ତସ ନାଥ ସେବକ ଶ୍ରୀମନ୍ତ ଧନ ପୁଣ । ୨ ।
ବସ୍ତୁତ ବସ୍ତୁତ କଥା ଏହି ପୁଣ ଅଛୁ ।
ଏକାମନ୍ତ କଥା ଚିନ୍ତା ପଚ୍ଛଲ୍ ବାଛୁ । ୩ ।
ସମ୍ପ୍ରଦା ଅଟନ୍ତି ଚାରି ବଇଷ୍ଣବ ପୁଣ ।
ଧାମ ଯେ ଅଟଇ ଚାରି ବ୍ରହ୍ମାଣ୍ଡରେ ଜାଣ । ୪ ।
ଚାରିମଠ ଚାରି ବଇଷ୍ଣବଙ୍କ ଭିଆଣ ।
ସବ ମନ୍ତ୍ର ଭାଗେ ଭାଗେ ଚାରି କରି ଜାଣ । ୫ ।
କ୍ଷେତ୍ର ଯେ ଅଛଇ ଚାରି ବେଦ ଚାରି କହୁ ।
ଦେବତା ଅଟଇ ଚାରି ନଦୀ ଚାରି ହୋଇ । ୬ ।
ଋଷି ଯେ ଅଟନ୍ତି ଚାରି ଯୁଗ ଚାରି ଜାଣ ।
ସାଧ ଯେ ଦିବସ ଚାରି ଚାରି ପରମାଣ । ୭ ।
ବର୍ଣ୍ଣ ଯେ ଅଟଇ ଚାରି ଦିଗ ଚାରି କହୁ ।
ଚାରି ଚାରି ଭେଦଲେ ଦାସ ବୋଲି କହୁ । ୮ ।
ଚାରି ବେଦ ଉପରେ ଯେ ପାଞ୍ଚବେଦ ସାର ।
ଗୁପତ ଭକତମାନେ କରନ୍ତି ବିସ୍ତର । ୯ ।
ଶିଶୁବେଦ ବୋଲି କରି ନାମ ଯେ ଅଟଇ ।
ଆଦ୍ୟ ଯେ ଅନନ୍ତ ବୋଲି ଯୁଗ ତାକୁ କହୁ । ୧୦ ।
ରାମାନନ୍ଦ ବଇଷ୍ଣବ ମନ୍ତ୍ର ବୀଜ ପୁଣ ।
କ୍ଷୋଡ଼ରେ ଭଜନ ଯେ କୃଷ୍ଣାଦ ଯେ ଶୁଣ । ୧୧ ।

ବେଦରେ ଯେ ଋକବେଦ ବୋଲିକରି କହୁ ।
ମଠରେ ପ୍ରକାଶ ମଠ ବୋଲିଣ ଅଛଇ । ୧୨ ।
ଋଷିରେ ଯେ କୃପାଜଳ ଅଛନ୍ତି ସେ ପୁଣ ।
କ୍ଷେତ୍ର ଯେ ଅଛଇ ସେହୁ ମଥୁରା ଯେ ଜାଣ । ୧୩ ।
ଦ୍ୱାରକା ଅଛଇ ସୁଖ କୈଳାସ ଯେ ପୁଣି ।
ଗୋମତୀ ଧାମରେ ସ୍ଥାନ ଶୁଣ ସାଧୁ ପ୍ରାଣୀ । ୧୪ ।
ସୁଖ ଯେ କୈଳାସ ବୃନ୍ଦାବନ ଯେ ଅଛଇ ।
ଇଷ୍ଟ ଅଟେ ପୁଷ୍ପକ ନନ୍ଦନୀ ରାଧା ଧାୟି । ୧୫ ।
କୃଷ୍ଣ ଉପାସନା ଯେ ଗୋପାଳ ମନ୍ତ୍ର ସାର ।
ଗରୁଡ଼ ବୋଲିଣ ଜାଣ ଦେବତା ଆମ୍ଭର । ୧୬ ।
ବେଦରେ ଯେ ଋକବେଦ ବୋଲି କରି କହୁ ।
ବର୍ଣ୍ଣ ଅଟେ ଗନ୍ଧର ଯେ ଶୁଣ ମନ ଦେଇ । ୧୭ ।
ବନରେ ଯେ ଦ୍ୱିତୀୟ ପ୍ରହର ଅଟେ ପୁଣ ।
ସଖା ଅଟେ ସୁଦାମ ହେ ହେତୁମନେ ଶୁଣ । ୧୮ ।
ଲଳିତା ସଖୀର ସେବା ଯୁଗ ସେ ଦ୍ୱାପର ।
ବ୍ରହ୍ମରନ୍ଧ୍ର ମୁଖରେ ଆନନ୍ଦ ମୁଖ ସୁର । ୧୯ ।
ସ୍ୱରକଳା ବର୍ଗରେ ଯେ ଊର୍ଦ୍ଧ୍ୱ କଳା କହୁ ।
ପଞ୍ଚମନ୍ତ୍ର ମଧ୍ୟରେଣ ଅକ୍ଷରଟି ଧାୟି । ୨୦ ।
ଚତୁର୍ଦ୍ଦିକ ମଧ୍ୟରେ ଯେ ଜାରଜ ଅଛଇ ।
ସ୍ୱରଖାନ ବର୍ଗରେ ଯେ ନରସ୍ୱର ହୋଇ । ୨୧ ।
କାଳଇଁ କୃଷ୍ଣାସ୍ତ୍ର ମନ୍ତ୍ର ସୁମରଣା କର ।
କୃଷ୍ଣ ସ୍ୱରେ ଯେ ସେ ଛଡ଼ ମନ୍ତ୍ରଙ୍କ ବର୍ଗର । ୨୨ ।
ଅନାହ ଯେ ଆଦ୍ୟମୂଳ ଓଙ୍କାର ଶବଦ ।
ହୁଙ୍କାର ଶବଦ ବିନ୍ଦୁ ପଞ୍ଚ ଯେ ଶବଦ । ୨୩ ।
କୃଷ୍ଣ ମନ୍ତ୍ର କୃଷ୍ଣ ସ୍ୱରେ ଅନାହ ଭଜନ ।
ବୃନ୍ଦାବନ ରାଧାକୃଷ୍ଣ କରୁଥିବ ଧ୍ୟାନ । ୨୪ ।

ଗୋଲୋକରେ ସୁଦାମ ଯେ ନାମ ମୋର ଜାଣ ।
ସତ୍ୟଯୁଗେ କୃପାଜଳ ନାମ ହୋଏ ପୁଣ । ୨୫ ।
ତ୍ରେତୟା ଯୁଗରେ ନଳ ଶ୍ରୀରାମ ଗହଣେ ।
ଦ୍ୱାପରେ ସୁଦାମ ନାମ ଗୋରୁ ରକ୍ଷି ବଣେ । ୨୬ ।
ନବଦ୍ୱୀପେ ସୁନ୍ଦର ଯେ ନନ୍ଦ ନାମ ମୋର ।
ଶ୍ରୀକୃଷ୍ଣ ଚଇତନ୍ୟ ପୁଣ ନଦୀଆ ଠାକୁର । ୨୭ ।
ବଉଦ୍ଧ ରୂପରେ ଜାତ ରଘୁ ଅରକ୍ଷିତ ।
ନେମ୍ବାଳ ସ୍ଥଳରେ ଜାତ ନାମ ମୋ ଅଚ୍ୟୁତ । ୨୮ ।
କୁଣ୍ଡି ନଗ୍ର ଗ୍ରାମେ ଜାତ ପଣୁପଢେ ହେଢ଼ ।
ବୀରଜା ମଧ୍ୟରେ ନାମ କେଶବ ଭଜାବ । ୨୯ ।
କେଶବ ନାମରେ ୬ପ କରବୁ ଆମ୍ଭେ ତ ।
କଳଙ୍କି ନାମ ଭଜନ ଏକାନ୍ତ ଥାନେ ତ । ୩୦ ।
ବଉଦ୍ଧ ଲୀଳାକୁ ବେଳେ ପୁରୁଷ ହୋଇଣ ।
ପଞ୍ଚ ପାଣ୍ଡବରେ କଳା ସହଦେବ ପୁଣ । ୩୧ ।
ପଞ୍ଚଭୂତେ ପୃଥ୍ୱୀରେ କଳାଏ ରହିଛୁ ।
ଜନ୍ମେ ଜନ୍ମେ କୃଷ୍ଣ ସଙ୍ଗେ ଜନମ ହେଉଛୁ । ୩୨ ।
ଶ୍ରୀକୃଷ୍ଣ କରୁଣା କଲେ ଶୂଦ୍ର କୁଳେ ଜାତ ।
ପ୍ରଭୁର ଆଜ୍ଞାରେ ତୁମ୍ଭେ ଗୋପ କୁଳେ ସୁତ । ୩୩ ।
ରହାସ ଯେ ଉପଦେଶ ପ୍ରାଣୀମାନେ ଦଅ ।
ଏ ଅଙ୍ଗ ଛାଡ଼ିଣ ପୁଣ ଅନ୍ୟ ଅଙ୍ଗ ନଅ । ୩୪ ।
ଅନ୍ୟଅଙ୍ଗ ଛାଡ଼ି ପୁଣ ଆଦ୍ୟ ଅଙ୍ଗ ଧର ।
କଳଙ୍କି ନାଥ ସଙ୍ଗତେ କରବ ବିହାର । ୩୫ ।
ରସିକ ଅନନ୍ତ ବାର ସନ୍ଦପ୍ ଗୋପାଳ ।
ତାହାଙ୍କର ପ୍ରଧାନ ରହାସ ଦାସ ମୂଳ । ୩୬ ।
ଖଣ ସସ୍ର ଯୋଗାରୂଢ଼ ଅନନ୍ତ ଯେ ପୁଣ ।
କୃଷ୍ଣଦାସ ବାର ରାମଚନ୍ଦ୍ର ଦାସ ଶୁଣ । ୩୭ ।

---

୩୭—୨-କର୍ଣ୍ଣଦାସ (ଖ),

ଷୋଳ ଷସ୍ତ୍ର ଗୋପସାର ଅଚ୍ୟୁତ ତ ମୁହିଁ ।
ଗୁପତ ଭକତ ଗୀତା ଭକ୍ତ ହିତେ କହି । ୩୮ ।
ସର୍ବ ମନ୍ତ୍ରାମନ୍ତ୍ର ଏହୁ ଗ୍ରନ୍ଥେ ଅଛୁ ପୁଣ ।
ଭେଦ ଦୀକ୍ଷା ପାଇଲେ ସେ ପାଇବ କାରଣ । ୩୯ ।
ଅଶଉଚ ଅଙ୍ଗକାଳେ କେବେ ନ ଛୁଇଁବ ।
ଅଛୁଡ଼ି ଶୁଦ୍ଧ ନୋହିଲେ ନଗେଲେ ରଖିବ । ୪୦ ।
ଜାଗତେ ସପନେ ଆଜ୍ଞା ଯେମନ୍ତ ହୋଇବ ।
ଶବଦ ହୁକୁମ ହେଲେ ଏ ଗ୍ରନ୍ଥ ପଢ଼ିବ । ୪୧ ।
ବଳାତ୍କାରେ ପଢ଼ିଲେ ଯେ ବଂଶ ହେବ ଷୟେ ।
ଆଜ୍ଞା ନୋହି ପଢ଼ିଲେ ଯେ କୁଷ୍ଟ ବ୍ୟାଧି ହୁଏ । ୪୨ ।
ନିତ ପ୍ରତି ଏ ଗ୍ରନ୍ଥକୁ ଦର୍ଶନ କରିବ ।
ମାସେ ପାଞ୍ଚ ଗୁରୁବାରେ ଭୋଗ ପଞ୍ଚା ଦେବ । ୪୩ ।
ଘୃତ ଦୀପ ସନ୍ଧ୍ୟାକାଳେ ଆଦରେ ଦେବ ।
ଜୁଆ ଯେ ଗୁଡ଼ଜଳ କଞ୍ଚା ଦୁଧରେ ପୂଜିବ । ୪୪ ।
ଇତି ଗୁରୁ ଭକ୍ତଗୀତା ଅଣାକ୍ଷର ଭକ୍ତେ ।
ଗୁପତେ ରଖିଲି ଏହା ପଠନ ନିମନ୍ତେ । ୪୫ ।
ଶ୍ରୀ ଗୁରୁ ପାଦକୁ ମୁହିଁ ବଳାଉଛୁ ଆଶ ।
ଶ୍ରୀଗୁରୁ କରୁଣା କଲେ ଫିଟେ ଭବ ପାଶ । ୪୬ ।
ପାମର ଅଚ୍ୟୁତ ଭବ ଜଳେ ପଡ଼ି ବଣା ।
ଶ୍ରୀଗୁରୁ ଶ୍ରୀ ବଇଷ୍ଣବ କର ଯେ କରୁଣା । ୪୭ ।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଏକତ୍ରିଂଶ ଗ୍ରନ୍ଥ ।



୪୧—୨-ଶବଦ ପଢ଼ ବୋଇଲେ (କ);

# ଦ୍ୱାତ୍ରିଂଶ ଛାନ୍ଦ

କୁଣ୍ଡି ଯେ ବଲନ୍ଦା ଗ୍ରାମ ବାରସାହି ଦେଶ ।
ମୂଢ଼ ନନ୍ଦ ଗୁପତ ହିଁ କରଅଛୁ ବାସ । ୧ ।
କେମନ୍ତ ସେ ବୃତବଧି ଷୋଡ଼ଶ ପ୍ରମାଣ ।
ସଂଶୟ ଲାଗିଲା ଗୁରୁ ଏ କଥା ତ ପୁଣ । ୨ ।
ଛଡ଼ ବୀଜ ବୃତଲଗ କେମନ୍ତ ଭଜନ ।
ଏକଥା ଶ୍ରୀମୁଖେ ଗୁରୁ କହିବା ଫେଡ଼ିଣ । ୩ ।
ହରେ ରାମକୃଷ୍ଣ ଷୋଡ଼ଶର ବୀଜ ଛନ୍ଦ ।
ଗୃହ ଯେ ସମ୍ପ୍ରଦା ବଧି ବର୍ତୁଗଲେ ଘେନ । ୪ ।
ବଲଭଦ୍ର ସୁଦର୍ଶନ ଅଟନ୍ତି ଏ ଦୁଇ ।
ହକାର ଯେ ସୁଦର୍ଶନ ସ୍ତମ୍ଭ ଯେ ଅଟଇ । ୫ ।
ରେ ଯେ ଅକ୍ଷର ବଲଭଦ୍ରଙ୍କୁ ସୁମର ।
କୃଷ୍ଣ ବେନି ଅକ୍ଷର ଯେ ଜଗତ ଠାକୁର । ୬ ।
ରାମ ବେନି ଅକ୍ଷର ଯେ ସୁଭଦ୍ରା ଅଟଇ ।
ସୃଷ୍ଟି ରୂପ ନନ୍ଦ ଦାସ ଶୁଣ ମନ ଦେଇ । ୭ ।
ଚନ୍ଦ୍ରାବଳୀ ବଳଭଦ୍ର ସୁଦର୍ଶନ ଦୃଷ୍ଟି ।
ଜଗତ ନାଥ ଶ୍ରୀକୃଷ୍ଣ ଭଦ୍ରା ରାଧା ହୋନ୍ତି । ୮ ।
ହରେ ବଲରାମ ଭଦ୍ରା ଜପ କୃଷ୍ଣ ଭକ୍ତ ।
ଶ୍ୟାମ ସୁଦର୍ଶନ ଗୃହ ଅଟଇ ଷଡ଼ ବୀଜ । ୯ ।
ହ୍ରାଂ ଶ୍ରୀଂ କ୍ଲୀଂ ନନ୍ଦ ଚତୁର୍ଦ୍ଧା ଯେ କହି ।
ଅଷ୍ଟ ଯେ ନାୟିକା ବେଢ଼ି ଅଛନ୍ତି ଏ ଧାଇଁ । ୧୦ ।
ସ କାରୁ ଲଳିତା ବୃନ୍ଦାବତୀ ଗୋପୀ ଦୁଇ ।
ହ କାରୁ ରଙ୍ଗ ଯେ ଦେବୀ ରତ୍ନରେଖା କହି । ୧୧ ।
କ କାରନ୍ତୁ ସୁଭଦ୍ରା ଯେ ପ୍ରିୟମ୍ବଦା ହୋଏ ।
ମନ୍ତ୍ରେ ରୁହଁ ଛଡ଼ ସଖୀ ଏମନ୍ତେଟି କହେ । ୧୨ ।

ହୁ କାର ଯେ ବଲଭଦ୍ର ନନ୍ଦ ମୁଁ କହୁ ।
ତର ସୁଦର୍ଶନ ଚଇତନ ମଠ ହୋଇ । ୧୩ ।
ସୁଭଦ୍ରା ସ୍ୱରୂପ ମଠ ବୋଲି କରି ଜାଣ ।
ପ୍ରକାଶ ମଠ ଯେ କୃଷ୍ଣ ଜଗନ୍ନାଥ ପୁଣ । ୧୪ ।
ଏମନ୍ତ ହୋଇଣ ଘରି ମଠ ପୁଣ କହୁ ।
ଶ୍ରୀବୃନ୍ଦାବନର ସ୍ତବ ଶୁଣ ମନ ଦେଇ । ୧୫ ।
ଚନ୍ଦ୍ରାବଲୀ ନନ୍ଦମଠ ବୋଲି କରି ଜାଣ ।
ଚଇତନ ମଠ ଯେ ଦୂତକା ପୁଣ ଶୁଣ । ୧୬ ।
ସ୍ୱରୂପ ମଠ ଯେ ପୁଣ ରାଧିକା ହୁଅନ୍ତ ।
ପ୍ରକାଶମତ ଭଗତ କୃଷ୍ଣଚନ୍ଦ୍ର ଚନ୍ତ । ୧୭ ।
ରାମବୀଜ ବେଦ ରାମାନନ୍ଦ ବୋଲି ଗୁଣ ।
କୃଷ୍ଣବୀଜ ଜଗନ୍ନାଥ ନମାନନ୍ଦ ଶୁଣ । ୧୮ ।
ହରେବୀଜ ମାଧ୍ୱାଚାର୍ଯ୍ୟ ବଲଭଦ୍ର ପୁଣ ।
ବିଷ୍ଣୁଶ୍ୟାମ ରେ ବୀଜ ସୁଦର୍ଶନ ଶୁଣ । ୧୯ ।
ବିଷ୍ଣୁଶ୍ୟାମ ମାଧ୍ୱାଚାର୍ଯ୍ୟ ଏଣୁଟି ଯୁଗଳ ।
ରାମାନନ୍ଦ ନମାନନ୍ଦ ଅଟନ୍ତି ଏ ମେଳ । ୨୦ ।
ସତ୍ୟଯୁଗେ ବାନ୍ଧଗଲେ ମୁନିମାନେ ମଠ ।
ତ୍ରେତୟା ଯୁଗରେ ମୁନି କରୁଥିଲେ ଭେଟ । ୨୧ ।
ଦ୍ୱାପର ଯୁଗରେ ଗୋପୀ ଗୋପାଳ ଜାଣିଲେ ।
କଳିଆଦ୍ୟେ ରାମାନନ୍ଦ ନାମ ବୋଲଇଲେ । ୨୨ ।
ନମାନନ୍ଦ ବିଷ୍ଣୁଶ୍ୟାମ ମାଧ୍ୱାଚାର୍ଯ୍ୟ କହୁ ।
ଏ ଚାରହେଁ ଏକ ଅଂଶ ଭିନ୍ନ ଭିନ୍ନ ନୋହୁ । ୨୩ ।
ସାମବେଦ ରାମାନନ୍ଦ ବୋଲି ପରମାଣ ।
ଋକ ବେଦ ନମାନନ୍ଦ ସାଧୁମାନେ ଶୁଣ । ୨୪ ।

---

୧୯—୧ ବିଷ୍ଣୁଶ୍ୟାମ ବୀଜଗୋଟି (ଖ)

କୃଷ୍ଣ ଶ୍ୟାମ ଅଥର୍ବ ସେ ବେଦ ବୋଲି କହୁ ।
ଯଜୁର୍ବେଦ ମାଧ୍ୱାଚାର୍ଯ୍ୟ ଶୁଣ ମନ ଦେଇ । ୨୫ ।
ଅନନ୍ତ ଶିଶୁ ସେ ରାମାନନ୍ଦ ବଇଷ୍ଣବ ।
ଯଶୋବନ୍ତ ଦାସ ମାଧ୍ୱାଚାର୍ଯ୍ୟ ବଇଷ୍ଣବ । ୨୬ ।
ବଳରାମ ଦାସ କୃଷ୍ଣ ଶ୍ୟାମ ଦାସ ହୋଇ ।
ନିମାନନ୍ଦ ବଇଷ୍ଣବ ଅଚ୍ୟୁତ ଅଟଇ । ୨୭ ।
ସୁବଳ ସଖା ଅଟନ୍ତି ବଳରାମ ଦାସ ।
ସୁବାହୁ ସଖା ସେ ଯଶୋବନ୍ତ ପରକାଶ । ୨୮ ।
ଦାସ ସଖା ଅନନ୍ତ ସେ ଶିଶୁ ପୁଣ ଜାଣ ।
ସୁଦାମ ସଖା ଗୋପରେ ଅଚ୍ୟୁତ ମୁଁ ପୁଣ ।। ୨୯ ।
ଅନନ୍ତ ଶିଶୁ ନାରଦ ମୁନି ସତ୍ୟେ ହୋଇ ।
ଯଶୋବନ୍ତ ଗାଗ୍ରବ ସେ ମୁନି ବୋଲି କହୁ । ୩୦ ।
ମାରକଣ୍ଡ ଋଷି ବଳରାମ ଦାସ ହୋଇ ।
ଅଚ୍ୟୁତ ଦାସ ସେ କୃପାଜଳ ଋଷି ମୁଁ ଇ । ୩୧ ।
ତ୍ରେତୟା ଯୁଗରେ ରାମଚନ୍ଦ୍ର ସଙ୍ଗେ ଜାତ ।
ବଳରାମ ଦାସ ସେ ସୁଷେଣ ହୋଇ ଖ୍ୟାତ । ୩୨ ।
ଜାମ୍ବବ ହୋଇଣ ଯଶୋବନ୍ତ ହେଲେ ନାମ ।
ଅନନ୍ତ ଶିଶୁ ଧଇଲେ ନଳ ବୋଲି ନାମ । ୩୩ ।
ନଳ ବୋଲି ଅଚ୍ୟୁତ ସେ ନାମ ହୋଏ ତହିଁ ।
ସତ୍ୟ ଯୁଗେ ସତ୍ୟ ଅବତାର ସାର ହୋଇ । ୩୪ ।
ସତ୍ୟେ ନାରାୟଣ ତ୍ରେତୟାରେ ରାମଚନ୍ଦ୍ର ।
ଦ୍ୱାପରରେ ନାମ ହୋଏ ଶ୍ରୀକୃଷ୍ଣ ସେ ଚନ୍ଦ୍ର । ୩୫ ।
ଶ୍ରୀ ଚୈତନ୍ୟ କଳିଯୁଗେ କୃଷ୍ଣ ହେଲେ ଜାତ ।
ତାଙ୍କ ସଙ୍ଗେ ପଞ୍ଚସଖା ହୋଇଲୁ ସେ ଜାତ । ୩୬ ।
ଅନନ୍ତ ସେ ଶିଶୁ ଅଭିରାମ ପୁଣ ହୋଇ ।
ଗଉରୀ ଦାସ ପଣ୍ଡିତ ବଳରାମ କହି । ୩୭ ।

ସୁବାହୁ ଅଟନ୍ତି ପୁଣି ଉଦ୍ଧବ ଯେ ଦାଉ ।
ସୁନ୍ଦରାନନ୍ଦ ଯେ ମୁହିଁ ଅଟଇ ଅଚ୍ୟୁତ । ୩୮ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଦ୍ୱାତ୍ରିଂଶ ଛାନ୍ଦ ।



## ତ୍ରୟତ୍ରିଂଶ ଛାନ୍ଦ

ସାମବେଦ ପଶ୍ଚିମ ଯେ ରାମାନନ୍ଦ କନ୍ଧ ।
ଚଇତନ ବ୍ରହ୍ମଚାରୀ ମଠ ଯେ ଅଟଇ । ୧ ।
ଚଇତନ ବ୍ରହ୍ମଚାରୀ ପଣ ନାଥ ଶିଷ୍ୟ ।
ହରେରାମ ହରେରାମ ମନ୍ତ୍ର ପରକାଶ । ୨ ।
ରାମ ରାମ ହରେ ହରେ ମନ୍ତ୍ର ପୁଣି କନ୍ଧ ।
ହରେକୃଷ୍ଣ ହରେକୃଷ୍ଣ ମନ୍ତ୍ର ଯେ ଅଟଇ । ୩ ।
କୃଷ୍ଣ କୃଷ୍ଣ ହରେ ହରେ ରାଧାନାମ ଧର ।
ଚଇତନ ମଠ ରାମାନନ୍ଦ ପନ୍ଥ ଧାର । ୪ ।
ଅସ୍ତ୍ରବେଦ ଦକ୍ଷିଣ ଶ୍ୟାମ ନନ୍ଦମଠ କନ୍ଧ ।
ରାଧେ କୃଷ୍ଣ ରାଧେ କୃଷ୍ଣ ମନ୍ତ୍ର ଯେ ଅଟଇ । ୫ ।
କୃଷ୍ଣ କୃଷ୍ଣ ରାଧେ ରାଧେ ସୁମରଣା କର ।
ରାଧେଶ୍ୟାମ ରାଧେଶ୍ୟାମ ମନ୍ତ୍ରରେ ବିସ୍ତର । ୬ ।
ଶ୍ୟାମ ଶ୍ୟାମ ରାଧେ ରାଧେ ମନ୍ତ୍ର ଯେ ବର୍ଣ୍ଣ ।
ନନ୍ଦ ବ୍ରହ୍ମଚାରୀ ବୋଲି ମଠ ଯେ ପ୍ରକାଶ । ୭ ।
ଯଜୁର୍ବେଦ ସ୍ୱରୂପ ଯେ ମଠ ବୋଲି ଜାଣ ।
ମାଧ୍ୱାଚାର୍ଯ୍ୟ ବୋଲି କର ବୈଷ୍ଣବ ଯେ ପୁଣ । ୮ ।
ଆତ୍ମାରାମ ପରମାତ୍ମା ରାମ ବୋଲି ଶୁଣି ।
ତତ୍ତ୍ୱ ନିରଞ୍ଜନ ଯେ ତାରକ ରାମ ପୁଣି । ୯ ।
କାଶୀକ୍ଷେତ୍ର ବାରାଣାସୀ ସ୍ଥାନ ଯେ ଭଜନ ।
ତତ୍ତ୍ୱ ନିରଞ୍ଜନ ତାରକ ମନ୍ତ୍ର ରାମ । ୧୦ ।
ସ୍ୱରୂପ ବ୍ରହ୍ମଚାରୀ ଯେ ମଠ ପରମାଣ ।
ଏ ମଠରେ ବୈଷ୍ଣବ ମାଧବାଚାର୍ଯ୍ୟ ପୁଣ । ୧୧ ।

ଶୁକଦେବ ପ୍ରକାଶ ଯେ ମଠ ବୋଲି କହି ।
ନିତ୍ୟାନନ୍ଦ ବଇଷ୍ଣବ ଏ ମଠକୁ ଧ୍ୟାୟି । ୧୨ ।
କୃଷ୍ଣାୟ ଯେ ଗୋବିନ୍ଦାୟ ମନ୍ତ୍ରକୁ ଭଜନ ।
ଗୋପୀଜନ ବଲ୍ଲଭାୟ ନମ କରି ଧ୍ୟାନ । ୧୩ ।
ପ୍ରକାଶ ଯେ ବ୍ରହ୍ମଗୃହ ମଠରେ ଯେ ବାସ ।
ନିତ୍ୟାନନ୍ଦ ଗୋସାଇଁ ଯେ ହୋଇଲେ ପ୍ରକାଶ । ୧୪ ।
ଘର ମଠେ ଘର ବଇଷ୍ଣବ ଯେ ହୋଇଣ ।
କଳି ଜନ ନିମନ୍ତ୍ରେଣ ମାଳାଧାରି ପୁଣ । ୧୫ ।
ଚଇତନ୍ୟ ବ୍ରହ୍ମଗୃହ ପଶ୍ଚିମରେ ଲଂଘେ ।
ନନ୍ଦ ବ୍ରହ୍ମଗୃହ ଯେ ଉତ୍ତରଦିଗେ ରହେ । ୧୬ ।
ସ୍ୱରୂପ ବ୍ରହ୍ମଗୃହ ଯେ ଦକ୍ଷିଣକୁ ଲମ୍ବେ ।
ପ୍ରକାଶ ଯେ ବ୍ରହ୍ମଗୃହ ପୂର୍ବଦିଗେ ରହେ । ୧୭ ।
ପଶ୍ଚିମଦିଗ ଦକ୍ଷିଣ ଶଙ୍କର ଯେ ରହି ।
ପୂର୍ବଦିଗ ବ୍ରହ୍ମା ପୁଣ ଜଗିଣ ଅଛଇ । ୧୮ ।
ଦକ୍ଷିଣଦିଗ ଯେ ବିଷ୍ଣୁ ଜଗିଣ ରହିଲେ ।
ଆଦିଶକ୍ତି ଈଶ୍ୱର ଯେ ଦିଗରେ ବସିଲେ । ୧୯ ।
ଏହି ଘର ଜନକୁ ଯେ ପାଇବଟି ଜାଣି ।
ତେବେ ସିନା ଜାଣିବ ହେ ବୈଷ୍ଣବଟି ପୁଣି । ୨୦ ।
ଏହା ନ ଜାଣିଣ ଯେହୁ ବନ୍ଧିଥାନ୍ତି ମାଳ ।
ଅଙ୍ଗକୁ ଯେସନେ ନ ଦିଶଇ ଯେ ସକଳ । ୨୧ ।
ପଶ୍ଚିମ ଦିଗରେ ଅଛୁ ନବଧା ଭଗତ ।
ବାତ୍ସଲ୍ୟ ଭଗତ ଯେ ଉତ୍ତରଦିଗେ ଥାନ୍ତି । ୨୨ ।
ଶାନ୍ତିମ ଭଗତ ପୁଣ ଦକ୍ଷିଣରେ ରହେ ।
ସଖା ସେବା ଭଗତ ଯେ ପୂର୍ବଦିଗେ ଥାଏ । ୨୩ ।
ନବଗୃଣ ବନ୍ଧିଛନ୍ତି ଶଙ୍କର ପଶ୍ଚିମ ।
ହେବା ସଖା ଭାବ ଯେନ ବ୍ରହ୍ମା ପୂର୍ବେ ରମ୍ୟ । ୨୪ ।

ସତ ବସ୍ତ୍ର ରହିଛନ୍ତି ଦକ୍ଷିଣ ଦିଗର ।
ବାଳାମାନେ ରହିଛନ୍ତି ଉତ୍ତର ବଗ୍ଧିର । ୨୫ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆଦିଶକ୍ତି କହି ।
ଏ ଚାରି ଥାନ ଭେଦିଲେ ଚାରି ଡାସ ହୋଇ । ୨୬ ।
ପଶ୍ଚିମ ଦିଗରେ ନଦୀ ଗଙ୍ଗା ନାମ ବହେ ।
ପବଦିଗେ ମହୋଦଧି ନାମ ପୁଣ ହୋଏ । ୨୭ ।
ଉତ୍ତର ଦିଗରେ ଶ୍ୱେତ ଗଙ୍ଗା ନଦୀ ନାମ ।
ଦକ୍ଷିଣେ କାଳନ୍ଦୀ ହ୍ରଦ ବୋଲିକରି ନାମ । ୨୮ ।
ଏ ଚାରି ନଦୀରେ ସ୍ନାନ ଯେବେ କରିପାରେ ।
ବଇକ୍ଷ୍ଣବ ଅଟନ୍ତି ଯେ ଏ ନର ସଙ୍ଗରେ । ୨୯ ।
ସ୍ୱରୂପ ବ୍ରହ୍ମଚାରୀଙ୍କ ଅଜପା ନଗର ।
ନନ୍ଦ ବ୍ରହ୍ମଚାରୀଙ୍କର ଗୋପନଗ୍ର ସାର । ୩୦ ।
ଗୋଲେକ ନଗ୍ର ପ୍ରକାଶ ବ୍ରହ୍ମଚାରୀ ରହି ।
ଚଇତନ ବ୍ରହ୍ମଚାରୀ ନଦୀଆ ନଗ୍ରହି । ୩୧ ।
ରାମଚନ୍ଦ୍ର ଦେବ ବୋଲି ସ୍ୱରୂପ ଭଜିଲେ ।
ନୀଳ ଯେ ମାଧବ ମୂର୍ତ୍ତି ପ୍ରକାଶ ଗୁଣିଲେ । ୩୨ ।
ନନ୍ଦ ବ୍ରହ୍ମଚାରୀ କୃଷ୍ଣଚନ୍ଦ୍ର ଦେବ ପୁଣି ।
ଚଇତନ ବ୍ରହ୍ମଚାରୀ ଗୋପୀଜନ ଗୁଣି । ୩୩ ।
ଗୋପୀଜନବଲ୍ଲଭସ୍ୱ ରୂପକୁ ଭଜନ ।
ପାଇଲେ ପୂଜନ ଏହି ଦୀକ୍ଷା ମନେ ଘେନ । ୩୪ ।
ସତ୍ୟଯୁଗ ଭଜିଲେ ଯେ ରାମାନନ୍ଦ ପୁଣ ।
ତ୍ରେତ୍ୟା ଯୁଗକୁ ଜଲେ ମାଧ୍ୱାଚାର୍ଯ୍ୟ ଶୁଣ । ୩୫ ।
ଦ୍ୱାପର ଯୁଗକୁ ନିମାନନ୍ଦ ଯେ ରକ୍ଷିଣ ।
ବିଷ୍ଣୁ ଶ୍ୟାମ କଳିଯୁଗ ଆରାଧିଲେ ପୁଣ । ୩୬ ।
ପ୍ରଥମ ପ୍ରହର ରାମାନନ୍ଦଙ୍କ ସାଗର ।
ଦ୍ୱିତୀୟ ପ୍ରହର ନିମାନନ୍ଦ ଯେ ସୁନ୍ଦର । ୩୭ ।

ତୃତୀୟ ପ୍ରହର ମାଧ୍ୟାହ୍ନ ସେ ସୁମର ।
ବଷ୍ଟି ଶ୍ୟାମ ଚତୁର୍ଥ ସେ ପ୍ରହରକୁ ଧର । ୩୮ ।
ସପ୍ତ ଦବା ସେବା ସେ ଭଜନ କଲେ ମନ ।
ସିଂହଦ୍ୱାରେ ସିଂହସଖା କୃଷ୍ଣ ପାଦେ ଧ୍ୟାନ । ୩୯ ।
ପଶ୍ଚିମେ ସ୍ୱରୂପା ନାମ୍ନୀ ଅଛନ୍ତି ଗୋପୀକା ।
ପୂର୍ବ ଦଗେ ପ୍ରେମ-ରୂପା ଅଛନ୍ତି ନାୟିକା । ୪୦ ।
ଉତ୍ତରେ ସେ ରୂପାନାମେ ଅଛଇ ଗୋପୀଏ ।
ଦକ୍ଷିଣ ଦଗେ ଚରୂପା ଗୋପୀ ଏକ ରହେ । ୪୧ ।
ଦ୍ୱାର ଜଗି ରହନ୍ତି ସେ ରାଧା କୃଷ୍ଣ ଥାନ ।
ସାଧୁଜନମାନେ ଏହୁ ଗୁରୁ ହେତୁ ଶୁଣ । ୪୨ ।
ପଶ୍ଚିମ ନୈଋତ ଦଗେ ଭଦ୍ରା ଛନ୍ତି ରହି ।
ବସ୍ତ୍ର ଆଦ ସେବାମାନ ତାଙ୍କଠାରେ ଥାଇ ୪୩ ।
ବିଶାଖା ଗୋପିକା ପୂର୍ବ ଦଗରେ ସେ ସେବା ।
ରତ୍ନମାଳା ଅଲଙ୍କାର ସେହୁ ଯୋଗାଇବା । ୪୪ ।
ଶ୍ରୀମତୀ ଗୋପୀଙ୍କ ସେବା ଉତ୍ତର ଆଗେଣ ।
ସ୍ୱମରର ସେବାମାନ ତାଙ୍କ ହସ୍ତେ ପୁଣ । ୪୫ ।
ଦକ୍ଷିଣ ଦଗରେ ପଦ୍ମା ଗୋପୀଏ ରହଣ ।
ଷଡ଼ରସ ଭୋଜନ ସେ କରାବନ୍ତି ପୁଣ । ୪୬ ।
ସ୍ୱର ସେବା ସ୍ୱର ଦଗେ କରନ୍ତି ସେ ରହି ।
ସ୍ୱର ମଠ ସେବା ସ୍ୱର ଦଗେ ପୁଣ ବନ୍ଧି । ୪୭ ।
ପୂର୍ବର ସମ୍ମୁଖେ ଛନ୍ତି ଲଳିତା ସେ ପୁଣ ।
ସୁବର୍ଣ୍ଣ ପରସ୍ତେ ବର୍ଣ୍ଣ ଅଟଇ ସେ ଶୁଣ । ୪୮ ।
ପୀତ ସେ ବସନ ପିନ୍ଧି ଶ୍ରୀକୃଷ୍ଣଙ୍କ ସେବା ।
ତାମ୍ବୁଲ ଭୋଜନ ସେବା ନିରନ୍ତରେ ଦେବା । ୪୯ ।
ସୁଜନ ଜନ ଜାଣନ୍ତି ଏଥିର ବିସ୍ତର ।
ବ୍ରହ୍ମା ସ୍ତୁତି କରୁଅଛୁ ରହି ନିରନ୍ତର । ୫୦ ।

ତାମ୍ରମୁଖୀ ସ୍ତୁତି ଯେ ପଶ୍ଚିମ ଦିଗେ କରେ ।
ଆନନ୍ଦ ମୁଖରେ ପୂର୍ବ ଦିଗେ ସ୍ତୁତି ଧରେ । ୫୧ ।
ଉତ୍ତର ଦିଗରେ ନନ୍ଦ ମୁଖେ ସ୍ତୁତି କର ।
ଧର୍ମ ମୁଖେ ଦକ୍ଷିଣ ଯେ ଦିଗରେ ସୁମର । ୫୨ ।
ପଶ୍ଚିମ ଯେ ମୁଖ ଅଟେ ଶୁକଳ ଯେ ବର୍ଣ୍ଣ ।
ଗୌର ଅଟଇ ପୁଣ ପୂର୍ବର ବଦନ । ୫୩ ।
ଉତ୍ତର ଦିଗର ମୁଖ ଶ୍ୱେତ ବର୍ଣ୍ଣ ଶୋଭୁ ।
ନୀଳବର୍ଣ୍ଣ ଦକ୍ଷିଣର ବଦନ ଅଟଇ । ୫୪ ।
ରାମ ବୋଲି ସ୍ତୁତି କରେ ଶୁକଳ ମୁଖରେ ।
ଗଉର ମୁଖରେ କୃଷ୍ଣ ନାମ ଗୋଟି ଧରେ । ୫୫ ।
ହରେ ଯେ ଶବଦେ ଦକ୍ଷିଣରେ ନୀଳ ମୁଖ ।
ଶ୍ୱେତବର୍ଣ୍ଣ ଉତ୍ତର ଦିଗରେ ଶ୍ୟାମ ଦେଖ । ୫୬ ।
ଏମନ୍ତେ ଷୋଡ଼ଶ ସ୍ୱର ମୁଖେ ବ୍ରହ୍ମା ଧର ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ ସ୍ୱର । ୫୭ ।
ସ୍ଥାବର ଚଉଦ କୋଟି ପଶ୍ଚିମୁ ଜନମ ।
ଚଉଦ କୋଟି ଯେ ନର ପୂର୍ବ ଦିଗ ସ୍ଥାନ । ୫୮ ।
ପତଙ୍ଗ ଚଉଦ କୋଟି ଉତ୍ତରରୁ ହୋଏ ।
ଚଉଦ କୋଟି ଯେ କୀଟ ଦକ୍ଷିଣୁ ଉଦୟେ । ୫୯ ।
ଜୀବ ଜନ୍ତୁ ଯେ ଛପନ କୋଟି ଜାତ କରେ ।
ଆତ ଘାତ କରୁଥାନ୍ତି ଏହୁ ଯେ ସଂସାରେ । ୬୦ ।
କୋଡ଼ିଏ ଲକ୍ଷ ସ୍ଥାବର ଚଉଦରୁ ସାର ।
ଦେଢ଼ଶ କୋଟି ଉତ୍ତମ ନରରୁ ବାହାର । ୬୧ ।
ଚଉଦ କୋଟିରୁ ସାର କୀଟ ନବ ଲକ୍ଷ ।
ଦଶଶ ଲକ୍ଷ ପତଙ୍ଗ ଚଉଦରୁ ବାଛ । ୬୨ ।

---

୬୧—୧ କୋଟିଏ ଲକ୍ଷ (କ ;

ଷୋଡ଼ଏ ଲକ୍ଷ ସ୍ଥାବରୁ ଗୃଣ ଲକ୍ଷ ସାର ।
ବେଢ଼ଶ କୋଟି ନରରୁ ଗୃଣଲକ୍ଷ ଧର । ୭୩ ।
କୃମି ଜନ୍ତୁ ଅଟନ୍ତି ଯେ ଏଗାର ଲକ୍ଷଇ ।
ପକ୍ଷୀ ଜନ୍ତୁ ଦଶଲକ୍ଷ ଜନମ ଯେ ହୋଇ । ୭୪ ।
ପଶୁ ଯେ ହୃଦରୁ ଜାତ କୃମି ଦକ୍ଷିଣୁ ତ ।
ଛପନ କୋଟି ଯେ ଜାତ ଏମନ୍ତ ହୋଇତ । ୭୫ ।
ଦେବଗଣ ନବ କୋଟି ପଶ୍ଚିମୁ ଉଦୟେ ।
ମାନବ ଯେ ଗୃଣଲକ୍ଷ ପୂର୍ବ ଦିଗୁଁ ହୋଏ । ୭୬ ।
ଦକ୍ଷିଣୁ ଯେ ନବଲକ୍ଷ କୀଟ ପୁଣ ହୋଇ ।
ଏଗାର ଲକ୍ଷ ଯେ ଶିବ ହୃଦରେ ଅଛଇ । ୭୭ ।
ଆଦ ଯେ ଅନନ୍ତ ବୋଲି ଯୁଗ ଭିଆଇଲେ ।
ନୀଳାମ୍ବର ବୋଲି ବ୍ରହ୍ମା ନାମ ଯେ ଭଣିଲେ । ୭୮ ।
ଆଦ ଯେ ଅନନ୍ତ ଯୁଗ ଶେଷ ପୁଣ ଗଲା ।
ସତ୍ୟ ବୋଲି ଯୁଗ ଗୋଟା ପୁଣ ଭିଆଇଲା । ୭୯ ।
ତ୍ରେତୟା ଯେ ଯୁଗ ବୋଲି କଲେ ପରକାଶ ।
ଦ୍ୱାପର ଯୁଗ ବୋଲିଣ ହୋଇଲାକ ଶେଷ । ୮୦ ।
କଳିଯୁଗ ବୋଲି କଲ ଯୁଗ ଯେ ଭିଆଣ ।
ରାମାନନ୍ଦ ନିମାନନ୍ଦ ବଇଷ୍ଣବ ଗଣ । ୮୧ ।
ମାଧ୍ୱାଚାର୍ଯ୍ୟ ବିଷ୍ଣୁ ଶ୍ୟାମ ଗୃହି ଭେକ ଧାରୀ ।
ଏ ଭେଦ ଜାଣିଲେ ଦାସ ଗଣରେ ବିଚାରି । ୮୨ ।
ରାମାନନ୍ଦ ହନୁମାନ ଦେବତା ଭଜିଲେ ।
ନିମାନନ୍ଦ ଗରୁଡ଼ ଦେବତା ଆରାଧିଲେ । ୮୩ ।
ବିଷ୍ଣୁ ଶ୍ୟାମ ବରୁଣ ଦେବତା କଲେ ସାର ।
ମାଧ୍ୱାଚାର୍ଯ୍ୟ ଦେବତା ଯେ ହଂସର ବିଚାର । ୮୦ ।

୭୪—୧ ଗରୁଡ଼ ଦେବତା (କ); ୭୪—୨ ହରଷ ବିଚାର (କ);

ରାମ ତାରକ ମନ୍ତ୍ର ଯେ ରାମାନନ୍ଦ ଧର ।
ନିମାନନ୍ଦ ଗୋପାଳ ଯେ ମନ୍ତ୍ରକୁ ସୁମର । ୭୫ ।
ମାଧ୍ୱାଚାର୍ଯ୍ୟ ବିଷ୍ଣୁ ହଂସ ମନ୍ତ୍ରକୁ ଭଜନା ।
ବିଷ୍ଣୁ ଶ୍ୟାମ ତୁଳସୀ ଯେ ମନ୍ତ୍ର ଉପାସନା । ୭୬ ।
ରାମାନନ୍ଦ ଅଯୋଧ୍ୟା ଯେ କ୍ଷେତ୍ରକୁ ଭ୍ରମଣ ।
ନିମାନନ୍ଦ ମଥୁରା ଯେ କ୍ଷେତ୍ରକୁ ବିଚାର । ୭୭ ।
ମାଧ୍ୱାଚାର୍ଯ୍ୟ ଅନନ୍ତ ଯେ କ୍ଷେତ୍ରକୁ ଗୁଣିଣ ।
ବିଷ୍ଣୁ ଶ୍ୟାମ ବିଷ୍ଣୁକାଞ୍ଚୀ କ୍ଷେତ୍ରକୁ ଧରଣ । ୭୮ ।
ରାମାନନ୍ଦ ଧନୁକ ଯେ ତୀର୍ଥକୁ ଗୁଣିଲେ ।
ନିମାନନ୍ଦ ଗୋମତୀତୀର୍ଥକୁ ଯେ ଧଇଲେ । ୭୯ ।
ନଇମିଷା ରମ୍ୟ ଧାମ ମାଧ୍ୱାଚାର୍ଯ୍ୟ ଧରେ ।
ବିଷ୍ଣୁ ଶ୍ୟାମ ଶ୍ୱେତଗଙ୍ଗାତୀର୍ଥକୁ ସୁମରେ । ୮୦ ।
ରାମ ବେଦ ଅକ୍ଷର ଯେ ରାମାନନ୍ଦ ଧରେ ।
କୃଷ୍ଣ ବେଦ ଅକ୍ଷର ଯେ ନିମାନନ୍ଦ ସ୍ମରେ । ୮୧ ।
ଶ୍ୟାମ ବେଦ ଅକ୍ଷର ଯେ ବିଷ୍ଣୁ ଶ୍ୟାମ ଧରି ।
ହରେ ବେଦ ଅକ୍ଷର ଯେ ମାଧ୍ୱାଚାର୍ଯ୍ୟ ସ୍ମର । ୮୨ ।
ଏମନ୍ତେଣ ଷୋଡ଼ଶ ଉଚ୍ଚାର ବୀଜ ସ୍ୱର ।
ପାଇଲେ ସୁଜନ ଜନେ ଏଥୁ ଦୀକ୍ଷା ଧର । ୮୩ ।
ଚାରି ଭାଗ ଧରିବ ଯେ ପୁଣ ଚକ୍ର କରି ।
ପୁର୍ବ ଯେ ପଶ୍ଚିମ ବେଦ ଦାଗ ହେବ ସରି । ୮୪ ।
ଉତ୍ତର ଦକ୍ଷିଣ ପୁଣ ହୋଇବାକ ଦୁଇ ।
ଅଷ୍ଟାକ୍ଷର ବସିବ ଯେ ଚାରି ଭାଗ ହୋଇ । ୮୫ ।
ହରେ ବେଦ ଅକ୍ଷର ଯେ ଦକ୍ଷିଣେ ବସାଇ ।
ରାମ ବେଦ ଅକ୍ଷର ଯେ ପଶ୍ଚିମରେ ଦେଇ । ୮୬ ।
କୃଷ୍ଣ ବେଦ ଅକ୍ଷର ଯେ ପୂର୍ବଭାଗେ ସ୍ଥାନ ।
ଉତ୍ତର ଭାଗରେ ବେଦ ଅକ୍ଷର ଯେ ଶ୍ୟାମ । ୮୭ ।

ଅଗ୍ନି କୋଣେ ବସାଇବ ହରେ ବୀଜ ପୁଣ ।
ରାମ ବୀଜ ନଇଋତେ ବସାଇଣ ଗୁଣ । ୮୮ ।
କୃଷ୍ଣ ବୀଜ ବସାଇବ ଐଶାନ୍ୟର ଭାଗେ ।
ଶ୍ୟାମ ଯେ ବସିବ ପୁଣ ବାୟୁବ୍ୟର ଭାଗେ । ୮୯ ।
ଏମନ୍ତେଣ ମନ୍ତ୍ରବଧି ସ୍ଥାପିବ ଯେ ପୁଣ ।
ଶିଷ୍ୟର ଦର୍ଶନେ ହେବ ଭଗତ କାରଣ । ୯୦ ।
ଶ୍ୱେତ ରଙ୍ଗ କଳା ଶ୍ୟାମ ଗୃଣ ବସ୍ତ୍ର ଦେବ ।
ଧବଳ ଲେଖନ ଧରି ଶିଷ୍ୟକୁ କହିବ । ୯୧ ।
ଓଁକାର ଅଧଭାଗେ ହକାର ଅଛଇ ।
ଓଁକାର ମଣ୍ଡଳ ଗୋଟି ଶ୍ୟାମ ବୋଲି କହି । ୯୨ ।
ଅର୍ଦ୍ଧଚନ୍ଦ୍ର ରାମ ବୀଜ ଅଛଇଟି ପୁଣ ।
ବିନ୍ଦୁ କୃଷ୍ଣ ଅଛଇଟି ସାଧୁମାନେ ଗୁଣ । ୯୩ ।
ଅର୍ଦ୍ଧ ରାଧା ବିନ୍ଦୁ କୃଷ୍ଣ ବୋଲି କରି କହି ।
ଓଁକାର ଆଦ୍ୟ ଭାଗ ପୁରୁଷଟି ହୋଇ । ୯୪ ।
ତକାରକୁ ପ୍ର ସ୍ତ୍ରୀ ବୋଲି କରି ଜାଣ ପୁଣ ।
ଏଣୁ ଯେ ଅଣ୍ଡିର ମାଇ ମନ୍ତ୍ର ଅଟେ ଶୁଣ । ୯୫ ।
ଅନ୍ତରେ ଯେ ନନ୍ଦ ବୋଲି କରି ସାହା କହି ।
ବିଷ୍ଣୁ ଶ୍ୟାମ ବଇଷ୍ଣବ ଏ ମଠରେ ରହି । ୯୬ ।
ନାରାୟଣ ସ୍ୱାହା ବୋଲି ମନ୍ତ୍ର ସୁମରଣ ।
ବିଷ୍ଣୁ ଶ୍ୟାମ ବଇଷ୍ଣବ ଏମନ୍ତ ଯେ ଜାଣ । ୯୭ ।
ସାମବେଦ ଚଇତନ ମଠ ଯେ ଅଛଇ ।
ରାମାନନ୍ଦ ବଇଷ୍ଣବ ଏ ମଠେ ଅଛଇ । ୯୮ ।
କାଳାଇଁ କୃଷ୍ଣାସ୍ତୁ ବୀଜ ମନ୍ତ୍ର ଯେ ଧଇଲେ ।
ରାମାନନ୍ଦ ବଇଷ୍ଣବ ଏ ମଠ ଗୁଣିଲେ । ୯୯ ।

---

୯୬—୧ ଅସ୍ତ୍ରବେଦ (ଖ) ;

ଯଜୁର୍ବେଦ ସ୍ୱରୂପ ଯେ ମଠ ବୋଲି ଜାଣ ।
ମାଧ୍ୱାଚାର୍ଯ୍ୟ ବୈଷ୍ଣବ ଏ ମଠେ ପ୍ରମାଣ । ୧୦୦ ।
ଏହି କାଳେ ନାରାୟଣ ସୁମରଣ କର ।
ମାଧ୍ୱାଚାର୍ଯ୍ୟ ବୈଷ୍ଣବ ଏମନ୍ତ ବିସ୍ତର । ୧୦୧ ।
ଋକବେଦ ପ୍ରକାଶ ଯେ ମଠ ପଞ୍ଚମାଣ ।
ନିମାନନ୍ଦ ବୈଷ୍ଣବ ଏଥିରେ ଯେ ଜାଣ । ୧୦୨ ।
ଏହି କାଳହିଁ ସ୍ୱାହା ରାମ ନାମ ବୋଲେ ।
ମନ୍ତ୍ରର ବୀଜମାନ ଏମନ୍ତ ଯେ କଲେ । ୧୦୩ ।
ନାରାୟଣ ତାରକ ଯେ ଗୋପାଳ ମନ୍ତ୍ରରେ ।
ହରେ ଯେ ଷୋଡ଼ଶ ବର୍ଣ୍ଣ ଚାରି ପରକାରେ । ୧୦୪ ।
ଚାରି ମଠ ଚାରି ମନ୍ତ୍ର ବିଚାରି ଭଜିଲେ ।
ରାମାନନ୍ଦ ବିଷ୍ଣୁସ୍ୱାମୀ ମାଧ୍ୱାଚାର୍ଯ୍ୟ କଲେ । ୧୦୫ ।
ନିମାନନ୍ଦ ବୋଲିଣ ଯେ ଚାରି ପୁଣି କହି ।
ଚାରି ଯେ ସମ୍ପ୍ରଦା ବର୍ଣ୍ଣ ଚାରି ମଠ ହୋଇ । ୧୦୬ ।
ସତ୍ୟଯୁଗେ ନାରାୟଣ ମନ୍ତ୍ର ଅଟେ ସାର ।
ତ୍ରେତୟା ଯୁଗରେ ସାର ତାରକ ମନ୍ତ୍ର । ୧୦୭ ।
ଦ୍ୱାପର ଯୁଗରେ ସାର ଗୋପାଳ ମନ୍ତ୍ରହିଁ ।
କଳିଯୁଗେ ଷୋଡ଼ଶ ଯେ ମନ୍ତ୍ରସାର କହି । ୧୦୮ ।
ଆଦ୍ୟ ଯେ ଅନନ୍ତ ଯୁଗେ ଏକାକ୍ଷର ସାର ।
ଏକାକ୍ଷରୁ ଷରୁ ଅଛୁ ଏ ପାଞ୍ଚ ଅକ୍ଷର । ୧୦୯ ।
ସତ୍ୟ କଳିଯୁଗେ ସାର ସମାଧି ଭଜନ ।
ଅଣାକ୍ଷର କ୍ଷରିଲେ ଯେ ସମାଧିର ସ୍ଥାନ । ୧୧୦ ।
ଅଣାକ୍ଷର ଭଜିବେ ଯେ ସତ୍ୟ କଳି ବେଳେ ।
ଚାରି ପଥ ମିଳି ଚୋଳ ଭାଙ୍ଗିବ ଯେ ଠୂଳେ । ୧୧୧ ।

---

୧୦୧—୧ ଓଁ କ୍ଳୀଂ (ଖ) ;

ଅଣ ଯେ ଅନନ୍ତ ପଥ ହୋଇବ ଉଆଣ ।
ଅହଲ୍ୟା ବାଦ ନ ଥିବ ସକଳ ଦୁନ୍ଦେଣ । ୧୧୨ ।
କାଲାଛ୍ର ଭୁଅ ଭେଦବେ ସମାଧିରେ ଦୃଢ଼ ।
ଯୁପ୍ପା କ୍ୟୋତ ଆଶ୍ରିସିବେ ସାଧିବେ ଅବାଡ଼ । ୧୧୩ ।
ଗ୍ଭରବେଦ ଅଷ୍ଟାଦଶ ପୁରାଣ କଣ୍ଟାଣି ।
ନବଖଣ୍ଡ ବ୍ୟାକରଣ ଗୀତା ଗ୍ରନ୍ଥ ପୁଣି । ୧୧୪ ।
ଛଡ଼ ଶାସ୍ତ୍ର ଭାଗବତ ସବଘରେ ଥିବ ।
ଚଉତିଶା ଚଉପଦୀ ସନ୍ତମାନ ହେବ । ୧୧୫ ।
ନବତାଲ ଛତିଶ ଯେ ରାଗ ପରକାଶ ।
ମାଦଲ ଖୋଲ ଯେ ତାଲ କର୍ତ୍ତାଲର ରସ । ୧୧୬ ।
ଅମୃତ ଶାରଙ୍ଗୀ ବୀଣା ଡମ୍ଫ ଯେ ଖଞ୍ଜଣି ।
ଶଙ୍ଖ ସିଂଘା ମୁରଲୀ ଯେ ବେଣୁ ବାଦ୍ୟ ପୂର । ୧୧୭ ।
ତରାଶ ଚୁଲ ଝାଲେଶ ଝାଇଆ ଗ୍ଭମର ।
ଅଭସ୍ତ୍ର କଲଙ୍କି ବେଲେ ଭକ୍ତଙ୍କ ବନ୍ଧାର । ୧୧୮ ।
ଓଡ଼ରାଷ୍ଟ୍ର ମଧ୍ୟେ ହରି କରବେ ବହାର ।
ପରମ ସୁଖ ଲଭବେ ଭଗତ ସଂସାର । ୧୧୯ ।
ହନୁଆନ ପବନ ମଧୁ ବାଲକ ଅନନ୍ତ ।
ଯାଦବ ସୁଦାମ ବସ୍ତ୍ର ଗୋବନ୍ଦ ଶୁଣ ତ । ୧୨୦ ।
ମୁକୁନ୍ଦ ମଥୁରା ବୃନ୍ଦାବନ ଯେନ ଚନ୍ଦ୍ର ।
ଲୁମ୍ଭେ ବାର ଗୋପପୁତ ରାହାସରେ ରତ । ୧୨୧ ।
କଚ୍ଛପନ ପୃଥ୍ୱୀ ଫେର ଅନ୍ୟ ଅଙ୍ଗ ଧର ।
ଠନମାଶା ଦେଇ କର ତ କାର ସୁମର । ୧୨୨ ।
ନବ ମାତ୍ରା ଦେଇକର ଲ କାର ଗୁଣିବ ।
ଚ କାରରେ ନ କାର ଯେ ଅକ୍ଷର ବସିବ । ୧୨୩ ।
ଏ ଅଙ୍ଗ ସଙ୍ଗରେ ପୁଣ ଜନମ ହୋଇବ ।
ଆଠ ମାତ୍ରା ଦେଇ ପୁଣ କ କାର ଧରିବ । ୧୨୪ ।

ସ କାର ସଙ୍ଗତେ ପୁଣ ବସିବ ବ କାର।
ସେ ଅଙ୍କ ସଙ୍ଗତେ ପୁଣ କରିବ ବିସ୍ତାର । ୧୨୫ ।
ଉକ୍ତ ଅଙ୍କ ଧରିବାକୁ ଠାକୁର କରୁଣା ।
ଅନନ୍ତ ଆଳରେ ଯାହା ପାଇଅଛୁଁ ଶୁଣ । ୧୨୬ ।
ଆଦଶକ୍ତି ସରସ୍ୱତୀ ହୋଇଛନ୍ତି ସାକ୍ଷୀ ।
ହନୁମନ୍ତ ଗରୁଡ଼ ଲୋଚନେ ଛନ୍ତି ଦେଖି । ୧୨୭ ।
ଶିଶୁ ଯେ ଅଚ୍ୟୁତ ଯଶୋବନ୍ତ ବଳରାମ ।
ଶୁଦ୍ରକୁଳ ହୁଙ୍କାରବୁ ଅମ୍ଭେ ବୃଷ ଜନ । ୧୨୮ ।
ଚବିଶ ଗୋପାଳ ତୁମ୍ଭେ ଗୋପକୁଳ ତାର ।
ତୁମ୍ଭ ଆମ୍ଭ କଳିକାଳେ ଭେଦ ନାହିଁ ଆର । ୧୨୯ ।
ପାମର ଅଚ୍ୟୁତ ଚଣ୍ଡ ହତ୍ପଲାର ତୀର ।
ଜନମ ଲଭିଲି ମୁହିଁ ତିଳକଣା ପୁର । ୧୩୦ ।
ଜମ୍ବେ ଗ୍ରାମେ ମହାନଦୀ ତୀରେ ତୁମ୍ଭେ ଜାତ ।
ଜଙ୍ଘରବାସିନୀ ତୁମ୍ଭ ସ୍ୱଗରେ ରହିତ । ୧୩୧ ।
ଆଦିଶକ୍ତି ରହିଲେ ଯେ ଆମ୍ଭର ସ୍ୱଗର ।
ହନୁ ଯେ ଗରୁଡ଼ ରାମ ଭ୍ଅ ଆଗ୍ରେ କର । ୧୩୨ ।
ଅତି ଏ ଗୁପତ ଗୀତା ଗୁରୁଙ୍କ ଭଣ୍ଡାର ।
କୃପା କଲେ ଶ୍ରୀଗୁରୁ ଯେ ଅଚ୍ୟୁତ ପାମର । ୧୩୩ ।
ଅତି ଗୋପ୍ୟ ଅତି ଗୋପ୍ୟ ନ କହିବ କାହିଁ ।
ବରଷ ବାର ସେବିଲେ ଶିଷ୍ୟଙ୍କୁ ଯେ କହ । ୧୩୪ ।
ଚରଣାମୃତ ଅବଶେଷ ଯେହୁ ସେ ପାଇବ ।
ସାଷ୍ଟାଙ୍ଗ ପଞ୍ଚାଙ୍ଗ ଦଣ୍ଡବତ ଯେ ହୋଇବ । ୧୩୫ ।
ସେ ଜନ ଆଗରେ ଏହୁ ପାଠକୁ ପଢିଲେ ।
ଅନ୍ନବସ୍ତ୍ର ସୁଖଭୋଗ ମିଳଇ ଯେ ଭଲେ । ୧୩୬ ।
ଦାମ୍ଭିକ ମିଛୁଆ ପରରମଣୀ ହରଣ ।
ମତ୍ସ୍ୟ ମାଂସ ମାଦକ ଭକ୍ଷଇ ଯେହୁ ପୁଣ । ୧୩୭ ।

ତୁରଙ୍ଗ ଗଜ ଚଢ଼ଇ ଯେବଣ ମନୁଷ୍ୟ ।
ଚର୍ମ୍ମ ପାଦେ ମାଡ଼ଇ ଯେ ଯେବଣ ପୁରୁଷ । ୧୯୮ ।
ସେ ଜନ ଆଗରେ ଏହୁ ପାଠ ନ କହିବ ।
ପାମର ଅଚ୍ୟୁତ କଥା ମନରେ ରଖିବ । ୧୯୯ ।
ଏହୁ ଗୁରୁଭକ୍ତିଗୀତା ଭକତର ଧନ ।
ଭକତମାନେ କରିବ କରଣ ଯତନ । ୧୦୦ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ସପ୍ତବିଂଶ ଛନ୍ଦ ।



## ଚତୁସ୍ତ୍ରିଂଶ ଛାନ୍ଦ

କରୁଣା କରିବା ଗୁରୁ କଥା ଏକ ଶୁଣ
ଶ୍ରୀହରି ମନ୍ତ୍ରର କର୍ମା ଲକ୍ଷଟରେ ପୁଣ ।
ଶୁଣ ଆହେ ଗୋପସୁତ ଏଥିର ବିସ୍ତର
ଭଗବତ ଲକ୍ଷ ଏହୁ ସଂସାରରେ ସାର । ୨ ।
ଚନ୍ଦନାଗ ଧଉତ ଯେ ପୁଣ ଚନ୍ଦନ କର ।
ଛଡ଼କୋଣ ବସାଇବ ମନ୍ତ୍ରକୁ ସୁମର । ୩ ।
ଆଦ୍ୟର ହିଗୁଣ ପରେ ସ୍ୱାର୍ଭି ବସିବ ।
ଲୁରୁ ଯେ ଅକ୍ଷର ଆଉ ପାଶରେ ଥୋଇବ । ୪ ।
ଚଭି ଯେ ଅକ୍ଷର ତଥି କନ୍ଥରେ ବସିବ ।
କୃଷ୍ଣ ବେଦ ଅକ୍ଷର ଯେ ଦ୍ୱିଶ୍ଚବେ ଥୋଇବ । ୫ ।
ଦ୍ଧଂ ଯେ ଅକ୍ଷର ପୁଣ ଆଉ କୋଣେ ବସେ ।
ଛଡ଼-କ୍ଷର ବସିଲେ ଯେ ଯନ୍ତ୍ର ପରକାଶେ । ୬ ।
ଏ ମନ୍ତ୍ର ଆପଣ ଯନ୍ତ୍ରେ ବସ୍ତ୍ର ଏକ ଦେବ ।
ପାଞ୍ଚ ଯେ ଆଙ୍ଗୁଳ ରୂପା ଖଡ଼ିକା କରିବ । ୭ ।
ସେ ଖଡ଼ିକା ଗୋଟିରେ ଯେ ଯନ୍ତ୍ରକୁ ଲେଖିଣ ।
ବିବିଧ ପଦାର୍ଥ ଭୋଗ ଦେବ ସେଠାରେଣ । ୮ ।
ତନ୍ଦ୍ରରେ ବସିବ ପୁଣ ମନ୍ତ୍ରରେ ବିସ୍ତର ।
ସ୍ୱାରଭି ବସିବ ପୁଣ ଓଁ କାରକୁ ଧର । ୯ ।
କ୍ଲୁ ଚନ୍ଦ୍ରି ବସିବ ପୁଣ ଅଙ୍କାଙ୍ଗ ମଧ୍ୟରେ ।
କ୍ଲୃପ୍ତ ହ୍ରୈଁ ବସିବ ପୁଣ ବନ୍ଦ ଯେ ଭିତରେ । ୧୦ ।
ଏମନ୍ତେଣ ଯନ୍ତ୍ର ମନ୍ତ୍ର ଶିଷ୍ୟକୁ ବୁଝାଇ ।
ତେବେ ସିନା ଶିଷ୍ୟର ଯେ ସଂଶୟ ହରଇ । ୧୧ ।

---

୨—୨ ଛଡ଼କୋଣ (କ),

ଦ୍ୱାଦଶ ତିଳକ ବସେ ଦ୍ୱାଦଶ ଯେ ସ୍ଥାନ ।
ଶୁଣାଇ କହିବା ଏବେ ସ୍ଥାନର ବିଧାନ । ୧୨ ।
ଅ ଆ ଅଂ ଅଃ ସ୍ୱର ଅକ୍ଷର ବ୍ରହ୍ମରନ୍ଧ୍ରେ ବସେ ।
ଯିଛି ବେଦ ଅକ୍ଷର ଯେ ଚକ୍ଷୁରେ ପ୍ରକାଶେ । ୧୩ ।
ରହୁ ବେଦ ଅକ୍ଷର ଯେ ଓଷ୍ଠରେ ବସିବ ।
ଇ ଈ ବେଦ ଅକ୍ଷର ଯେ ଦନ୍ତସ୍ଥାନେ ହେବ । ୧୪ ।
ଓ ଔ ବେଦାକ୍ଷର ଲଲାଟ ସ୍ଥାନର ।
ଋ ୠ ବେଦାକ୍ଷର ବାମ ଯେ ଚକ୍ଷୁର । ୧୫ ।
ଌ ୡ ବେଦାକ୍ଷର ଶ୍ରବଣରେ ଥୋଇ ।
ଏ ଐ ବେଦାକ୍ଷର କଣ୍ଠରେ ବସଇ । ୧୬ ।
ଉ ଊ ପେକ୍ଷି ନରେ ବର୍ଣ୍ଣଣ ଶୁଣ ।
ପାଣଲେ ସୁଜନେ ଜନେ ଗୁରୁମୁଖେ ଖୋଜ । ୧୭ ।
କଖଗଘ ବର୍ଣ୍ଣାକ୍ଷର ଡାହାଣ ଭୁଜର ।
ଚ ଛ ଜ ଝ ଞ ପାଞ୍ଚ ବାମ ଯେ ଭୁଜର । ୧୮ ।
ଟ ଠ ଡ ଢ ଣ ବୋଲି ପାଞ୍ଚ ଯେ ଅକ୍ଷର ।
ପାଦମୂଳେ କଟିସ୍ଥାନେ ବର୍ଣ୍ଣଣ ଧର । ୧୯ ।
ତ ଥ ଦ ଧ ନ ପାଞ୍ଚ ଅକ୍ଷର ଯେ କହ ।
ବାମପାଦ ଉପରେ ଯେ କଟିସ୍ଥାନେ ରହ । ୨୦ ।
ପ ଫ ବ ଭ ମ ଯେ ପାଞ୍ଚାକ୍ଷର ନାଭିରେଣ ।
ସୁଜନ ଜନ ଜାଣନ୍ତି ସନ୍ଧିଭେଦ ପୁଣ । ୨୧ ।

---

୧୩—୧ ସ୍ୱର ବ୍ରହ୍ମରନ୍ଧ୍ରେ ଯେ ବସେ (ଖ);
୧୬—୧ ଉ ଊ ଯେ ଦୁଇଗୋଟି ନରେ (କ);
୧୮—୧ କଅ ଖଅ ଗଅ ଘଅ ଙ ଡାହାଣ (ଖ);
୧୯—୧ ଟ ଠ ଡ ଢ ଣ ପାଞ୍ଚାକ୍ଷର ଦକ୍ଷିଣ କଟୀର (ଖ);
୨୧—୨ ଏଥ ଭେଦ (କ);

ମ ଯ ର ଲ ଚତୁରକ୍ଷର ଲିଙ୍ଗରେ ଯେ ବସେ ।
ବ ଶ ଷ ସ ଚତୁରକ୍ଷର ଗୁହ୍ୟରେ ପ୍ରକାଶେ । ୧୨ ।
ହଂ କ୍ଷଂ ବେନକ୍ଷର ତାଳୁକା ଉପର ।
ଦ୍ୱାଦଶର ଆନ ଏହୁ ଅଟଇ ବିସ୍ତର । ୧୩ ।
ତାଳୁକା ଲଲାଟ ବ୍ରହ୍ମରନ୍ଧ୍ର ତିନ ସ୍ଥାନ ।
ଚକ୍ଷୁ ଓଷ୍ଠ ଶ୍ରବଣ ଯେ ଦନ୍ତ ଚାରି ପୁଣ । ୧୪ ।
କଣ୍ଠ ହୃଦ ଭୁଜ ଲିଙ୍ଗ ଅଟଇ ଏ ଚାରି ।
ଲିଙ୍ଗସ୍ଥାନ ବନ୍ଧିଲେ ଦ୍ୱାଦଶ ହେବ ସରି । ୧୫ ।
ଏମନ୍ତ ସ୍ଥାନକୁ ଯେଉଁ ସାଧୁ ବନ୍ଧପାରେ ।
ଯମଦଣ୍ଡ ନ ଲାଗଇ ଏ ଭବ ସଂସାରେ । ୧୬ ।
ଅ ଆ ବେନକ୍ଷର ବେନି ରେଖା କହୁ ।
ଅ ଯେ ଅକ୍ଷର ପୁଣ ଲଳିତା ଅଟଇ । ୧୭ ।
ଅଁ ଯେ ଅକ୍ଷର ପୁଣ ବିନ୍ଦୁ ବୋଲି ଜାଣ ।
ବ୍ରହ୍ମରନ୍ଧ୍ରେ ଏ ଭେଦ ଯେ ବିଚାରିବ ପୁଣ । ୧୮ ।
ହଁ କ୍ଷଁ ବେନକ୍ଷର ଏକବିନ୍ଦୁ ହୋଏ ।
ତାଳୁକା ଉପରେ ପୁଣ ଏ ବିନ୍ଦୁ ଯେ ରହେ । ୧୯ ।
ସିଙ୍କି ଋ ୠ ଓ ଔ ଅକ୍ଷର ଯେ ଛଡ଼ ।
ଲଲାଟ ଚକ୍ଷୁ ଉପରେ ଏ ଛଡ଼ଙ୍କ ଖେଡ଼ । ୨୦ ।
ଉପ୍ତ ବେନି ଅକ୍ଷର ଯେ ଓଷ୍ଠରେ ବିସ୍ତର ।
କଣ୍ଠର ଉପରେ ଏହୁ କଣ୍ଠେନ୍ଦ୍ର ଘର । ୨୧ ।
ବେନି ଶ୍ରବଣକୁ ଙ ଢ ବେନକ୍ଷର ବସେ ।
ଏ ଐ ବୋଲି ବେନି କର୍ଣ୍ଣେ ପରକାଶେ । ୨୨ ।

---

୧୫—୨ ବନ୍ଧଲେ (କ);
୧୬—୧ ବନ୍ଧପାରେ (କ); ୧୭—୨ ଆ ଯେ (ଖ);
୧୮—୧ ଉଁ ଯେ (ଖ);

ଏମନ୍ତ ତିଳକ ସଦା କାଳରେ ଅଛଇ ।
ସେ ଦେବତା ଚିହ୍ନିଲେ ଯେ ବେଶ କରୁଥାଇ । ୩୩ ।
ଗୋରଚନା ଚନ୍ଦନ ଯେ ଧବଳ ମୃତ୍ତିକା ।
ତୁଳସୀ ମୂଳ ମୃତ୍ତିକା ଗଙ୍ଗା ଯେ ପାଦୁକା । ୩୪ ।
ଏ ବିଧିରେ ଯେ ଅବା ମିଶ୍ରିବ ସର୍ବାଙ୍ଗଲେ ।
ଦ୍ୱାଦଶ ତିଳକ ବିଧି ଲେଖି ଦେହସ୍ଥଳେ । ୩୫ ।
ଏମନ୍ତ ଲକ୍ଷ ଯେଜନଲେ ସଂସାରରେ ସାର ।
ପଙ୍କରୁ ବଳଗ ପଦ୍ମପୁଷ୍ପ ଯେ ସୁନ୍ଦର । ୩୬ ।
ଦଧିରୁ ସାର ଅଟଇ ଘୃତ ଯେ ଯେମନ୍ତ ।
ଅଗାଡ଼ିରୁ ଧାନ ହୁଏ ସାର ଯେଉଁ ମତ । ୩୭ ।
ସଂସାରରେ ଥାଇ ଭକ୍ତ ତେମନ୍ତ ଅଟଇ ।
ମଲେଣ ସେ ଜନ ପୁଣ କୃଷ୍ଣପାଦ ପାଇ । ୩୮ ।
ଦ୍ୱାଦଶ ତିଳକ ଛଡ଼ି ବିନ୍ଦୁ ଅଟେ ପୁଣ ।
ବିନ୍ଦୁଭେଦ କହିବା ହେ ଗୋପସୁତ ଶୁଣ । ୩୯ ।
ତିଳକ ହସ୍ତରେ ଯୋଗ ଯତନ କରିବ ।
ନାସ୍ତାରନ୍ଧ୍ର ଥାନ ଚିହ୍ନି ଏକ ବିନ୍ଦୁ ଦେବ । ୪୦ ।
ଅଣାକାର ଘରେ ଯେଉଁ ବିନ୍ଦୁ ଗୋଟି ଅଛୁ ।
ସେ ସ୍ଥାନ ଜାଣିଲେ ସିନା ଦାସରେ ଲେଖିଛୁ । ୪୧ ।
ହ କାର ମଧ୍ୟରେ ପୁଣ ବିନ୍ଦୁ ଏକ ରହେ ।
ସେ ସ୍ଥାନ ଚିହ୍ନିଲେ ସିନା ସର୍ବ ପାପ ଦହେ । ୪୨ ।
ଏଣୁଟି ଲଲାଟପରେ ଏକ ବିନ୍ଦୁ ଦେଇ ।
ଏ ଭେଦ ଜାଣିଲେ ସିନା ଦାସ ବୋଲି କହି । ୪୩ ।
ଓଁ କାରେ ଅଙ୍କାଂଶ ବେଦ ଆଠ ଯେ ଅକ୍ଷର ।
ଏ ପରେ ଓଁ କାର ବିନ୍ଦୁ ଅଟଇଟି ସାର । ୪୪ ।
ଶ୍ରୀହରିମନ୍ଦରେ ତେବେ ଦାସପଣେ ପଶେ ।
ଏହା ଚିହ୍ନି ନ ଥିଲେ ସେ ଶ୍ରେଷ୍ଠ ପଣେ ଦାସେ । ୪୫ ।

ଶୁଣ ଆହେ ଉଦ୍ଧବ ସଦ୍ଧାସଙ୍କ୍ଷ୍ୟ ମୋର ।
ଷୋଳ ଶେଷେ ଏକବନ୍ଦୁ କଣ୍ଠଠାରେ ଧର । ୪୬ ।
ହୃଦରେ ଦ୍ୱାଦଶ ଶେଷେ ଏକ ବନ୍ଦୁ ରହେ ।
ଏ ଭେଦ ଜାଣିରେ ସିନା ଦାସପଣ ଶୋହେ । ୪୭ ।
ନାଭିମୂଳେ ଦଶ ଶେଷେ ଏକ ବନ୍ଦୁ ଜାଣ ।
ଏ ଭେଦ ଜାଣିଲେ ଦାସପଣରେ ପ୍ରମାଣ । ୪୮ ।
ଅନାହଦମଣ୍ଡଳେ ଏକ ବନ୍ଦୁ ଯେ ଅଛଇ ।
ଛଅ ବନ୍ଦୁ ରାମଚନ୍ଦ୍ର କହିଲୁଁ ବୁଝାଇ । ୪୯ ।
ଛଅ ବନ୍ଦୁ ଦ୍ରଷ୍ଟ ଯେ ବନ୍ଦୁ ଏ ରୂପତ ।
ଯଦୁବଂଶ ଭଗତ ଜାଣନ୍ତି ତତ୍ତ୍ୱ ତତ୍ତ୍ୱ । ୫୦ ।
ଶିରପରେ ବୁଲିଲେ ଅନାଦ ବନ୍ଦୁ କହି ।
ବ୍ରହ୍ମ ଅଣ୍ଡସ୍ଥ ଯେ ବନ୍ଦୁ ତାଳୁକା ବସଇ । ୫୧ ।
ଭ୍ରୂରୁ ମଧ୍ୟେ କାଳଭିଁ ବନ୍ଦୁ ସୁମରଣ କର ।
କଣ୍ଠରେ ଯେ ଆତପ ତ ବନ୍ଦୁକୁ ସୁମର । ୫୨ ।
ଠଣ ଯେ ସୁନ୍ଦର ବନ୍ଦୁ ହୃଦରେ ବସଇ ।
ନାଭିରେ ଝଲକ ଫଅ ବନ୍ଦୁ ପୁଣ ଦେଇ । ୫୩ ।
ଛଅ ବନ୍ଦୁ ଏମନ୍ତେଣ ହୋଇଛି ପ୍ରକାଶ ।
ବିନା ଗୁରୁ ନ କହିଲେ ନ ଫିଟେ ସନ୍ଦେଶ । ୫୪ ।
ପଞ୍ଚମାତ୍ରା ବନ୍ଦୁ ପୁଣ ଉଚ୍ଚାରଣ କରେ ।
ସେ ସ୍ଥାନକୁ ହସ୍ତ ଅହ ଯାଇନ ନ ପାରେ । ୫୫ ।
ଗୁରୁଙ୍କ କରୁଣା ପଣେ ସେ ବନ୍ଦୁ ଚହ୍ନଇ ।
ବନ୍ଦୁ ଭେଦ ନ ଚହ୍ନିଲେ ବୈଷ୍ଣବ ନୁହଇ । ୫୬ ।
ମୁକୁନ୍ଦ ଅନନ୍ତ ବସ୍ତ୍ର ଯାଦବ ହେ ଶୁଣ ।
ଏହୁ ଗୁରୁଭକ୍ତ ଗୀତା ରୂପତଟି ପୂର୍ଣ୍ଣ । ୫୭ ।

---

୪୬—୨ ଷୋଳ ହସେ (କ); ୫୨—୧ କାଳଭିଁ ବୀଜ (ଙ);
୫୬—୨ ଭେଦ ନ ଜାଣିଲେ ବୈଷ୍ଣବ ନ କହି (ଗ);

ଧନ ଲୋଭେ ଏ ଜନ୍ମେ ଯେମନ୍ତ ପୁଣ କହେ ।
ବଡ଼ପଣ ହୋଇବ ବୋଲିଣ ବକହୋଏ । ୫୮ ।
ଜନ୍ମ ଅନ୍ତେ ଶୃଗାଳ ଯେ ଶୂକର ହୁଅଇ ।
ଗୋପ୍ୟ ଗୋପ୍ୟ ମହାଗୋପ୍ୟ ନ କହିବ କାହିଁ । ୫୯ ।
ସ୍ଵମ ଭୃଥ ଧର୍ମ୍ମ ବିଷ୍ଣୁ ବଜ ପାଷଜଣ ।
ସ୍ତୁତ ଯେକ ବାରେକ ଯେ କହିବା ବଚନ । ୬୦ ।
କରୂପେ ସଂସାରଜନ ପାଇବେ କାରଣ ।
ଏଥକୁ ବଚନ ଗୁରୁ କହିବା ପ୍ରମାଣ । ୬୧ ।
ଦମ୍ଭପଣ ଛାଡ଼ିଣ ଯେ ଶିର ନୁଆଁଇବ ।
ସଜ୍ଜନ ଅଗରେ ପାଠ ହଡ଼ମ ଭଣିବ । ୬୨ ।
ଶିଷ୍ୟଆଗେ କହିଲେ ଯେ କଛୁ ଦୋଷ ନାହିଁ ।
ଶିକ୍ଷାଘୁରୁ କରିବ ଯେ ତାକ୍ତୁ ଦେବ କହୁ । ୬୩ ।
ଜାଲନ୍ଧ୍ର ଭେଦବା ବାଟ ଅଟଇ ଗହନ ।
ପୂର୍ବସୌଗ୍ୟ ଥିଲେ ସିନା ସମାଧିରେ ମନ । ୬୪ ।
ଗ୍ରନ୍ଥୀଭେଦ ସର୍ବଜନେ ନୁହଇ ପ୍ରାପତ ।
ଅବାଡ଼ ପ୍ରତିମା ସାଧୁ ନୋହେ ସର୍ବ ଚଉ । ୬୫ ।
ସର୍ପଫେଣା ରଖିବାର ବଡ଼ ଯେ କଠୋର ।
ପାଦପଦ୍ମ ଚନ୍ତ ସାଧୁ ଥିବ ନିରନ୍ତର । ୬୬ ।
ଚନ୍ଦନ ତିଳକ ବେଶ ହରିଙ୍କି କରିବ ।
ଶ୍ରୀହରି ମନ୍ଦିର ନିରନ୍ତର ସେବା ଥିବ । ୬୭ ।
ମାଟି ଅଙ୍ଗେ ବୋଲିଲେଟି ନ ବୋଲିବେ ଦାସ ।
ବ୍ୟାଘ୍ର ଚର୍ମ୍ମ ପଶୁ ଜନ୍ତୁଠାରେ ପରବେଶ । ୬୮ ।
ଛଳ ଯେକ ପଶୁ ଯଦ ବ୍ୟାଘ୍ର ପାଳିଟିବ ।
ବିବେକଗୋଷ୍ଠିରେ ଏହୁ ସନ୍ଧି ପଚାରିବ । ୬୯ ।
ବିଷ୍ଣୁ ଦାସ ଶୁଣ ଆହେ ବିବେକ ବିଗ୍ରହ ।
ନାସା ଆଦ୍ୟ ଅଟଇ ଯେ ଅର୍ଦ୍ଧଗ୍ରହ ଠାର । ୭୦ ।

ନାସା ଆଦ୍ୟ କେଶ ପର୍ଯ୍ୟନ୍ତେ ଦଣ୍ଡ ପ୍ରାପ୍ତେ ।
ବାମସ୍ୱରେ ସଦାଶିବ ରେଖା ଗୋଟି ହୋଏ । ୭୦ ।
ତାହାଣ ଯେ ରେଖା ଗୋଟି ବ୍ରହ୍ମା ବୋଲି କହୁ ।
ଅର୍ଦ୍ଧମାତ୍ରା ମଧ୍ୟସ୍ୱରେ ରାଧିକା ଅଛଇ । ୭୧ ।
ବିନ୍ଦୁ କୃଷ୍ଣ ବୋଲି ଜାଣ ଶ୍ରୀହରି ମନ୍ଦର ।
ନାସା କଲି ଗରୁଡ଼ ଯେ ଦେବତା ସୁନ୍ଦର । ୭୨ ।
କର୍ଣ୍ଣ ଆଗେ ସୂର୍ଯ୍ୟ ଯେ ଦେବତା ବସେ ପୁଣ ।
ଚକ୍ଷୁସ୍ଥାନେ ଚନ୍ଦ୍ର ଯେ ଦେବତା ବସେ ଜାଣ । ୭୪ ।
ତାରାପନ୍ତ କର୍ଣ୍ଣମୂଳେ କଣ୍ଠପରେ ବସେ ।
ଈଶ୍ୱର ପାର୍ବତୀ କଣ୍ଠକଣ୍ଠରେ ପ୍ରକାଶେ । ୭୫ ।
ବାମବାହୁ କମଳା ଦକ୍ଷିଣେ ସରସ୍ୱତୀ ।
ଲକ୍ଷ୍ମୀ ନାରାୟଣ ହୃଦସ୍ୱରେ ବସନ୍ତି । ୭୬ ।
ନାଭିରେଖା ଦ୍ୱୟ ବାହୁ ଦଶ ଅବତାର ।
ମତ୍ସ୍ୟ କୂର୍ମ ବରାହ ବାମନ ନୃସିଂହ ସୁର । ୭୭ ।
ଦକ୍ଷିଣ ବାହୁରେ ଏହୁ ଶ୍ରୀର ରୂପ ରହେ ।
ନୃସିଂହ ଯେ ପର୍ଶୁରାମ ରାମ ବୁଦ୍ଧ ହୋଏ । ୭୮ ।
ସାବିତ୍ରୀଙ୍କୁ ଘେନ ପୁଣ ବ୍ରହ୍ମା ତହିଁ ରହେ ।
ଏମନ୍ତେଣ ଦୁଇ ବାହୁ ନାଭି ରେଖା ହୋଏ । ୭୯ ।
ବାମ ଦକ୍ଷିଣରେ ସୁର ଦଶ ଅବତାର ।
କାମଦେବ କାମାକ୍ଷୀ ଯେ ଲିଙ୍ଗର ବିହାର । ୮୦ ।
ଚରଣ୍ଡଳେ ଶଙ୍ଖିନୀ ଯେ ଗଣେଶ ଘେନଣ ।
ଆଦମୂଳ ଦେବତାର ଅଟଇ ଯେ ସ୍ଥାନ । ୮୧ ।
ଏମନ୍ତେଣ ଆଦମାତା ବକ୍ଷୁର ଏ ସ୍ଥଳ ।
ଏ ଭେଦ ଭେଦଣ ପଣ ଗୋଲୋକ ମଣ୍ଡଳ । ୮୨ ।

---

୭୭—୧ ରେଖାଦ୍ୱୟ ବାହୁ (କ); ଦକ୍ଷିଣ ବାହୁରେ (କ),
୭୯—୧ କଳଙ୍କି ରୂପକୁ ଘେନ (କ);

ଏ ଭେଦ ଯେ ନ ଜାଣନ୍ତି ସେ ଚଣ୍ଡାଳ ହୋଇ ।
ଅଶୁଦ୍ଧ ଜନ ବୋଲନ୍ତି ସେ ପ୍ରାଣୀଙ୍କ କହି । ୮୩ ।
ବିଧବା ଯୁବତୀ ଯେସନ୍ତେ ଅସୁନ୍ଦର ହୋଇ ।
ବିନ୍ଦୁ ଭେଦ ନ ଜାଣିଲେ ତେମନ୍ତ ଅଟଇ । ୮୪ ।
ନିସ୍ତାରଣ ବିନ୍ଦୁକୁ ଯେ ନିରନ୍ତରେ ଆଶ ।
ଆଦ ଯେ ଅଣଅକ୍ଷର ବିନ୍ଦୁ ଅଟେ ଘୋଷ । ୮୫ ।
କ୍ଷଣେ ଦଣ୍ଡେ ନମିଷେ ଯେ ଗୁରୁପାଦେ ଚିନ୍ତ ।
ପାମର ଅଚ୍ୟୁତ ଦ୍ୱାରମନ୍ଦିରରେ ଭୃତ୍ୟ । ୮୬ ।
ଶ୍ରୀହରି ମନ୍ଦିରେ ପଶି ପାଇଲେଣ ଦାସ ।
ପଶି ନ ପାରିଲେ ଇହ ଲୋକେ ଉପହାସ । ୮୭ ।
ଇହଲୋକେ ଜନମାନେ କରନ୍ତି ଟମାଳି ।
ପରଲୋକେ ଜନମାନେ ଦିଅଇ ଶାସ୍ତିଳି । ୮୮ ।
ଏ ଭୂମିରେ ମୁକାର ଯେ ପଣ ସିନା ଯିବ ।
ଯମଆଗ ସ୍ଥାନ ବଡ଼ ସରି ସମସ୍ତ ବ । ୮୯ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ଦେବତାଙ୍କୁ ।
ଜନ୍ମ ଜାତ ବୃଦ୍ଧି ଦଣ୍ଡ ଦିଅଇ ତାହାଙ୍କୁ । ୯୦ ।
ବିଷ୍ଣୁର ଏ କୂଟ ଲୀଳା କେ କରିବ ଆନ ।
ଶୁଣ ଆହେ ଗୋପସୁତ ପବନ ଉତ୍ପାନ । ୯୧ ।
ବ୍ରହ୍ମହତ୍ୟା ଦୋଷ ରାମ ଅବତାର ପାଇଁ ।
ଶବର ହାତରେ ମୃତ୍ୟୁ ଦେଖ ରଥ ପାଇଁ । ୯୨ ।
ବଉଦ କପଟ ମୂର୍ତ୍ତି କଟବୁଦ୍ଧି ଛିଲେ ।
ମନୁଷ୍ୟର ଆତଯାତ ଯମ ପାଞ୍ଚି ତଲେ । ୯୩ ।
ଏଣୁକରି କୃଷ୍ଣ ଦଶବେଳ ମୃତ୍ୟୁ ହୋଏ ।
ଭକ୍ତମାନେ ବିଷ୍ଣୁ ସଙ୍ଗେ ମୃତ୍ୟୁପଥ ବହେ । ୯୪ ।
ଭକ୍ତଲକ୍ଷ୍ଣ ଦେଖି ଯମଦଣ୍ଡ ନ କରଇ ।
ଭକତ ପଥ ଛାଡ଼ିଲେ ଯମ ଯେ ଦଣ୍ଡଇ । ୯୫ ।

ଜଗତରେ ବାଞ୍ଛା କରୁ କରୁ କରୁଥିବ ।
ହୃଦରେ ବସ୍ତୁର ସାଧୁମାନଙ୍କୁ ପୁଛିବ । ୯୬ ।
ଶ୍ରୀ ଚରଣ ଗୋସାଇଁ ସେ କୃପାକଲେ ମୋତେ ।
ବୈରାଗ ରୂପରେ ଖେଳୁଥିଲେ ଏ ଜଗତେ । ୯୭ ।
ଦୟାକଲେ ମୋହଠାରେ ମନ୍ତ୍ରଭେଦ ଯେତେ ।
ପାମର ଅଚ୍ୟୁତ ଚଢେ ରଖିଲେ ଗୁପତେ । ୯୮ ।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଚତୁର୍ବିଂଶ ଅଧ୍ୟାୟ ।



## ପଞ୍ଚତ୍ରିଂଶ ଛାନ୍ଦ

ସୁଦକ୍ଷା କର ହଙ୍କର ଏ ଭବ ସାଗରେ ।
ତୁଳସୀମାଳ ଯେ କମ୍ପା ଲମ୍ବିତ ହୃଦରେ । ୧ ।
ଏ ମାଳ ହୃଦରେ ଥିଲେ କିସ ଗତ ହୋଏ ।
କ ରୂପେଣ ଶିଷ୍ୟ ମନ୍ତ୍ର ଯନ୍ତ୍ର ତନ୍ତ୍ର ପାସ୍ଥେ । ୨ ।
ଶୁଣ ଆହେ ଗୋପସୁତ ଏ ବଡ଼ ଗୁପତ ।
ଭଗତଜନ ଜାଣନ୍ତି ଉଦ୍ଧିର ତଦନ୍ତ । ୩ ।
ଆଦ୍ୟେ ଲେଖ ସତ୍ୟଯୁଗ ହୋଇଲା ଉଆଣ ।
ଅନନ୍ତ ବିଷ୍ଣୁ ଯେ ଲୀଳା ଉଆଇଲେ ପୁଣ । ୪ ।
ବିଷ୍ଣୁ ସଙ୍ଗେ ଋଷିଗଣ ଜନମ ହୋଇଲେ ।
ବିଷ୍ଣୁଙ୍କୁ ଯେ ପୂଜାବିଧିମାନ ଉଆଇଲେ । ୫ ।
ସ୍ତୁତ କଲେକ କୃଷ୍ଣଙ୍କୁ ମାନସିକେ ପୁଣ ।
ଅନ୍ତର୍ଯାମୀନାଥ ଯେ ଜାଣିଲେ ହୃଦସ୍ଥେଣ । ୬ ।
ରହିଲେକ ଦଣ୍ଡେ ଯହୁଁ କଲ୍ପଣା କରେଣ ।
କୃଷ୍ଣ କଲ୍ପଣାରୁ ଜାତ ତ୍ରିପୁର ଯେ ଜାଣ । ୭ ।
ଜାତ ହୋଇ ତ୍ରିପୁର ଯେ କୃଷ୍ଣଙ୍କୁ ଜଣାଇ ।
କେଉଣ ଥାନରେ ବାସ କରିବଇଁ ମୁହିଁ । ୮ ।
ଚଉଷଠି ଗୋପୀ ଯେଉଁ ନିତ୍ୟସ୍ଥଳେ ବାସ ।
ଅର୍ଦ୍ଧମାତ୍ରା ତ୍ରିପୁର ଯେ ନାମ ପରକାଶ । ୯ ।
ନିତ୍ୟସ୍ଥଳେ ଅଙ୍ଗ ରଖି ମଣ୍ଡପୁର ଶିବ ।
ଅନନ୍ତ ବିଷ୍ଣୁଙ୍କ ପାଖେ ବିଶ୍ରାମ କରିବ । ୧୦ ।

---

୪—୧ ଅବଲେଖ (କ),

ଲବଣ ଜଳଧି ତଟେ କଲ୍ପବଟ ପାଶେ ।
ଅନନ୍ତ-ଦେବ ଶୟନ ବସ୍ତ୍ରୁ ପରକାଶେ । ୧୧ ।
ତୁଳସୀ ଚନ୍ଦ୍ରଗ୍ର ବୋଲି ନାମ ତୁମ୍ଭେ ବହି ।
ଅନନ୍ତ ବସ୍ତ୍ରୁଙ୍କ ସଙ୍ଗେ ଥିବ ତୁମ୍ଭେ ଯାଇ । ୧୨ ।
ଏମନ୍ତେଣ ଆଦ ଯେ ଅନନ୍ତ ଯୁଗ ଯିବ ।
ସତ୍ୟଯୁଗ ଗୋଟା ପୁଣ ପରବେଶ ହେବ । ୧୩ ।
ସତ୍ୟବତୀ ହୋଇ ତୁମ୍ଭେ ଜନମ ହୋଇବ ।
ସକଳ ଯେ ପୂଜାବିଧିମାନ ଭିଆଇବ । ୧୪ ।
ନାରାୟଣ ଅବତାର ହୋଇବେକ ପୁଣ ।
ଋଷିଗଣମାନେ ସେବା କରିବେ ଚରଣ । ୧୫ ।
ନାରାୟଣ ରୂପରେ ଯେ ତୁମ୍ଭେ ମଣ୍ଡପୁର ।
ତୁମ୍ଭର ପଲ୍ଲବ ବସ୍ତ୍ରୁ ବନ୍ଧିବେ ଶିରର । ୧୬ ।
ବୃକ୍ଷରୂପ ହୋଇବ ଯେ ଲକ୍ଷ୍ମୀ ହେଲେ ଜାତ ।
ସତ୍ୟବତୀ ଲକ୍ଷ୍ମୀଙ୍କର ବଚ୍ଚର ବହୁତ । ୧୭ ।
କେବଣ ଠାବରୁ ଏହି ପୁଷ୍ପପତ୍ର ଆଣି ।
ନାରାୟଣ ରୂପକୁ ଯେ ପୂଜା କର ପୁଣି । ୧୮ ।
କେବଣ ଏ ବୃକ୍ଷ ଗୋଟି ଦେଖାଇବ ମୋତେ ।
ଏ ପୁଷ୍ପେ ସନ୍ତୋଷ ହେ'ନ୍ତି ନାରାୟଣ ନିତ୍ୟେ । ୧୯ ।
ତୁମ୍ଭେ ଜପ କରିବ ସେ ବୃକ୍ଷକୁ ଦେଖିଣ ।
ଆମ୍ଭେ ଶିରେ ଘେନିବୁ ଯେ ଲକ୍ଷ୍ମୀ ବୋଲେ ପୁଣ । ୨୦ ।
ପଲ୍ଲବ ଯେ ପୁଷ୍ପଡାଳ ଗୋଟିଏକ ଆଣି ।
ଦେଖି ବଡ଼ ସନ୍ତୋଷ ହୋଇଲେ ଲକ୍ଷ୍ମୀ ପୁଣି । ୨୧ ।
ପଲ୍ଲବ ପୁଷ୍ପ ତ ନାରାୟଣ ଅଙ୍ଗେ ଅଛି ।
ଏହୁ ଡାଳ ଗୋଟିକ ମୋ ମନ ବଳୁଅଛି । ୨୨ ।
ଲକ୍ଷ୍ମୀ ମନେ ବିସ୍ମରଣ କଲେକ ଭିଆଣ ।
ଗଲାକୁ ଯେ ଏକ କଣ୍ଠି ଭିଆଇଲେ ପୁଣ । ୨୩ ।

ନାରାୟଣ ଅଗ୍ରତରେ ଦେଲେ ପୁଣି ନେଇ ।
ସତ୍ୟବତୀ ଏକ ଯେ ପଦାର୍ଥ ଛନ୍ତି ଦେଇ । ୨୪ ।
ନାରାୟଣ କହୁଛନ୍ତି ଲକ୍ଷ୍ମୀବାରେ ଶୁଣ ।
ଏ ତୁଳସୀ ଗୋଟି ଅଟେ ବହୁତ ଯେ ଗୁଣ । ୨୫ ।
ଶ୍ରୀକୃଷ୍ଣ ଅଙ୍ଗରୁ ଏହୁ ହୋଇଅଛୁ ଜାତ ।
ଏହୁ ଅଙ୍ଗେ ଥିଲେ ପୁଣ୍ୟ ବହୁତ ପ୍ରାପତ । ୨୬ ।
ଏହାର ପଲ୍ଲବ ପୁଷ୍ପ ଶିରେ ଆମ୍ଭେ ବନ୍ଧୁ ।
ଚଉଷଠ କଳା ଏ ଗୋ ତୁଳସୀ ଅଟଇ । ୨୭ ।
ଏହାର ପତ୍ରକୁ ଯେବେ ବ୍ରହ୍ମା ବଜ୍ର ହୋଏ ।
ଏହୁ ପୁଷ୍ପ ଯେବଣ ଗୋ ଶିବ ବନ୍ଦ କହେ । ୨୮ ।
ଏହାର ଗୋ ଫଳଗୋଟି ଯେବେ ବିଷ୍ଣୁ ଜାଣ ।
ଏହୁ ମାଳ ଗୋଟି ତୁମ୍ଭେ କଳକ ଭିଆଣ । ୨୯ ।
ଋଷିଗଣମାନେ ଏହା ଗଳାରେ ବନ୍ଧିବେ ।
ତୁମ୍ଭ ଯୋଗୁଁ ପ୍ରାଣୀମାନେ ନିସ୍ତାର ପାଇବେ । ୩୦ ।
ଏମନ୍ତେଣ ନାରାୟଣ ମୁନିଜନେ ଦେଲେ ।
ସକଳ ମୁନିଙ୍କି ମାଳା ଚରିତ୍ର କହିଲେ । ୩୧ ।
ଏ ତୁଳସୀ କଣ୍ଠେ ଥିଲେ କୃଷ୍ଣ ପାଦ ପାଇ ।
ବାହୁମୂଳେ ଥିଲେ ସର୍ବ ଜପ ସିଦ୍ଧି ହୋଇ । ୩୨ ।
କର୍ଣ୍ଣଉପରେ ଶିରେ ଥିଲେ ସର୍ବ ପାପ କ୍ଷୟେ ।
ହୃଦଯାଏ ଲମ୍ବି ଥିଲେ ଯମଦଣ୍ଡ ନୁହେ । ୩୩ ।
ପଞ୍ଚକୋଡ଼ି ଅଷ୍ଟକୋଟି କରିବ ଯେ ମାଳ ।
ତୁଳସୀରେ ଜପିଲେ ଶ୍ରୀକୃଷ୍ଣ ନାମ ଫଳ । ୩୪ ।
ଚଉଷଠି ଗୋଟି ମାଳ କଣ୍ଠେ ବନ୍ଧିଥିଲେ ।
ଯମଦଣ୍ଡ ନ ଲଗଇ ମୃତ୍ୟୁପଥେ ଗଲେ ।
ଦ୍ୱାଦଶ ଗୋଟି ଯେ ମାଳ ବାହୁମୂଳେ ଥିଲେ ।
ସର୍ବଜପ ହୁଅଇ ଯେ ଜପ କରୁଥିଲେ । ୩୫ ।

ଚଉବନ ଗୋଟି ମାଳ ଶିରେ ବନ୍ଧୁଥିବ ।
ଅଷ୍ଟଗୋଟି ପାତକ ଯେ ଅଙ୍ଗୁ ପଳାଇବ । ୩୭ ।
ଏ ତୁଳସୀ ମନ୍ତ୍ର ପୂଜା କରିବ ନିରତେ ।
ମୁନିଙ୍କ କହିଲେ ନାରାୟଣ ଏହା ସତ୍ୟେ । ୩୮ ।
ତ୍ରେତୟାଯୁଗ ଯେ ପୁଣ ପରବେଶ ହୋଇ ।
ମଧ୍ୟ ଯେ ମାଳତୀ ସତ୍ୟବତୀ ଅଙ୍ଗ ବନ୍ଧୁ । ୩୯ ।
ଦ୍ୱାପର ଯୁଗ ଯେ ପୁଣ ହୋଇଲା ଭିଆଣ ।
ବୃନ୍ଦାବତୀ ନାମ ହେଲେ ଗୋପପୁରେ ପୁଣ । ୪୦ ।
ମର୍ତ୍ତ୍ୟସ୍ଥଳେ ନିପୁରି ଯେ ନାମ ଅଟେ ପୁଣ ।
ସତ୍ୟଯୁଗେ ସତ୍ୟବତୀ ନାମ ଯେ ଭିଆଣ । ୪୧ ।
ତ୍ରେତୟା ଯୁଗରେ ମଧୁବତୀ ଯେ ବୋଲନ୍ତି ।
ଦ୍ୱାପରେ ଯେ ବୃନ୍ଦାବତୀ ବୃନ୍ଦାବନେ ସ୍ଥିତି । ୪୨ ।
କଳିଯୁଗେ ତୁଳସୀର ନାମ ହେଲା ସାର ।
ଆଦିଯୁଗେ ତୁଳସୀର ମୁନିଙ୍କ ଉତ୍ତର । ୪୩ ।
ମନଯୁକ୍ତେ ତୁଳସୀକୁ କରିବ ଭଜନ ।
ମନ୍ତ୍ରବିଧି କହିବା ହେ ହେତୁ ମନେ ଘେନ । ୪୪ ।
ଅଷ୍ଟକୋଣ କରିବ ଯେ ହରେରାମ ସ୍ତୁତ ।
କୃଷ୍ଣ ବେନି ରଖିବ ଯେ ମାନସିକ କରି । ୪୫ ।
ପାଟ ବସ୍ତ୍ର ଦ୍ୱାଦଶ ଯେ ହାତ ନିଉଛୁଳି ।
ଯନ୍ତ୍ର ପୂଜା ଦେଇ ଶିଷ୍ୟ ଦେବ ଯେ ମଣ୍ଡଳି । ୪୬ ।
ପୋଏଲା ଗୋଟିଏ ଘେନି ଯନ୍ତ୍ରକୁ ଲେଖିବ ।
ଏ ବିଧି ନ କଲେ ବଡ଼ ପରମାଦ ହେବ । ୪୭ ।
ହରେ ଯେ ଓଁ କାର ସ୍ଥାନ ରାମ ଅଙ୍କେ ଭିନ୍ନ ।
କୃଷ୍ଣ ବିନ୍ଦୁ ତତ୍ତ୍ୱ ମଧ୍ୟେ ଶିଷ୍ୟକୁ ବୁଝାଇ । ୪୮ ।

---

୩୮—୧ ଏ ତୁଳସୀ ପୂଜା ଏବେ (ଖ);
୪୫—୧ ଷଡ଼କୋଣ (କ);

ହରେ ସୁତେ ଘୃଞ୍ଚିବ ଯେ ଘ୍ରମ ତୁଳସୀକ ।
କୃଷ୍ଣ ନାମ ଭଜବ ଯେ ଘ୍ରମ ମାଲ ଭକ୍ତ । ୪୯ ।
ହରେରାମ କୃଷ୍ଣଶ୍ୟାମ ଷୋଡ଼ଶ ଅକ୍ଷର ।
ଅନାମିକା ମଧ୍ୟସ୍ଥରେ ମାଳଗୋଟି ଧର । ୫୦ ।
ଶଏ ଅଷ୍ଟ ଗୋଟି ମାଳ ଗ୍ରଥିବେଲ ହେଲେ ।
ଗ୍ରନ୍ଥେ ନାମ ହୋଇବ ଯେ ଅର୍ଦ୍ଧଣ ପାଉଲେ । ୫୧ ।
ଷୋଳ ଗ୍ରନ୍ଥେ ଜପିଲେ ଯେ ଲକ୍ଷେ ହେବ ପୂଣ ।
କଚ୍ଛୁ ପୂଣ ଅଧିକ ହୋଇବ ଜପେ ଶୁଣ । ୫୨ ।
ହରେଶ୍ୟାମ ଯେତେ ନାମ ଶିଷ୍ୟର ହୋଇବ ।
ରାମକୃଷ୍ଣ ଯେତେ ନାମ ଗୁରୁଙ୍କର ସ୍ତବ । ୫୩ ।
ଏଣୁ କର ଗୁରୁଶିଷ୍ୟ ଅଙ୍କ ଅଙ୍କ ହୋଏ ।
ଗୁରୁ କୃଷ୍ଣ ଏକ ଅଙ୍ଗ ଭିନ୍ନ ଭିନ୍ନ ନୋହେ । ୫୪ ।
ତର୍ଜନୀ ଅଙ୍ଗୁଷ୍ଠି ଯୋଗ ଲଗଇ ଭଜନ ।
ଭଜନ ନିଷ୍ଫଳ ଯାଏ ହେରୁ ମନେ ଘେନ । ୫୫ ।
ଅଙ୍ଗୁଷ୍ଠି ଅଗ୍ରରେ ଜପ ଯେମନ୍ତେ କରଇ ।
ବ୍ୟଗ୍ରେ ଜପ କଲେ ଯମ ନେଇଣ ଦଣ୍ଡଇ । ୫୬ ।
ବୁଆପଙ୍କ ଗ୍ରନ୍ଥ ଲକ୍ଷ ନ ଜାଣି ଭଜିଲେ ।
ମୂଢଭ ଲଭନ୍ତି ଭକ୍ତ ନ ଜାଣନ୍ତି ଭଲେ । ୫୭ ।
ଅଲେଖା କରି ଜପିଲେ ପୂଣ୍ୟ ଦେହ ପାଏ ।
ଜାଣି ଶୁଣି ଭଜିଲେ ଯେ କୃଷ୍ଣ ପାଦେ ରହେ । ୫୮ ।
ଜନ୍ମ ହୋଇ କୃଷ୍ଣ ଗୁଣ ଗୁଣଇ ସେ ଜନ ।
ଜନ୍ମେ ଜନ୍ମେ ଭଗତ ସେ କୃଷ୍ଣ ପାଦେ ଲୀନ । ୫୯ ।

---

୫୧—୨ ଅର୍ଦ୍ଧଣ ପାଉଲେ (କ),
୫୩—୨ ଗୁରୁଙ୍କର ସ୍ତଗ (ଖ);
୫୭—୧ ବୁଆପଙ୍କ (କ ,

ମନ୍ତ୍ର ଯନ୍ତ୍ର ତନ୍ତ୍ର ଭେଦ ନ ଜାଣିଣ ପୁଣ ।
ଏଣେ ଯେ କପିଳା ବଧ ଦୋଷ ଲାଗେ ଶୁଣ । ୬୦ ।
ବୃକ୍ଷମାନଙ୍କର ରାଜା ତୁଳସୀ ଅଟଇ ।
ତୁଳସୀରେ ଶ୍ରୀକୃଷ୍ଣ ଅଛନ୍ତି ତାକୁ ବନ୍ଦ । ୬୧ ।
ମନ୍ତ୍ର ପୂଜା ଜାଣି ସେବା ଯେ କରଇ ନିତେ ।
ଧନ ଜନ ସମ୍ପତ୍ତି ବଢ଼ଇ ଅଦ୍ଭୁତେ । ୬୨ ।
ତୁଳସୀ ମନ୍ତ୍ର ନ ଜାଣି ବନ୍ଦନ୍ତି ଯେ ପ୍ରାଣୀ ।
ଦଶଜନ୍ମ ଯାଏ ନର୍କେ ପଡ଼ନ୍ତି ସେ ପୁଣି । ୬୩ ।
ମନ୍ତ୍ର ଜାଣି ତୁଳସୀ ଯେ ଯେଉଁ ଜନ ବନ୍ଦେ ।
ଜୀବନ୍ତେଣ ମୁକ୍ତ ହୋଏ ମଲେ କୃଷ୍ଣ ପାଏ । ୬୪ ।
ତୁଳସୀ ଯେ କଣ୍ଠପରେ କଣ୍ଠେ ବନ୍ଧଥାଇ ।
ବାହୁମୂଳେ ହୃଦସ୍ଥଳେ ଯେ ଜନ ଲମ୍ବାଇ । ୬୫ ।
ଅଙ୍କଟନ ରୂପ ଧରି କଣ୍ଠିଡୋର ବନ୍ଧ ।
ଏକ କାଠପୁଞ୍ଜ ମାଳ ବନ୍ଦେ୍‌କୁ ନିଗ୍ରନ୍ଥି । ୬୬ ।
ସତ ଶାନ୍ତି ଦୟା କ୍ଷମା କିଛୁ ପାଳଥାଇ ।
ସେ ଜନ ଅଙ୍ଗରେ ଥିଲେ କିଛୁ ଦୋଷ ନାହିଁ । ୬୭ ।
ତୁଷ୍ଟ ପରମେଶ୍ୱର ସେ ତାଙ୍କ ଦରଶନେ ।
ଏତେ ଗୁଣ ବନ୍ଧିଲେ ଯେ ଥିବ ରାତ୍ରି ଦିନେ । ୬୮ ।
ତାର ଆବୋରଣ ଯେବେ ହୋଇଥିବ ଦାସ ।
ରତିକାଳେ ତୁଳସୀ ନ ଥିବ ଅଙ୍ଗ ଦେଶ । ୬୯ ।
ଶୟନ କାଳେ ତୁଳସୀ ଅଙ୍ଗେ ନ ବନ୍ଧିବ ।
ମଳମୂତ୍ର କାଳେ ଅଙ୍ଗୁ କାଢ଼ିଣ ରଖିବ । ୭୦ ।
ହୃଦୁ କାଢ଼ି ରଖିବ ଯେ ଭୋଜନ କାଳେଣ ।
ଏତେ ବିଧି କଲେ ଗୃହୀ ଦୋଷ ନାହିଁ ପୁଣ । ୭୧ ।
ରତିକାଳେ ତୁଳସୀ ଯେ ବନ୍ଧିଥିଲେ ନର ।
ବ୍ରହ୍ମହତ୍ୟା ଦୋଷ ପୁଣି ଲାଗେ ସେ ଅଙ୍ଗର । ୭୨ ।

ମତ୍ସ୍ୟ ଖାଇ ତୁଳସା ବନ୍ଧନ୍ତ ଯେଉଁ ନର ।
ଗୋହତ୍ୟା ପାତକ ଦୋଷ ଲାଗଇ ତାହାର । ୭୩ ।
ମାଁସ ମାଛ ଖାଇଣ ତୁଳସା ବନ୍ଧିଲେ ।
ଯମ ନେଇ ଦଣ୍ଡଇ ଯେ କୁମ୍ଭିପାକଠାରେ । ୭୪ ।
ଜୀବହତ୍ୟା ଦୋଷ କରି ତୁଳସା ବନ୍ଧନ୍ତ ।
ତପତ ବାଲିରେ ଯମଦୂତ ଦଣ୍ଡ ଦଂନ୍ତ । ୭୫ ।
ପରସ୍ତ୍ରି ସ୍ତ୍ରୀ ହରଣ ଯେ ବନ୍ଧନ୍ତି ତୁଳସୀ ।
ଶତେ ଜନ୍ମ କୃମି ହୋଏ ନର୍କକୁଣ୍ଡେ ବସି । ୭୬ ।
ମାଦକ ଦ୍ରବ୍ୟ ଖାଇଣ ବନ୍ଧିଲେ ତୁଳସୀ ।
ହାଣକାଠ ଜନ୍ମ ଯେ ହୁଅଇ ଚଉରାଶୀ । ୭୭ ।
କରମାଳି ଗୋଟିରେ ଯେ ଜପ ପୁଣ କଲେ ।
ଷୋଳନାମ ଏକମାଳି ଗୋଟିକେ ଧଇଲେ । ୭୮ ।
ଛଅଶ କୋଡ଼ିଏ ନାମ ହୋଇଣ ପ୍ରମାଣ ।
ମେରୁକୁ ଲଙ୍ଘି ଭଜିଲେ ପାପ ହୋଏ ପୁଣ । ୭୯ ।
ହୃଦମାଳେ କରମାଳେ କୃଷ୍ଣନାମ ଧର ।
ଯନ୍ତ୍ର ମନ୍ତ୍ର ଗୁରୁମୁଖେ ଶିଷ୍ୟର ଉଦ୍ଧାର । ୮୦ ।
ସେ ଗୁରୁ ଶିଷ୍ୟର ଗତି ହୁଅଇଟି ପୁଣି ।
ଗୁରୁଙ୍କର ଉର୍ଦ୍ଧ ଅଟେ ଯନ୍ତ୍ର ମନ୍ତ୍ର ଗୁଣି । ୮୧ ।
ଜ୍ଞାନହୀନ ହୋଇଲେ ଯେ ଗୁରୁ ବଡ଼ ଦୋଷ ।
ଯନ୍ତ୍ର ମନ୍ତ୍ର ନ ଜାଣିଲେ ନରକରେ ବାସ । ୮୨ ।
ଜ୍ଞାନ ପାଇ ଯନ୍ତ୍ର ମନ୍ତ୍ର ଗୁରୁଂ ଶିଷ୍ୟ ପୁଣ ।
ସେବା ଯେ ନ କଲେ ନର୍କବାସୀ ହୋଏ ଜାଣ । ୮୩ ।
ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଗୁରୁ ମହେଶ୍ୱର ।
ଟନଦେବତାର ଫଳ ଗୁରୁ ଦର୍ଶନର । ୮୪ ।
ଗଙ୍ଗା ଗୋଦାବରୀ ଗଉତମୀ ଯେ କେଦାର ।
ଗୁରୁ ପାଦ ନୀର ଭକ୍ଷି ଏତେ ପୁଣ୍ୟ କର । ୮୫ ।

ନାରାୟଣ ରାମଚନ୍ଦ୍ର, କୃଷ୍ଣଚନ୍ଦ୍ର, ମୂର୍ତ୍ତି ।
ଜଗନ୍ନାଥ ସ୍ୱରୂପ ଯେ ଯୁଗଯୁଗେ ଚନ୍ତ । ୮୬ ।
ଏତେ ବେଗ ସିଦ୍ଧିଫଳ ଗୁରୁମୁଖେ ଦେଲେ ।
ବସ୍ତ୍ର ଅଲଙ୍କାର ଦ୍ରବ୍ୟ ଏହୁ ସମର୍ପିଲେ । ୮୭ ।
ଗୁରୁକୃଷ୍ଣ ଶିଷ୍ୟକୁ ଯେ ନୁହନ୍ତି ଅଭିନ୍ନ ।
ଗୁରୁ ଚନ୍ଦ୍ରାଇଲେ କୃଷ୍ଣମନ୍ତ୍ର କୃଷ୍ଣବର୍ଣ୍ଣ । ୮୮ ।
କୃଷ୍ଣ କୃଷ୍ଣ ଭଜୁଥିଲେ ତୁଳସୀ ମାଳରେ ।
ତୁଳସୀ ଅଙ୍ଗଟି ଗୁରୁ ସୁମର ମନରେ । ୮୯ ।
ମନକୁ ସୁଜାଣ କର ଗୁରୁପାଦେ ଦେଇ ।
ତେବେ ସିନା ଗୁରୁ ଯେ ନିର୍ବାଣ ପଦ ଦେଇ । ୯୦ ।
ତିଳକ ଗୋଷ୍ଠାର ଯେ ପ୍ରାପ୍ତ ସର୍ବ କର ।
ତିଳକ ଲଲାଟେ କର ମନ୍ତ୍ରକୁ ସୁମର । ୯୧ ।
ଓଁ ତୁଳସୀ ଲଗୁ କାନ ମନ୍ତ୍ରଙ୍କ ବର୍ଗର ।
ଓଁ ତୁଳସୀ କରୁ ଭକ୍ତଙ୍କ ବର୍ଗର । ୯୨ ।
ଓଁ ତୁଳସୀ କଣ୍ଠରେ ଯାକେ ଭକ୍ତ ପ୍ରାଣୀ ।
ଓଁ ତୁଳସୀ ଛାପ ଭସ୍ମ ସ୍କନ୍ଧେ ପୁଣି । ୯୩ ।
ତୁଳସୀ ତୁଳସୀ ଅନନ୍ତ ଗୁରୁଙ୍କର ଶିଷ୍ୟ ।
ଓଁ ତୁଳସୀ ଲଗୁ କର୍ଣ୍ଣଦେଶ ମନ୍ତ୍ର ଘୋଷ । ୯୪ ।
ଜପୁ ତୁଳସୀ ଧ୍ୟାନ ତୁଳସୀ ଦେବୀ ନମସ୍ତୁତେ ।
ମନ୍ତ୍ର ବନ୍ଧ ସୁମରିବ ଅଛୁ ଏହୁ ଗ୍ରନ୍ଥେ । ୯୫ ।
କର୍ଣ୍ଣଦେଶେ କଣ୍ଠତଟେ ତୁଳସୀ ବାନ୍ଧିବ ।
ଶ୍ରୀହରି ମନ୍ଦିର ଯାର ଲଲାଟେ ବାନ୍ଧିବ । ୯୬ ।
ସପତକୋଟି ପୁରୁଷ ଯାର ସ୍ୱର୍ଗ୍ୟ ଦିଶେ ।
ଯେ ଜନ ଅଙ୍ଗରେ ମାଳା ତିଳକ ପ୍ରକାଶେ । ୯୭ ।

---

୯୫—୧ ତୁଳସୀ କରୁ ଧ୍ୟାନ (ଖ);

ସୁବୁଦ୍ଧି ମୁକୁନ୍ଦଦାସ ବସ୍ତ୍ରଦାସ କହ୍ନ ।
ବୃନ୍ଦାବତୀ ସେବା କଲେ ବୃନ୍ଦାବନ ପାଇ । ୯୮ ।
ତୁଳସୀ ପତ୍ରବ ଦେଇ ଖୋଳକୁ ପୂଜବ ।
ବାମ ପୁଡ଼ାଗ୍ରରେ ତିନ ପତ୍ରବଟି ଦେବ । ୯୯ ।
ଡାହାଣ ପୁଡ଼ାରେ ଦେବ ବେନି ଯେ ପତର ।
ଦକ୍ଷିଣ କର୍ଣ୍ଣାଳେ ଦେବ ପାଞ୍ଚ ଯେ ପତର । ୧୦୦ ।
ବାମ କରତାଳେ ଦେବ ବେନି ପତ୍ର ନେଇ ।
ଖୋଳ ଯେ କର୍ଣ୍ଣାଳ ପୂଜା ଦ୍ୱାଦଶ ପତ୍ରହିଁ । ୧୦୧ ।
ମାଳା ଯେ ତିଳକ ପୁଣ ହୃଦରେ ଧରିଣ ।
ରାମଚନ୍ଦ୍ର ସୁତ ରଙ୍ଗ ଅଚ୍ୟୁତର ଧ୍ୟାନ । ୧୦୨ ।
ଗୁରୁଭକ୍ତ ହେଲ ତୁମ୍ଭେ ଏ ଭବ ସଂସାରେ ।
ଗୁରୁଙ୍କ ଭଣ୍ଡାର ତୁମ୍ଭେ ଶୁଣିଲ କର୍ଣ୍ଣରେ । ୧୦୩ ।
ମଠ ପ୍ରତି ଦଣ୍ଡେ ଦଣ୍ଡେ ଏ ଗ୍ରନ୍ଥ ପଢ଼ିବ ।
ଗୁପତ କରିଣ କିଛୁ ଦିନ ଏହୁ ଥିବ । ୧୦୪ ।
ମୁକୁନ୍ଦ ପବନ କିଛୁ ଦିନ ତୁମ୍ଭେ ରଖ ।
ଦ୍ୱିଜ ଦୀନବନ୍ଧୁ କିଛୁ ରଖିବ ଯେ ସୁଖ । ୧୦୫ ।
କିଛୁ ଦିନ ଶୂଦ୍ର ଶ୍ୟାମ ରଖିବ ଯେ ପୁଣ ।
ବୈରାଗୀ ବେଶରେ କିଛୁ ଦିନ ସେ ଭ୍ରମଣ । ୧୦୬ ।
ଶୂଦ୍ର ବଇରାଗ ପୁଣ ଗୋପସୁତେ ଦେବ ।
ନଅ ଯେ ଅକ୍ଷର ଅଟେ ସେ ଗୋପନା ହେବ । ୧୦୭ ।
ବଅ ଯେ ଅକ୍ଷର ପୁଣ ବର୍ଣ୍ଣିଣ ଧର ।
କିଛୁ ଦିନ ରଖିବ ସେ ପୁଣ ହୃଦସ୍ଥିର । ୧୦୮ ।
ଡ଼ ଙ ଶେଷ ଯେ ଅକ୍ଷର ସେ ରଖିବ କିଛୁ ।
କଳଙ୍କି ଭକ୍ତ ନିମନ୍ତେ ଏ ଗ୍ରନ୍ଥ ରହିବୁ । ୧୦୯ ।

---

୯୯—୨ ବାମ ଭାଗରେଟି ତିନ (ଙ);
୧୦୦—୧ ଦେବ ତିନ (ଖ);

ଶ୍ରୀକୃଷ୍ଣ କରୁଣା କଲେ ଭକତ ମୁଁ ଜାଣ ।
ପାମର ଅଚ୍ୟୁତ ଗୀତେ ଲେଖିଲେ ଏ ବୋଲ । ୧୧୦ ।

ଇତି ଶ୍ରୀଗୁରୁଭକ୍ତି ଗୀତା କଥନେ ନାମ ପଞ୍ଚତ୍ରିଂଶ ଛାନ୍ଦ ॥



# ଷଟ୍‌ତ୍ରିଂଶ ଛାନ୍ଦ

ଶୁଣ ଆହେ ସୁବୁଦ୍ଧି ଦ୍ୱାଦଶ ଗୋପ ପୋଏ ।
ତ୍ରିପୁର ରାଧା ଯେ ଚନ୍ଦ୍ରାବଳୀ ସଖୀ ହୋଏ । ୧ ।
ଲଳିତା ଭଜନ କର ସର୍ବ ପାପ ହର ।
ଅଷ୍ଟାକ୍ଷର ତ୍ରିପୁର ଯେ ନାମକୁ ସୁମର । ୨ ।
ଅଷ୍ଟାକ୍ଷର ରାଧାମନ୍ତ୍ର ସୁମରଣା କର ।
ଅଷ୍ଟାକ୍ଷର ଲଳିତା ଯେ ମନ୍ତ୍ରକୁ ସୁମର । ୩ ।
ଅଷ୍ଟକୋଣ କରିବ ଯେ ମନ୍ତ୍ରକୁ ବିସ୍ତର ।
କୃଷ୍ଣମନ୍ତ୍ର ଚାରି ପୁଣ ଚାରିଅକ୍ଷର ଧର । ୪ ।
ଏମନ୍ତେଣ ଚାରିଦିଗର ବତିଶ ହୋଇବ ।
ଏକ କୋଣେ ଚାରି ଚାରି ଅକ୍ଷର ବସିବ । ୫ ।
ତ୍ରିପୁର ସୁନ୍ଦରୀ ନାମ ବସିବ ଦ୍ୱିକୋଣେ ।
ଚାରି ଚାରି ଅକ୍ଷର ବନ୍ଧିବ ଯନ୍ତ୍ରସ୍ଥାନେ । ୬ ।
କୃଷ୍ଣ ବଲ୍ଲଭୀ ଲେ ସ୍ୱାହା ରାଧା ମନ୍ତ୍ର ହୋଏ ।
ଦ୍ୱିକୋଣେ ବସିବ ଯନ୍ତ୍ରେ ଚାରି ଚାରି କନ୍ଧେ । ୭ ।
ଲଳିତାଯୈ ନମ ସ୍ୱାହା ବସିବ ଦ୍ୱିସ୍ତର ।
ସାଧୁଜନମାନଙ୍କର ଅଟଇ ଏ ଯୋଗ । ୮ ।
କ୍ଲୀଁ କୃଷ୍ଣାୟ ନମ ବସିବ ଦ୍ୱିକୋଣ ।
ଚାରିରୂପେ ବତିଶ ଯେ ଅକ୍ଷର ପ୍ରମାଣ । ୯ ।
ଲଳିତା ଯେ ଚନ୍ଦ୍ରାବଳୀ ଏକ ମନ୍ତ୍ର କର
ରାଧାକୃଷ୍ଣ ଦୁଇ ମନ୍ତ୍ର ହୃଦେ ଏକ ଧର । ୧୦ ।

---

୬—୨ ବନ୍ଧିବ ଯନ୍ତ୍ର ଠାଣେ (କ);

ସବ ଗୋପୀ ସେବାଫଳ ତ୍ରିପୁର ମନ୍ତ୍ରରେ ।
ଚଉଷଠ କଳା ଅଛୁ ତ୍ରିପୁର ହୃଦରେ । ୧୧ ।
ଏମନ୍ତେଣ ଯନ୍ତ୍ରଗୋଟି କରିବ ଲେଖନ ।
ତୁଳସୀ ଶିଖାରେ ଯନ୍ତ୍ର ଲେଖିଣ ଯତନ । ୧୨ ।
କୃଷ୍ଣମନ୍ତ୍ର ପୀତ ଯେ ବସନ ଏକ ଦେବ ।
ରାଧା ମନ୍ତ୍ରେ ନୀଳ ଶାଢ଼ୀ ଏକ ବେଢ଼ାଇବ । ୧୩ ।
ରଙ୍ଗଶାଢ଼ୀ ଏକ ଯେ ଲଳିତା ମନ୍ତ୍ରେ ଦେଇ ।
ଶୁକଳ ଶାଢ଼ୀ ଯେ ଏକ ତ୍ରିପୁର ମନ୍ତ୍ରହିଁ । ୧୪ ।
କୃଷ୍ଣ ମନ୍ତ୍ର ବନ୍ଧୁ ବସେ ଶୁଣ ସାଧୁଜନ ।
ରାଧାମନ୍ତ୍ର ଅଙ୍କ ମାଝା କରିଣ ଭଜନ । ୧୫ ।
ଦେବ ଅଙ୍ଗ ଅଙ୍କମାଝା ତଳରେ ଅଛଇ ।
ଲଳିତା ସଖୀ ଯେ ମନ୍ତ୍ର ସେଠାରେ ବସଇ । ୧୬ ।
ତଥି ତଳେ ଓଁକାରରେ ତ୍ରିପୁର ମନ୍ତ୍ରହିଁ ।
ଏମନ୍ତେଣ ତତ୍ତ୍ୱବଧି ଶିଷ୍ୟଙ୍କୁ ଯେ କହି । ୧୭ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ଯେ ଭେଦଲେ ଶିଷ୍ୟ କହି ।
ତିନି ଭେଦ ନ ଜାଣିଲେ ଅଗାଡ଼ିଟି ସେହି । ୧୮ ।
ଗୁରୁ ଏହି ତିନି ଭେଦ ନ ଜାଣିଲେ ପୁଣ ।
ଇହ ପରଲୋକେ ହାସ୍ୟ ହୋଏ ତଡ଼ମ୍ବୁଣ । ୧୯ ।
ଏ ତତ୍ତ୍ୱ କହିଣ ଯେ ଶିଷ୍ୟଙ୍କୁ ବୁଝାଇବ ।
ନନ୍ଦଦାସ ବାଳକ ହେ ଦାସ ହେତୁ ଥିବ । ୨୦ ।
ପବନ ଗୋବିନ୍ଦଦାସ ହେତୁ କଲ ମନ ।
ଭୃଥଦାସ ବୃନ୍ଦାବନ କୁଞ୍ଜେ ତୁମ୍ଭ ସ୍ଥାନ । ୨୧ ।
ଗୋପକୁଳ ହଙ୍କାରବ ଓଡ଼ିଶା ଦେଶର ।
ବ୍ରହ୍ମାସଦାସଙ୍କୁ ଘେନିଥିବ ଯେ ସଙ୍ଗର । ୨୨ ।
ଚନ୍ଦନ ବ୍ରହ୍ମାସଦାସ କର୍ଣ୍ଣଦାସ ତଥା ।
ଶ୍ରୀକୃଷ୍ଣ କରୁଣା କଲେ ଠାକୁର ନଦୀଆ । ୨୩ ।

ତାଙ୍କ ନାମ ସୁମରଣ କୃଷ୍ଣ ରାଧା ଘୋଷ ।
ପାମର ଅର୍ଚ୍ଚିତ କୃଷ୍ଣ ଚରଣକୁ ଆଶ । ୨୪ ।
ଗୁରୁଭକ୍ତିଗୀତା ପଢ଼ ପାଇବ କାରଣ ।
ଗୁରୁ ମୁଖେ ପଢ଼ିଲେ ପଣ୍ୟ ହରଣ । ୨୫ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଅଷ୍ଟବିଂଶ ଗ୍ରନ୍ଥ ॥



## ସପ୍ତବିଂଶ ଛାନ୍ଦ

ବନ୍ଦିବା ଶ୍ରୀ ଗୁରୁଦେବ ମନ୍ତ୍ରବିଧି ଯେତେ ।
ଗୋପାଳ ଯେ ମନ୍ତ୍ରବିଧି ଅଟଇ ଯେମନ୍ତେ । ୧ ।
ଶୁଣ ହେ ବାଳକଦାସ ମନ୍ତ୍ରର ବିସ୍ତର ।
ଭଗତଜନ ଜାଣନ୍ତୁ ତନ୍ତ୍ରର ଯେ ସାର । ୨ ।
ଛନ୍ଦବିଧି ନ ଜାଣିଲେ ପାଦଶୂନ୍ୟ ଯେସନ୍ତେ ।
ମନ୍ତ୍ରବିଧି ନ ବୁଝିଲେ ଶୁଣ ସାଧୁଜନେ । ୩ ।
କଣ୍ଠୀ ନ ଧଳର ପ୍ରାୟେ ଷଡ଼ାଙ୍ଗ ନ ଜାଣି ।
ମନ୍ତ୍ରସିଦ୍ଧି ନୁହଇ ଯେ ଷଡ଼ାଙ୍ଗ ନ ଗୁଣି । ୪ ।
ଅଙ୍ଗନ୍ୟାସ ନ ଜାଣିଲେ ହୃଦ ନୋହେ ପୁଣ ।
ସାଧୁଜନ ଗୋଷ୍ଠିରେ ଯେ ନୁହନ୍ତି ପ୍ରମାଣ । ୫ ।
କରନ୍ୟାସ ନ ଜାଣିଲେ ତାହୁ ପୁଣ ନାହିଁ ।
ମନ୍ତ୍ରଭେଦ ନ ଜାଣିଲେ ବଇଷ୍ଣବ ଭାହିଁ । ୬ ।
ଧ୍ୟାନ ଯେ ସମାଧି ନ ଜାଣିଲେ ଶିର ନୋହେ ।
ବାସପଣେ ଅଲେଖା ସେ ଛପଦାସ ପାଏ । ୭ ।
ଛନ୍ଦ ଲକ୍ଷ ଭେଦ ଯେତୁ ନ ଜାଣି ଭଜଇ ।
ଭଗତ ଯେ ଅପ୍ରାପତ କୃଷ୍ଣଙ୍କୁ ନ ପାଇ । ୮ ।
ମନ୍ତ୍ରର ଆସନ ଶୁଦ୍ଧି ନ ଜାଣିଲେ ପୁଣ ।
ଧ୍ୟାନ ମଧ୍ୟେ ଅଗାଢ଼ ଯେସନ ପରମାଣ । ୯ ।
ମନ୍ତ୍ର ମଧ୍ୟେ ଜଡ଼ ଯନ୍ତ୍ର ନ ଜାଣିଣ ଦାସ ।
ମନ୍ତ୍ର ଜପେ କାର୍ଯ୍ୟ ନାହିଁ ହୋଇବାକ ବାସ । ୧୦ ।
ମନ୍ତ୍ରଭେଦେ ଅମନ୍ଦା ଯେ ଜନ ନ ଜାଣି ।
ମନ୍ତ୍ରଜପ କରିବାର ବ୍ୟର୍ଥ ସେ ପୁଣି । ୧୧ ।

---

୩—୨ ମନ୍ତ୍ରବିଧି ନୋହଇ ଯେ (ଖ);

ମନ୍ତ୍ରଭେଦେ ମହାପରସାଦ ଯେ ନ ଜାଣେ ।
ପଶୁ ଅଟେ ସେ ଜନ ଯେ ବ୍ରହ୍ମା ପରମାଣେ । ୧୨ ।
ମନ୍ତ୍ରବିଧି କହିବା ହେ ଶୁଣ ହେରୁମନ ।
ଅଷ୍ଟାଦଶ ଅକ୍ଷର ଯେ ମନ୍ତ୍ରର ବିଧାନ । ୧୩ ।
ଜନବଲ୍ଲଭସ୍ୱ ଷଡ଼ ଅକ୍ଷର ଯେ କହୁ ।
ବଲଭଦ୍ର ସୁଦର୍ଶନ ଅ ଶୀଜାତ ହୋଇ । ୧୪ ।
ଗୋପୀଗୋବିନ୍ଦାୟ ଯେ ସୁଭଦ୍ରା ବୋଲି ଜାଣ ।
କ୍ଲୀଁ କୃଷ୍ଣାୟ ନମ ଜଗନ୍ନାଥ ପୁଣ । ୧୫ ।
ବଲଭଦ୍ର ଚନ୍ଦ୍ରାବଳୀ ରାଧା ସୁଭଦ୍ରାହ୍ମ ।
ଜଗନ୍ନାଥ କୃଷ୍ଣଚନ୍ଦ୍ର ସ୍ୱରୂପ କହୁ । ୧୬ ।
ଏ ପଞ୍ଚ ମୂରତି ଯେହୁ ମନ୍ତ୍ରରେ ବୁଝିବ ।
ମନ୍ତ୍ରରେ ଆସନ ଦେଇ ମନ୍ତ୍ରରେ ପୂଜିବ । ୧୭ ।
ନମ ଦୁଇ ଅକ୍ଷର ଯେ ପୃଥିବୀ ଅଟଇ ।
ଏ ଆସନେ ପଞ୍ଚରୂପ ବସାଇବ ନେଇ । ୧୮ ।
ବଲ୍ଲଭସ୍ୱ ଚତୁରକ୍ଷର ଜଳ ଯେ ଅଟଇ ।
ଏ ମନ୍ତ୍ରେ ଜଳ କୁମ୍ଭ ଥୋଇବାକ ନେଇ । ୧୯ ।
ଗୋପୀଜନ ଛଡ଼ରସ ଚତୁରକ୍ଷର ପୁଣ ।
ଏମନ୍ତ୍ରେ ଯେ ଉପହାର ଥୋଇ ସେଠାରେଣ । ୨୦ ।
ନମ ବେଦ ଅକ୍ଷର ସେ ପତ୍ର ଅଟଇ ।
ଏମନ୍ତ୍ରେ ଯେ ପଦ୍ମଗୋଟି ରଖିବ ସେଠାଇଁ । ୨୧ ।
ଗୋବିନ୍ଦାୟ ଚତୁରକ୍ଷର ଅର୍ମଣିହା ହୋଏ ।
ଅର୍ମଣିହା ଅଙ୍ଗ ତେବେ ସାଧୁ ଯେ ନ ପାଏ । ୨ ।
ବଲ୍ଲଭସ୍ୱ ଚତୁରକ୍ଷର ଅଟଇ ଆସନ ।
କୃଷ୍ଣଙ୍କୁ ଆସନ ବିଧି ଦେବ ସାଧୁଜନ । ୨୩ ।
ଗୋପୀଜନ ଚତୁରକ୍ଷର ମଣୋହୃଟି ହୋଇ ।
ସାଧୁଜନ ସେବିଲେ ଏ ମନ୍ତ୍ର ଭେଦ ପାଇ । ୨୪ ।

ବଲ୍ଲଭାସ୍ୟ ସ୍ୱବକ୍ଷର ଅଟେ ଆତ୍ମେବନ ।
ଏ ମନ୍ତ୍ରେଣ ମନ୍ତ୍ରସିଦ୍ଧି ଅଟଇ ବିଧାନ । ୨୫ ।
ମହାପରସାଦ ନମ ଅକ୍ଷର ଯେ ଦୁଇ ।
ଏମନ୍ତ ଯେ ମନ୍ତ୍ରଭେଦ ଜ୍ଞାନ୍ୟ ଥିଲେ ପାଇ । ୨୬ ।
କରେ ଜପ କରିବ ଯେ କରନ୍ୟାସ ପୁଣ ।
ହସ୍ତଗୋଟି ଶୁଦ୍ଧହେବ ଏମନ୍ତ୍ରେଣ ଶୁଣ । ୨୭ ।
ଅଙ୍ଗୁଷ୍ଠିରେ କ୍ଲୀଁକାର ଅକ୍ଷର ଶୁଦ୍ଧ କର ।
ତେବେ ସିନା ଯୋଗରେ ଯେ ହସ୍ତ ନେଇ ଧର । ୨୮ ।
କୃଷ୍ଣାୟ ତନ ପଲ୍ଲବ ତର୍ଜନୀରେ ଧର ।
ଅମଣିହା ଧଇଲେ ଯେ ପାପଦୋଷ୍ଟ ଭର । ୨୯ ।
ଗୋବିନ୍ଦାୟ ସ୍ୱବକ୍ଷର ସ୍ୱର ପଲ୍ଲବରେ ।
ମଧ୍ୟାଙ୍ଗୁଳି ଶୁଦ୍ଧ କର ଅମଣିହା ଧରେ । ୩୦
ଅନାମିକା ଅଙ୍ଗୁଷ୍ଠିରେ ଗୋପୀଜନ ଧର ।
ତେବେ ସିନା ହସ୍ତଗୋଟି ଶୁଦ୍ଧ କର ପାର । ୩୧ ।
ବଲ୍ଲଭାସ୍ୟ ସ୍ୱକ୍ଷର କନିଷ୍ଠାରେ ଧର ।
ଏମନ୍ତ ଭେଦ ଜାଣିଲେ ଯୋଗ ଶୁଦ୍ଧି କର । ୩୨ ।
ନମ ବେନି ଅକ୍ଷର ଯେ ବେନି କରସ୍ଥଳେ ।
ନଅକୁ ଦକ୍ଷିଣ କର ମଅ ବାମବେଳେ । ୩୩ ।
ଅଙ୍ଗଶୁଦ୍ଧି କରିବ ଯେ ମନ୍ତ୍ର ଜପ କର ।
ତେବେ ସିନା ଯୋଗରେ ଗମିବ ଏହୁ ସର । ୩୪ ।
କ୍ଲୀଁକାର ଅକ୍ଷର ହୃଦ ସ୍ଥାନରେ ବସାଇ ।
ହୃଦସ୍ଥଳ ଗୋଟି ତେବେ ପୁଣ ଶୁଦ୍ଧ ହୋଇ । ୩୫ ।
କୃଷ୍ଣାୟ ତନ ଅକ୍ଷର ଶିରରେ ବହିବ ।
ତେବେ ଅଙ୍ଗ ଶୁଦ୍ଧି ହେବ ଅମଣିହା ଦେବ । ୩୬ ।

---

୨୫-୨ ମନ୍ତ୍ରବିଧି (କ); ୨୬-୨ ମନ୍ତ୍ରବିଧି (ଖ);

ଗୋବିନ୍ଦାୟ ଚତୁରକ୍ଷର ଶିଖାରେ ବସାଇ ।
ତେବେ ହେଲାକ ଗୋଟି ଶୁଦ୍ଧ ପୁଣ ହୋଇ । ୩୭ ।
ଗୋପୀଜନ ଚତୁରକ୍ଷର କବଚରେ ଧର ।
କଣ୍ଠଗୋଟି ଶୁଦ୍ଧହେବ ଏମନ୍ତ ସୁମର । ୩୮ ।
ବଲ୍ଲଭାୟ ଚତୁରକ୍ଷର ନେତ୍ରରେ ଧରିବ ।
ଅମଣିବାଠାରେ ନେତ୍ର ନିଶ୍ଚଳେ ରହିବ । ୩୯ ।
ସର୍ବ କରସ୍ଥଳେ ଅଙ୍ଗେ ନମ ବେଳାକ୍ଷର ।
ଅଙ୍ଗନ୍ୟାସ କରନ୍ୟାସ ଏମନ୍ତ ସୁମର । ୪୦ ।
ଷଡ଼ାଙ୍ଗ କରିବ ପୁଣ ଅଙ୍ଗରେ ଯେ ପୁଣ ।
ଷଡ଼ାଙ୍ଗରେ ଭେଦ ଅଟେ ବୈଷ୍ଣବ ଲକ୍ଷଣ । ୪୧ ।
କ୍ଲୀଁ କୃଷ୍ଣାୟ ହୃଦ ପଦ୍ମରେ ବସିବ ।
ହୃଦସ୍ଥଳ ଗୋଷ୍ଠାକୁ ଯେ ପୁଣ ଶୋଧି ନେବ । ୪୨ ।
ଗୋବିନ୍ଦାୟ ଚତୁରକ୍ଷର ନେତ୍ରରେ ବସାଇ ।
ନେତ୍ର ସ୍ଥଳ ଗୋଷ୍ଠା ପୁଣ ଶୋଧିବ ଯେ ନେଇ । ୪୩ ।
ଗୋପୀଜନ ବୋଲିଣ ଯେ ମୁଖରେ ଧରିବ ।
ଏମନ୍ତେଣ ମୁଖସ୍ଥଳ ଶୋଧନ କରିବ । ୪୪ ।
ବଲ୍ଲଭାୟ ଚତୁରକ୍ଷର ଶିରରେ ବସାଇ ।
ତେବେ ସିନା ଶିରଗୋଟି ଶୋଧନ ଯେ ହୋଇ । ୪୫ ।
ଗୋପୀଜନ ଚତୁରକ୍ଷର ବାହୁ ଚେନ୍ନ ବସେ ।
ଏମନ୍ତେଣ ମନ୍ତ୍ରଶୋଧି କରି ପାପ ନାଶେ । ୪୬ ।
ବଲ୍ଲଭାୟ ଚତୁରକ୍ଷର ହୃଦସ୍ଥମଣ୍ଡଳ ।
ନାମକୁ ସୁମରି ଶୋଧ ହୃଦସ୍ଥ କମଳ । ୪୭ ।
ପୁଣ ଦେହ ଦେଉଳକୁ କରିବ ସୁଷମ ।
ଏକସ୍ଥାନେ ଏକକ୍ଷର ବସିବ ଉତ୍ତମ । ୪୮ ।
କ୍ଲୀଁ ଅକ୍ଷର ଶିର ଉପରେ ବସିବ ।
ଛବାର ଶୋଧନ ପୁଣ ଏମନ୍ତେଣ ହେବ । ୪୯ ।

କ୍ଲୁ ଯେ ଅକ୍ଷର ପୁଣ ବସିବ କପାଳ ।
ଯୋଗ ସେବା ଅଙ୍ଗ ତେବେହୋଇବ ସଫଳ । ୫୦ ।
ଷ୍ଣ ଯେ ଅକ୍ଷର ପୁଣ ବସିବ ଭ୍ରୂମଧ୍ୟେ ।
ଦକ୍ଷିଣ କର୍ଣ୍ଣରେ ସ୍ୱଅ ବସିବ ସେ ଶୁଦ୍ଧେ । ୫୧ ।
ଗୋ ଯେ ଅକ୍ଷର ବାମ କର୍ଣ୍ଣରେ ବସଇ ।
ବି ଯେ ଅକ୍ଷର ନେତ୍ର ଦକ୍ଷିଣେ ବସଇ । ୫୨ ।
ନ୍ଦା ଯେ ଅକ୍ଷର ବାମ ନେତ୍ରେ ବସେ ପୁଣ ।
ସ୍ୱ ଯେ ଦକ୍ଷିଣ ନାସା ରନ୍ଧ୍ରେ ବସେ ଶୁଣ । ୫୩ ।
ଗୋ ଯେ ଅକ୍ଷର ବାମ ନାସା ରନ୍ଧ୍ରେ ରହେ ।
ପୀ ଯେ ଅକ୍ଷର ମୁଖେ ବସିବ ସେନେହେ । ୫୪ ।
ଜଅ ଯେ ଅକ୍ଷର ପୁଣ କଣ୍ଠରେ ବସଇ ।
ନ ଯେ ଅକ୍ଷର ପୁଣ ହୃଦୟରେ ରହି । ୫୫ ।
ବ ଯେ ଅକ୍ଷର ପୁଣ ନାଭିରେଣ ବସେ ।
ଲ୍ଲ କ୍ଷର ଦକ୍ଷିଣ ଯେ କଟୀରେ ପ୍ରକାଶେ । ୫୬ ।
ଭା କ୍ଷର ବାମଭାଗ କଟୀରେ ବସଇ ।
ସ୍ୱ ଯେ ଅକ୍ଷର ପୁଣ ଲିଙ୍ଗରେ ବସଇ । ୫୭ ।
ନଅ ଯେ ଅକ୍ଷର ପୁଣ ଜାନୁରେଣ ବସେ ।
ପଅ ଯେ ଅକ୍ଷର ପୁଣ ପାଦରେ ପ୍ରକାଶେ । ୫୮ ।
ଏମନ୍ତେଣ ଅଷ୍ଟାଦଶ ଅକ୍ଷର ବିସ୍ତର ।
ମାତୃକା କରିବ ହୃଦେ ଗୁରୁଙ୍କୁ ସୁମରି । ୫୯ ।
କୀଲଇଁ କୃଷ୍ଣାୟ ସ୍ୱାହା କୃଷ୍ଣ ରୂପ ଚନ୍ଦ୍ର ।
ଯୋଗସିଦ୍ଧି ଏମନ୍ତେଣ ହସିଲ ହୃଅନ୍ତ୍ର । ୬୦ ।
ଗୋପୀ ଗୋବିନ୍ଦାୟ ରାଧା ସୁମରଣା କରି ।
ଯୋଗର ହସିଲ ତେବେ ଦାସ କର ପାରି । ୬୧ ।
ଜନବଲ୍ଲଭସ୍ୟ ଚନ୍ଦ୍ରାବଳୀକି ସୁମର ।
ତେବେ ସିନା ଯୋଗ ସିଦ୍ଧି ଦାସର ବିସ୍ତର । ୬୨ ।

୬୨—୨ ହୃଅଇ ବସ୍ତୁର (ଖ);

ଜନ ଛଡ଼େ ଗୋପୀଜାକୁ ପୂଜା କରି ଦାସ ।
ଜନ ଛଡ଼େ ଲଳିତା ଯେ ହୁଅନ୍ତ ସନ୍ତୋଷ । ୬୩ ।
ଏମନ୍ତେଣ ପଞ୍ଚରୂପ ଗୋପାଲ ମନ୍ତ୍ରକୁ ।
ସେବାବଧି ନରନ୍ତରେ ଖଞ୍ଜିବ ତାହାଙ୍କୁ । ୬୪ ।
ପାଞ୍ଚସ୍ୱର ଧରିବ ଯେ ଛଡ଼ି ସ୍ୱର କରି ।
ମନ୍ତ୍ରଗୋଟି ବସାଇବ ମନ୍ତ୍ରକୁ ସୁମରି । ୬୫ ।
ପ୍ରଥମେ ବସିବ ଜନ ବଲ୍ଲଭସ୍ୱ ପୁଣ ।
ବଲଭଦ୍ର ସ୍ୱରୂପ ଅଟଇ ପରମାଣ । ୬୬ ।
ଗୋପୀ ଗୋବିନ୍ଦାୟ ଛଡ଼ି ବସାଇବ ପାଶେ ।
ସୁଭଦ୍ରା ସ୍ୱରୂପ ସେ ତ ସ୍ୱୟଂ ପରକାଶେ । ୬୭ ।
କ୍ଲୀଁ କୃଷ୍ଣାୟ ନମ ଜଗନ୍ନାଥ କହି ।
ଅଷ୍ଟାଦଶାକ୍ଷର ମନ୍ତ୍ର ଗୋପାଲ ଅଟଇ । ୬୮ ।
ଜନବଲ୍ଲଭସ୍ୱ ଛଡ଼ି କୃଷ୍ଣ ପାଶେ ବସେ ।
ସୁଦର୍ଶନ ସ୍ୱରୂପ ସେ ଭକ୍ତଜନ ତୋଷେ । ୬୯ ।
ଜନବଲ୍ଲଭସ୍ୱ ତଥି ପାଶରେ ବସଇ ।
ଶ ବୀଜାଦି ସ୍ୱରୂପ ସେ ସିଂହାସନ କହି । ୭୦ ।
ତୁଳସୀ ଶିଖା ଲେଖନେ ଯନ୍ତ୍ରକୁ ଲେଖିବ ।
ବିବିଧ ଯେ ବସ୍ତ୍ରମାନ ଯନ୍ତ୍ରେ ପୁଣ ଦେବ । ୭୧ ।
ଶିଷ୍ୟ ବୋଧ ହୋଇବ ଯେ ମନ୍ତ୍ର ଦରଶନେ ।
ଗୁରୁଦେବୁ ସେବ ଶିଷ୍ୟ ଧରିବ ଯେ ମନେ । ୭୨ ।
ତତ୍ତ୍ୱସାର ବୁଝାଇବ ମନ୍ତ୍ରଗୋଟି ପୁଣ ।
ତେବେ ଅଣଦେବରୁ ଶିଷ୍ୟ ଦେବରୁ ହେବ ପୁଣ । ୭୩ ।
କ୍ଲୀଁ ଅକ୍ଷର ଛଡ଼ି ବିନ୍ଦୁରେ ବସାଇ ।
ଗୋପୀ ଛଡ଼ି ଅକ୍ଷର ଯେ ଅର୍ଦ୍ଧମାତ୍ରା ରହି । ୭୪ ।

---

୬୩—୧ ପାଠାନ୍ତ (ଗ);

ଜନ ଛଡ଼ ଅକ୍ଷର ଯେ ଅଙ୍ଗୁଳି ଉପର ।
ଗାଉଥିଲେ ବସିବ ଯେ ଜନ ଛଡ଼କ୍ଷର । ୭୫ ।
ପୁଣ ତଥି ତ କାରରେ ଜନକୁ ବସାଇ ।
ବଳ ସୁଦର୍ଶନ ଅ ବୀଜାଦ୍ୟ ଜନ ତହିଁ । ୭୬ ।
ତ କାର ଯେ ଅ ବୀଜାଦ୍ୟ ଗାର ବଳଦେବ ।
ଅଙ୍ଗୁଳି ଯେ ସୁଦର୍ଶନ ଭଦ୍ରା ଅଙ୍କ ଭାବ । ୭୭ ।
ବନ୍ଧୁ କୃଷ୍ଣ ଅଟଇ ଯେ ପଞ୍ଚରୂପ କହୁ ।
ବିନା ଗୁରୁ ନ କହିଲେ ଏ ଭେଦ ନ ପାଇ । ୭୮ ।
ଚ୍ଚାର ବେଦ ଅଷ୍ଟାଦଶ ପୁରାଣହିଁ ପଢ଼େ ।
ଗୀତା ଭାଗବତ ଛଡ଼ ଶାସ୍ତ୍ର ସ୍ମୃରେ ବଢ଼େ । ୭୯ ।
ସାକ୍ଷୀ ଯେ ଶବଦ ଚଉଦଶା ପଦ ଗାଏ ।
ବହୁଧ ଯେ ମନ୍ତ୍ରମାନ ଜାନ ଭେଦ ବାଏ । ୮୦ ।
ଏ ସବ ଅଟଇ ବଡ଼ ପଣର କାରଣ ।
ମନ୍ତ୍ରଭେଦ ନ ଜାଣିଲେ ଗଣ୍ଡ ନୋହେ ପୁଣ । ୮୧ ।
ସଖା ଅଙ୍ଗ ବୁଝିବ ଯେ ଗୋପାଳମନ୍ତ୍ରରେ ।
ଏକ ସଖା ସୁମଣ୍ଡଳ ଏତ ଯେ ଅକ୍ଷରେ । ୮୨ ।
କ୍ଲିଙ୍ଗ ଅକ୍ଷରେ କୃଷ୍ଣରୂପକୁ ଗୁଣିମ ।
କୃଷ୍ଣକ୍ଷରେ ସୁଦାମ ଯେ ମନରେ ଘେନିମ । ୮୩ ।
ଯ୍ୟ ଯେ ଅକ୍ଷର ପୁଣ ଦାମ ସଖା ଧର ।
ଗୋ କ୍ଷର ସୁଦାମ ସଖା ହୃଦରେ ବିଚାର । ୮୪ ।
ବ ଯେ ଅକ୍ଷର ପୁଣ ଶ୍ରୀବତ୍ସ ଗୁଣିଣ ।
ଦା ଯେ ଅକ୍ଷର ପୁଣ ସାତ୍ତ୍ୱିକ ପ୍ରମାଣ । ୮୫ ।
ଯ୍ୟ ଯେ ଅକ୍ଷର ପୁଣ ଅକ୍ରୂର ଅଟଇ ।
ଗୋ ଯେ ଅକ୍ଷର ପୁଣ ଉଦ୍ଧବ ଯେ କହ୍ନ । ୮୬ ।

---

୮୩—୨ ଷ୍ଣ କ୍ଷରେ (ଖ);

ଗୀ ଯେ ଅକ୍ଷର ପୁଣ ଚନ୍ଦ୍ରର ପ୍ରମାଣ ।
ନ ଯେ ଅକ୍ଷର ପୁଣ ସନ୍ତୋଷ ବୋଲଣ । ୮୭ ।
ନ ଯେ ଅକ୍ଷର ପୁଣ ଯାଦବଟି ହୋଇ ।
ଦ ଯେ ଅକ୍ଷର ପୁଣ ସୁନନ୍ଦ ବୋଲଇ । ୮୮ ।
ନ ଯେ ଅକ୍ଷର ପୁଣ ବୃନ୍ଦାନନ୍ଦ ଜାଣ ।
କୃଷ୍ଣର ଦ୍ୱାଦଶ ସଙ୍ଗା ଏମନ୍ତ ପ୍ରମାଣ । ୮୯ ।
କୃଷ୍ଣ ଅଙ୍ଗ ସୁମରିଲେ ତେର ପୁଣ ହୋଏ ।
ଯଦୁବଂଶ ଗୋପାଳ ଯେ ଏହୁ ଭେଦ ପାଏ । ୯୦ ।
କୃ ଯେ ଅକ୍ଷର ପୁଣ ବଳଭଦ୍ର ହୋଇ ।
ଷ୍ଣା ଯେ ଅକ୍ଷର ସଖା ସୁବଳଟି କହି । ୯୧ ।
ସ୍ୱ ଯେ ଅକ୍ଷର ପୁଣ ସୁରଥ ପ୍ରମାଣ ।
ନ ଯେ ଅକ୍ଷର ପୁଣ ଲୋକପାଳ ଜାଣ । ୯୨ ।
ମ ଯେ ଅକ୍ଷର ପୁଣ ଧର୍ମ୍ମାନନ୍ଦ କହି ।
ବଳଭଦ୍ର ସ୍ୱରସଖା ଏମନ୍ତଟି ହୋଇ । ୯୩ ।
ବଳଭଦ୍ର ମିଶିଣ ଯେ ପଞ୍ଚହୋଏ ପୁଣ ।
କୃଷ୍ଣ ତେର ମିଶାଇଲେ ଅଷ୍ଟାଦଶ ଗୁଣ । ୯୪ ।
ସଖୀ ସଖା ଯୁଗଳ ଯେ କରବ ଧିଆନ ।
ସଖୀ ଅଙ୍ଗ ମନ୍ତ୍ରଭେଦେ ବୁଝି ସାଧୂଜନ । ୯୫ ।
କ୍ଳୀଁ ଅକ୍ଷରେ ରାଧାଶ୍ୟାମ କର ଲକ୍ଷ୍ୟ ।
କ୍ଷ୍ଣା କ୍ଷରେ ସୁଦାମ ଯେ ସଖୀ କର ଲକ୍ଷ୍ୟ । ୯୬ ।
ସ୍ୱ ଅକ୍ଷରେ ଶ୍ରୀମତୀ ଯେ ସଖୀ କର ଜ୍ଞାନ ।
ହରପ୍ରିୟା ଗୋ ଅକ୍ଷରେ କରିବ ଯେ ଧ୍ୟାନ । ୯୭ ।
ସୁଗନ୍ଧକା ସଖୀ ବଇ ଅକ୍ଷରେ ଗୁଣିଣ ।
ବନ ତରଙ୍ଗଣୀ ସଖୀ ଦା ଅକ୍ଷରେ ପୁଣ । ୯୮ ।
ସ୍ୱ ଯେ ଅକ୍ଷରେ ପୁଣ ମଧୁବନ୍ତୀ ହୋଏ ।
ଗୋ ଅକ୍ଷରେ ପ୍ରିୟା ନାମେ ଗୋପୀ ପୁଣ ରହେ । ୯୯ ।

ପୀ ଅକ୍ଷରେ ସୁପ୍ରିୟା ଯେ ଗୋପୀ ପୁଣ ବନ୍ଧୁ ।
ଜ ଅକ୍ଷରେ ଶଶୀରେଖା ଗୋପୀ ଯେ ଅଛଇ । ୧୦୦ ।
ନ କ୍ଷରେ ହରପ୍ରିୟା ସଖୀ ହୋଏ ପୁଣ ।
ବ କ୍ଷରେ ଲୀଳାବତୀ ସଖୀ ପରମାଣ । ୧୦୧ ।
ଲ୍ଲ କ୍ଷରେ ମାଳତୀ ଯେ ସଖୀ ପୁଣ କହୁ ।
ଏମନ୍ତେ ଦ୍ୱାଦଶ ଗୋପୀ ମନ୍ତ୍ରରେ ଅଛଇ । ୧୦୨ ।
ରାଧା ସଙ୍ଗେ ତେରଗୋପୀ ରାଧା ମିଶ୍ରି ପୁଣ ।
ସାଧୁଜନମାନେ ମନ୍ତ୍ର ଗୁରୁମୁଖେ ଶୁଣ । ୧୦୩ ।
କୃଷ୍ଣ ଅକ୍ଷରରେ ପୁଣ ରେବତୀ ଶୁଣିମ ।
ଷ୍ଣା ଯେ ଅକ୍ଷର ସଖୀ ମାଳତୀ ଉତ୍ତମ । ୧୦୪ ।
ସ୍ୱ ଯେ ଅକ୍ଷର ପୁଣ ସେବତୀ ଅଟଇ ।
ନ କ୍ଷର ମରୁଆ ଯେ ସଖୀ ବୋଲି କହୁ । ୧୦୫ ।
ଦମ୍ଭଣୀ ସଖୀ ସେ ମ'ଅ ଅକ୍ଷର ଅଟଇ ।
ଏମନ୍ତେଣ ପଞ୍ଚ ସଖୀ ରେବତୀ ସଙ୍ଗେଇ । ୧୦୬ ।

ପଞ୍ଚତେର ଅଷ୍ଟାଦଶ ସଖୀ ପୁଣ ହୋଇ ।
ଗୋପୀ ଯେ ଗୋପାଳ ପୁଣ ଯୁଗଳ ଅଟଇ । ୧୦୭ ।
ଧ୍ୟାନ ଯେ କରିବ ପୁଣ ଯନ୍ତ୍ର ହେତୁ କରି ।
ବାମପଣେ ସିଦ୍ଧି କର ଗୁରୁଙ୍କୁ ପଚାରି । ୧୦୮ ।
ପୂର୍ବଦଗେ ଉଦ୍ଧବ ଯେ ଗୋପାଳ ଅଛଇ ।
ଗୋପପୋଷ୍ୟେ ସତର ଯେ ସହସ୍ର ସଙ୍ଗେଇ । ୧୦୯ ।
ଐଶାନ୍ୟ କୋଣରେ ପୁଣ ସାତ୍ତ୍ୱିକ ରକ୍ଷଣ ।
ସହସ୍ର ଗୋପାଳ ତାଙ୍କ ସଙ୍ଗତରେ ପୁଣ । ୧୧୦ ।
ଏମନ୍ତ ଯେ ଅଷ୍ଟାଦଶ ପୂର୍ବଦଗ କହୁ ।
ଐଶାନ୍ୟ ପୂର୍ବ ବୋଲିଣ ଦଗ ପୁଣ ହୋଇ । ୧୧୧ ।
ଯାଦବ ଗୋପାଳ ଯେ ଉତ୍ତର ଦଗେ ସ୍ଥାନ ।
ଧନସସ୍ର ଗୋପାଳ ଯେ ସଙ୍ଗରେ ଘେନଣ । ୧୧୨ ।

ବାୟୁବ୍ୟ କୋଣରେ ନନ୍ଦ ଗୋପାଳ ଯେ ରହେ ।
ଷୋଳସହସ୍ର ଗୋପାଳ ଯେ ତାଙ୍କ ସଙ୍ଗେ ଥାଏ । ୧୧୩ ।
ଊଣାଇଶ ସହସ୍ର ଯେ ଉତ୍ତର ଦିଗେଣ ।
ଉତ୍ତର ଦିଗରେ ଅଟେ ବାୟୁବ୍ୟ ଯେ କୋଣ । ୧୧୪ ।
ପଶ୍ଚିମ ଦିଗରେ କୃଷ୍ଣ ଅଛନ୍ତି ଯେ ରହି ।
ଚଉଦସହସ୍ର ଗୋପାଳ ଯେ ତାଙ୍କ ସଙ୍ଗେ ଥାଇ । ୧୧୫ ।
ନଇଋତ ଦିଗରେ ଯେ ବନ୍ଧୁର ସଙ୍ଗେଣ ।
ଗୋପାଳ ଯେ ସାତସହସ୍ର ଅଛନ୍ତି ପାଖେଣ । ୧୧୬ ।
ପଶ୍ଚିମ ଯେ ନଇଋତ ଏକ ଦିଗ ହୋଏ ।
ନବସହସ୍ର ଗୋପାଳ ଯେ ଦୁଇଦିଗେ ଥାଏ । ୧୧୭ ।
ସଞ୍ଜୟ ବରଜ ଯେ ଦକ୍ଷିଣଦିଗେ ପୁଣ ।
ଶତ ଯେ ସହସ୍ର ଗୋପ ତାଙ୍କ ସଙ୍ଗତେଣ । ୧୧୮ ।
ଅଗ୍ନିକୋଣେ ସନ୍ନନ୍ଦ ବରଜ ଯେ ରହେ ।
ଷୋଳସହସ୍ର ଗୋପାଳ ଯେ ତାଙ୍କ ସଙ୍ଗେ ଥାଏ । ୧୧୯ ।
ସୁଦାମ ଯେ ସଖା ପୁଣ ପୂର୍ବରେ ରହିଣ ।
ସଖା ମଧ୍ୟେ ସାର ଏହୁ ଅଟନ୍ତି ଯେ ପୁଣ । ୧୨୦ ।
ପଶ୍ଚିମ ଦିଗରେ ପୁଣ ଦାମ ସଖା ରହି ।
ଏହି ସଖା ସାର ପୁଣ ଗୋପାଳରେ କହି । ୧୨୧ ।
ସୁବାହୁ ସଖା ଯେ ପୁଣ ଦକ୍ଷିଣ ଦିଗରେ ।
ପ୍ରଧାନ ଅଟନ୍ତି ଏହୁ ଗୋପାଳ ମଧ୍ୟରେ । ୧୨୨ ।
ଉତ୍ତର ଦିଗରେ ସଖା ଶ୍ରୀବତ୍ସ ଯେ ରହେ ।
ଶ୍ରୀବତ୍ସ ପଶ୍ଚିମ ଦିଗେ ଦାମ ସଙ୍ଗେ ଥାଏ । ୧୨୩ ।
ଦାମ ଯେ ସୁଦାମ ସଖା ଅଟନ୍ତି ସୁବଳ ।
ସୁବାହୁ ଶ୍ରୀବତ୍ସ ଗୋପଶ୍ରେଷ୍ଠ ଅଟେ ଭଲ । ୧୨୪ ।
ପଶ୍ଚିମ ଦିଗରେ କୃଷ୍ଣ ସଙ୍ଗେ ପାଦସେବା ।
ପାଞ୍ଚସହସ୍ର ଗୋପାଳ ଯେ ପ୍ରିୟଭକ୍ତେ ଶୋଭା । ୧୨୫ ।

---

୧୧୫—୨ ଚଉଦ ସହ (କ);

ଅଷ୍ଟଦଳେ ଚଉଷଠି ଗୋପାଳ ଅଛନ୍ତି ।
ଚଉଷଠି ସାର ପୁଣ ଷୋଳ ଗୋପ ହୋନ୍ତି । ୧୨୬ ।
ଷୋଳରୁ ସେ ସାର ପୁଣ ଦୁଇ ରୂପ ଜାଣ ।
ରାମକୃଷ୍ଣ ବୋଲିଣ ସେ ଦୁଇରୂପ ପୁଣ । ୧୨୭ ।
ଅଶୀସହସ୍ର ଗୋପାଳ ସେ ଅଷ୍ଟଦଳେ ରହି ।
ଅଶୀରୁ ସାର ପାଞ୍ଚସହସ୍ର ସେ ହୋଇ । ୧୨୮ ।
ଅନ୍ତର୍ଯାମୀନାଥ ହୃଦୁ ଅନନ୍ତ ଗୋପାଳ ।
ଏକା କୃଷ୍ଣ ଅନ୍ତର୍ଯାମୀ କରୁଅଛୁ ଖେଳ । ୧୨୯ ।
ନଇଋତ କୋଣରେ ସେ ଅକ୍ରୁର ରହିଣ ।
ପୁଣି ଅଷ୍ଟଦଳ ଭେଦ ସାଧୁଜନେ ଶୁଣ । ୧୩୦ ।
ବଳରାମ ଦକ୍ଷିଣ ଦଳରେ ଛନ୍ତି ପୁଣ ।
ସୁବଳ ସୁରଥ ଗୋପ ଅଛନ୍ତି ସଙ୍ଗେଣ । ୧୩୧ ।
ଲୋକପାଳ ଧର୍ମାନନ୍ଦ ପୁଣ ଦୁଇ ଜନ୍ତି ।
ଦକ୍ଷିଣ ଦଳରେ ରାମ ସଙ୍ଗେ ସେବା କରନ୍ତି । ୧୩୨ ।
ପୂର୍ବଦଳେ ଗୋପାଳଙ୍କ ସେବା ପୁଣ ଶୁଣ ।
କୃଷ୍ଣମୁଖେ ତାମ୍ବୂଳ ସେ ଲୁଣ୍ଠାବନ୍ତି ପୁଣ । ୧୩୩ ।
ନୈଋତ ଦଳରେ ଗୋପପୋଏ ଛନ୍ତି ପୁଣ ।
ବସ୍ତ୍ରସେବା କରନ୍ତି ସେ ଶ୍ରୀକୃଷ୍ଣ ସଙ୍ଗେଣ । ୧୩୪ ।
ଗୋପାଳ ଉତ୍ତରଦଳେ ଅଛନ୍ତି ସେ ରହି ।
ଚାମର ସେବା କରନ୍ତି କୃଷ୍ଣଙ୍କୁ ସେ ତହିଁ । ୧୩୫ ।
ବାୟବ୍ୟ କୋଣରେ ପୁଣ ଗୋପାଳ ରହିଣ ।
ଗନ୍ଧଚନ୍ଦନ ସେ ସେବା କୃଷ୍ଣଙ୍କୁ କରନ୍ତି । ୧୩୬ ।
ଐଶାନ୍ୟକୋଣରେ ପୁଣ ଗୋପାଳ ଯେତେକ ।
ରତ୍ନମାଳା ଅଙ୍ଗରେ ସେ ଚଢାନ୍ତି ସେବକ । ୧୩୭ ।
ଷଡ଼ରସ ଭୋଜନ ସେ ବର୍ତ୍ତମାନ କର ।
ଶ୍ରୀକୃଷ୍ଣଙ୍କ ସେବା ପୁଣ ନିରନ୍ତରେ କର । ୧୩୮ ।

ଅଗ୍ନିକୋଣେ ଗୋପାଳ ଯେ ଅଛନ୍ତି ରକ୍ଷଣ ।
ବବ୍ଧ ଯେ ଗନ୍ଧପୁଷ୍ପ ଯୋଗାନ୍ତି ନେଇଣ । ୧୩୯ ।
ପଶ୍ଚିମଦକ୍ଷିଣରେ ଗୋପପୋଷ୍ୟେ ପୁଣ ରହେ ।
ଦର୍ପଣ ଯେ ସେବାକର ଶ୍ରୀକୃଷ୍ଣଙ୍କୁ ଚାହେଁ । ୧୪୦ ।
ଶ୍ରୀକୃଷ୍ଣଙ୍କୁ ସେବାକର ବୃନ୍ଦାବନେ ଖେଳ ।
ଏମନ୍ତେ ଗୋପାଳ ରାମକୃଷ୍ଣ ସଙ୍ଗେ ମେଳ । ୧୪୧ ।
କାନନବନ ଯେ ପୂର୍ବଦିଗରେ ଅଛଇ ।
ଖଞ୍ଜରବନ ଯେ ପୁଣ ଐଶାନେ ବସଇ । ୧୪୨ ।
କଂଶବନ ବସଇ ଯେ ଉତ୍ତର ଦିଗରେ ।
ପିଙ୍ଗବନ ବସଇ ଯେ ବାୟବ୍ୟ ଦିଗରେ । ୧୪୩ ।
ଶ୍ରୀବୃନ୍ଦାବନ ଯେ ପୁଣ ପଶ୍ଚିମ ଦିଗର ।
କେଳିବନ ଅଛଇ ଯେ ନୈଋତ ସ୍ଥାନର ॥
ମଳୟବନ ଯେ ପୁଣ ଦକ୍ଷିଣେ ଅଛଇ ।
ଶ୍ରୀବୃନ୍ଦାବନ ମଧ୍ୟରେ ରତ୍ନବେଦୀ ରହି । ୧୪୫ ।
ପୂର୍ବଦିଗେ ସୁଦାମ ଯେ ଏ କୁଞ୍ଜବନର ।
ଷୋଳସହସ୍ର ଗୋପାଳ ଯେ ଅଛନ୍ତି ପାଶର । ୧୪୬ ।
ଦାମ ଯେ ଗୋପାଳ ପୁଣ ଦକ୍ଷିଣ ବନର ।
ବାରସହସ୍ର ଗୋପାଳ ଯେ ସଙ୍ଗତେ ତାଙ୍କର । ୧୪୭ ।
ପଶ୍ଚିମ ଦିଗରେ ଦାମ ଅଛନ୍ତି ଯେ ରହି ।
ସାଧୁଜନମାନେ ଶୁଣ ଭକ୍ତିପଥ ଏହି । ୧୪୮ ।
ଯାଦବ ଉତ୍ତରଦିଗେ ନଳବନେ ରହେ ।
ଦ୍ୱାଦଶସହସ୍ର ଗୋପପୋଏ ସଙ୍ଗେ ଥାଏ । ୧୪୯ ।
ଦକ୍ଷିଣ କଦମ୍ବବନେ ସଙ୍କର୍ଷଣ ବନେ ।
ଦ୍ୱାଦଶସହସ୍ର ଗୋପ ସଙ୍ଗତରେ ଯାନେ । ୧୫୦ ।
ବୃନ୍ଦାବନେ ଶ୍ରୀବତ୍ସ ଯେ ପଶ୍ଚିମ ଦ୍ୱାରରେ ।
ବାରସହସ୍ର ଗୋପାଳ ଯେ ଅଛନ୍ତି ସଙ୍ଗରେ । ୧୫୧ ।

ଉଦ୍ଧବ କଦମ୍ବବନେ ପୂର୍ବଭାଗେ ରହୁ ।
ବାରସହସ୍ର ଗୋପାଳ ଯେ ସଙ୍ଗତେ ଅଛଇ । ୧୫୨ ।
ଅକ୍ରୂର ରହସ୍ୟବନେ ନଇଋତ କୋଣେ ।
ଏକାନ୍ତରେ ଗୀତ ଯେ ଗୋବିନ୍ଦ ମୁଖେ ଭଣେ । ୧୫୩ ।
ଈଶାନ୍ୟ ସାତ୍ୟକି ହେମବନେ ରହୁ ପୁଣ ।
ଏକଚିତ୍ତେ ହରେକୃଷ୍ଣ ମୁଖେ ଘୁଣେ ପୁଣ । ୧୫୪ ।
ଅଗ୍ନିକୋଣେ ସୁନନ୍ଦ ବସନ୍ତ ଯେ ବନେ ।
ଏକାନ୍ତେ ରବା ବାଇଣ କୃଷ୍ଣନାମ ମନେ । ୧୫୫ ।
ବାୟବ୍ୟ ଦିଗରେ ବୃନ୍ଦନନ୍ଦ ଉପବନେ ।
ଷୋଳସହସ୍ର ଗୋପାଳ ଯେ ସଙ୍ଗତରେ ଘେନେ । ୧୫୬ ।
ଏମନ୍ତେଣ ବୃନ୍ଦାବନେ ଗୋପାଳ ମେଳେଣ ।
ଶ୍ରୀକୃଷ୍ଣ ସଙ୍ଗତେ ଖେଳ କରନ୍ତି ଯେ ପୁଣ । ୧୫୭ ।
ସୁଦାମ ଗୋପାଳ ଯୂଥ ଶିଙ୍ଗା ମୁଖେ ବାଏ ।
ସୁଦାମ ସାଜିଲା ବୋଲି ଜାଣେ ଗୋପପୋଏ । ୧୫୮ ।
ଶଙ୍ଖଧ୍ୱନି ଯାଦବ ଯେ ଗୋପାଳ ବଜାଇ ।
ଯାଦବ ସାଜିଲା ବୋଲି ଗୋପେ ଧ୍ୱନି ହୋଇ । ୧୫୯ ।
ବେଣୁ ଯେ ମୁରଲୀ ପୁଣ ଶ୍ରୀବତ୍ସ ବଜାଇ ।
ଶ୍ରୀବତ୍ସ ଯୂଥ ସାଜିଲେ ଗୋପପୁରେ କହୁ । ୧୬୦ ।
ହୁର ଯେ ଶବଦ ପୁଣ ଶୁଭିଲେ ତହ୍ୱଳ ।
ଜାଣନ୍ତି ଯେ ସୁନନ୍ଦ ବୋଲି ଗୋପକୁଳ । ୧୬୧ ।
ଶୁଭବେଳ ଘଣ୍ଟି ପୁଣ ସାରୁକ କୁଟିଣ ।
ସାରୁକ ଯୂଥ ସାଜନ୍ତି ତୂରୀ ବାଦ୍ୟ ପୁଣ । ୧୬୨ ।
ଉଦ୍ଧବ ଅକ୍ରୂର ଗୀତ ସ୍ୱର ଗାଇ ପୁଣ ।
ସୁନନ୍ଦ ରବା ଯେ ବଜାନ୍ତି ସଙ୍ଗତେଣ । ୧୬୩ ।
ଦାମ ଯେ ସୁଦାମ କୃଷ୍ଣ ବେଜା ପାଞ୍ଚୁଣେ ।
ବୃନ୍ଦାବନେ ଗୋପାଳରୂପଙ୍କୁ ସୁମରଣ । ୧୬୪ ।

ଉଦ୍ଧବ ଗୋପାଲ ଯୁଥ ପାଦୁକା ହସ୍ତର ।
ପୂର୍ବଦ୍ଧଗ ଗୋପପୋଏ ଉଦ୍ଧବ ସଙ୍ଗେ ଲ । ୧୬୫ ।
ଉଦ୍ଧର ଗୋପାଳ ପୋଏ ବୀଣାନାଦ କରେ ।
ରବା ବାସ୍ତେ ଈଶାନର ଗୋପ ଯେ କ୍ରମରେ । ୧୬୬ ।
ବାସୁବଂ ଗୋପାଲ ପୋଏ ମୁକୁଜ ସେବାରେ ।
ଠାବମାନ ଭ୍ରମଣ ଯେ କରନ୍ତ ବନରେ । ୧୬୭ ।
ସୁଦାମ ହସ୍ତରେ ବେତ ଧରଣ ଯେ ପୁଣ ।
ବୋଜନ କରନ୍ତ ବସି କୃଷ୍ଣଙ୍କ ପାଶେଣ ।୧୬୮ ।
ଦାମ ଯେ ଗୋପାଲ ପୁଣ ଜଲବଧି ଦେଇ ।
ଶ୍ରୀବସ୍ତ ଯେ ସିଂହାସଧେ ମୁଖବାସ ଥୋଇ । ୧୬୯ ।
ଅନ୍ତୁ ର ପୁସ୍ତକ ଗୀତ କରଣ ଉଦ୍ଧବ ।
ଶ୍ରୀକୃଷ୍ଣଙ୍କ ଚୂଲ ପୁଣ ଘେନଣ ପାଦେବ । ୧୭୦ ।
ବୃନ୍ଦନନ୍ଦ ସନ୍ଦନନ୍ଦ ଆନନ୍ଦ ଯେ ନନ୍ଦ ।
ଗୋକୁଲାନନ୍ଦ ସଙ୍ଗତେ ଦ୍ୱାଦଶ ଯେ ନନ୍ଦ । ୧୭୧
ଗୋକୁଲାନନ୍ଦ ହସ୍ତରେ ଲଉଡ଼ି ଧରିଣ ।
ବୃନ୍ଦନନ୍ଦ କୃଷ୍ଣଛତ୍ର ଧରନ୍ତ ପୁଣ । ୧୭୨ ।
ଆନନ୍ଦନନ୍ଦ ଯେ ଗୁଞ୍ଜ ଗୁଞ୍ଜମାଳ ଧରେ ।
ସନ୍ଦନନ୍ଦ କଠାଉ ଯେ ଧରିଣ ହସ୍ତରେ । ୧୭୩ ।
ଏମନ୍ତ ଶ୍ରୀକୃଷ୍ଣ ଅଙ୍ଗସେବା ବଧମାନ ।
ସେବା ଯେ କରନ୍ତ ମିଳି ଗୋପସୁତ ଜନ । ୧୭୪ ।

( ଅନ୍ୟବୃତ୍ତ )

ଦାମ ଗୋପାଳ ସଙ୍ଗତେ ପୁଣ ।
ଆଠ ଗୋପାଳଙ୍କ ନାମ ହେ ଶୁଣ । ୧୭୫ ।
ମାଧବ ଗୋପାଲ ଏକ ଅଟଇ ।
ପରମାନନ୍ଦ ଦୁଇ ବୋଲି କହି । ୧୭୬ ।

ଦିବ୍ୟମଣି ବୋଲି ଗୋପକୁମର ।
ଶ୍ୟାମ ଜଳଦ ଏ ରୂପ ସୁନ୍ଦର । ୧୭୭ ।
କାମଦେବ ବାମଦେବ ଏ ଦୁଇ ।
ଲବଙ୍ଗଧ୍ୱ ଦ୍ଵିଜ ରୂପ ସେ ଭଜଇ । ୧୭୮ ।
ଏମନ୍ତ ହୋଇଣ ଅଠ ଗୋପାଳ ।
ଦାମ ସଖାଙ୍କର ଅଟନ୍ତି ମେଳ । ୧୭୯ ।
ସୁଦାମ ସଙ୍ଗତେ ଆଠ ଗୋପାଳ ।
ଗୋପାଳ ସଙ୍ଗତେ ମେଳ । ୧୮୦ ।
ରୂପ ସ୍ୱରୂପ ଦୁଇ କୁମର ।
ନାଭରତ୍ନ ବନମାଳୀ ଦୁଇର । ୧୮୧ ।
ଗୋବିନ୍ଦ ଅଚ୍ୟୁତ ଗୋପ ବାଳକ ।
ପ୍ରୀତିମନ୍ତ ସେ ଅଟଇ ଅଷ୍ଟକ । ୧୮୨ ।
ଶ୍ରୀବତ୍ସ ସଙ୍ଗରେ ଆଠ ସଙ୍ଗତ ।
କରୁଣା କର କଦମ୍ବକୁ ଘେନ । ୧୮୩ ।
ବେଣୁଧର ନାମ ଲବଣୀ ସଙ୍ଗ ।
ଲକ୍ଷଣ ସିନ୍ଧୁ ଗୁଣିବ । ୧୮୪ ।
ଅଚ୍ୟୁତ ଗୋପ ଦିବ୍ୟରୂପ ଦୁଇ ।
ଶ୍ରୀବତ୍ସ ସଙ୍ଗରେ ଏ ଅଷ୍ଟ ଥାଇ । ୧୮୫ ।
କୃଷ୍ଣ ସଖା ସଙ୍ଗେ ଆଠ ଗୋପାଳ ।
ପର୍ଣ୍ଣ ରାଜୀବ ଦୁଇ ଏ ମେଳ । ୧୮୬ ।
ପଦ୍ମନାଭ ମୁକୁନ୍ଦକୁ ସେ ଘେନ ।
ଶ୍ରୀଧର ଦାମୋଦର ଏହୁ ବେନି । ୧୮୭ ।
ରଘୁନାଥ ରାମଚନ୍ଦ୍ର ଏ ପୁଣ ।
ସ୍ତୋକ କୃଷ୍ଣ ସଖା ଏ ଆଠଗୁଣ । ୧୮୮ ।

---

୧୮୨—୨ ପ୍ରୀତିମନ୍ତ ଏକ ଅଷ୍ଟବାଳକ (ଖ).

ଉଦ୍ଧବ ଗୋପାଳ ସଙ୍ଗତେ ପୁଣ ।
ମାଧବ ମଧୁସୂଦନ ଯେଜଣ । ୧୮୯ ।
ବାମନ ବଳଭଦ୍ର ଦୁଇ କହୁ ।
ଚନ୍ଦ୍ରାମଣି ଗିରିଧର ଏ ଦୁଇ । ୧୯୦ ।
ଗୋପୀନାଥ ବୋଲି ଅନନ୍ତ ପୁଣ ।
ଉଦ୍ଧବ ସଙ୍ଗତେ ଏ ଅଠଜଣ । ୧୯୧ ।
ଅକ୍ରୂର ସଙ୍ଗତେ ଅଠ ଗୋପାଳ ।
ଗଙ୍ଗାଧର ଶାମ ସୁନ୍ଦର ମେଳ । ୧୯୨ ।
ଯାଦବ ଜଗୁଜୀବନ ସୁନ୍ଦର ।
ଜଗତ ବର୍ତ୍ତିବ ଗୋପକୁମର । ୧୯୩ ।
ପରାଣବଲ୍ଲଭ ନାମ ଅଛଇ ।
ରସିକନାଗର ନାମଟି କହୁ । ୧୯୪ ।
ଅଚ୍ୟୁତ ମଠ ଯେ ଏକ ଗୋପାଳ ।
ଅକ୍ରୂର ସଙ୍ଗତେ ଏ ଅଠମେଳ । ୧୯୫ ।
ସାତ୍ୟକି ସଙ୍ଗତେ ସାରଙ୍ଗଧର ।
କଲ୍ପତରୁ ରୁଦ୍ରମଣି ସୁନ୍ଦର । ୧୯୬ ।
ଜଗନ୍ନାଥ ଗୋପ ସଙ୍ଗତେ ରହେ ।
ଦାମୋଦର ଏକ ଗୋପ ବୋଲାଏ । ୧୯୭ ।
ବଇରାଗୀ ଶୁକଦେବ ଅର୍ଜୁନ ।
ସାତ୍ୟକି ସଙ୍ଗତେ ଏ ଅଠଜନ । ୧୯୮ ।
ଅଠ ଅଷ୍ଟ ଚଉଷଠି ଗୋପାଳ ।
ଦୁଇ ଗୋପାଳ ନନ୍ଦ ସଙ୍ଗେ ମେଳ । ୧୯୯ ।
ଏମନ୍ତେଣ ପୁଣ ଷୋଳଟି କହୁ ।
ଏ ଭେଦ ଜାଣିଲେ ଗୋପାଳ ହୋଇ । ୨୦୦ ।
ଏ ଭେଦ ଜାଣିଲେ ଅଛଇ ଦାସ ।
ରାମଚନ୍ଦ୍ର ଦାସ ଶୁଣ ହେ ରସ । ୨୦୧ ।

---

୧୯୩—୨ ଜଗତ ବଳଭଦ୍ର (ଖ);

ଭୃତ୍ୟ ପରକ୍ଷିତ୍ୟ ମୁକୁନ୍ଦ ଶୁଣ ।
ମୁକୁନ୍ଦ ଜାଣନ୍ତି ଶ୍ଲୋକ ଲକ୍ଷଣ । ୨୦୨ ।
ସୁଦାମ ଅଚ୍ୟୁତ ନାମ ମୋହର ।
ତେଣୁ କହୁଛି ଏ ଲୀଳା ବାହାର । ୨୦୩ ।
ସୌନନ୍ଦ ଗୋପାଳ ସଙ୍ଗତେ ପୁଣ ।
କାହ୍ନୁ କୃପାସିନ୍ଧୁ ଗୋପାଳ ପୁଣ । ୨୦୪ ।
ପରଶୁରାମ ଶ୍ରୀକୃଷ୍ଣ ଯେ କହ୍ନୁ ।
ବଳଭଦ୍ର ଦଇତାର ଅଟଇ । ୨୦୫ ।
ଚତୁର୍ଭୁଜରୂପ କାହ୍ନୁ ଯେଣୁନାମ ।
ଏମନ୍ତେ ଅଷ୍ଟଗୋପାଳ ଗୁଣିମ । ୨୦୬ ।
ବ୍ରଜନନ୍ଦ ବୋଲି ଯେଉଁ ଗୋପାଳ ।
ରାଧାରାଙ୍କ ଶ୍ୟାମ ଗୋପାଳ ମେଳ । ୨୦୭ ।
ନାରାୟଣ ଶ୍ୟାମ ଗୋପାଳ କହ୍ନୁ ।
ବଳଧ ପୂର୍ଣ୍ଣ ନାମ ଗୋପ ହୋଇ । ୨୦୮ ।
ନବୀନ ଶ୍ୟାମ ରଙ୍ଗିଆ ଗୋପାଳ ।
ଅମୃତ ସିନ୍ଧୁ ଯେ ହୋଇଣ ମେଳ । ୨୦୯ ।
ରସବହାରୀ ଯେ ଗୋପାଳ କହ୍ନୁ ।
ବ୍ରଜନନ୍ଦ ସଙ୍ଗେ ଏ ଆଠ ରହୁ । ୨୧୦ ।
ଆନନ୍ଦ ସଖା ଯେ ସଙ୍ଗତେ ପୁଣ ।
ଚକ୍ରଧର ଦାଶରଥି ବୋଲିଣ । ୨୧୧ ।
ଦୀନବନ୍ଧୁ ପଶୁରାମ ଯେ କହ୍ନୁ ।
ରହସ୍ୟ ଗୋପାଳ କାଳନ୍ଦୀ ଦୁଇ । ୨୧୨ ।
ଜବସେନା ନାମ କୃଷ୍ଣବନ୍ଧି ।
ଆନନ୍ଦ ସଙ୍ଗତେ ଏ ଆଠ ରହୁ । ୨୧୩ ।
ନନ୍ଦ ସଖା ସଙ୍ଗେ ଗୋପ ବାଳକ ।
ତମାଳ ବୃନ୍ଦାବନ କଦମ୍ବକ । ୨୧୪ ।

ନବଘନ ନାମେ ଅଟେ ମୋହନ ।
ଉଦ୍ଧବ ଅନନ୍ତ ରଙ୍ଗ ପରମ । ୨୧୫ ।
ନନ୍ଦ ସଖା ସଙ୍ଗେ ଆଠ ଗୋପାଳ ।
ଲୀଳା କରନ୍ତି ଯେ ବ୍ରଜ-ମଣ୍ଡଳ । ୨୧୬ ।
ଯାଦବ ଗୋପାଳ ସଙ୍ଗତେ ପୁଣ ।
ମାଧବ ତ୍ରିଲୋଚନ ହରଚନ୍ଦନ । ୨୧୭ ।
ଅରଣ୍ୟେ ମିଶା ଯେ କେଳି ସଦନ ।
ଗୋପକଳାପ ଅପୂର୍ବ ମଲ୍ଲନ । ୨୧୮ ।
ଗୋପମଣି ବୋଲି ନାମ ଅଟଇ ।
ଯାଦବ ସଙ୍ଗତେ ଏ ଅଠ ରହି । ୨୧୯ ।
ପୂର୍ବଦିଗେ ଉଦ୍ଧବ ଗୋପାଳ ବୃନ୍ଦାବନ ।
ଈଶାନ୍ୟେ ସାତ୍ୱିକ ପୁଣ ରହସ୍ୟ ବନେଣ । ୨୨୦ ।
ଲବଣ୍ୟବନ ଭିତରେ ଯାଦବ ଯେ ରହେ ।
ବାୟବ୍ୟକୋଣରେ ନନ୍ଦ ଗୋପାଳ ଯେ ଥାଏ । ୨୨୧ ।
ସଦା ଯେ ଆନନ୍ଦ ବନ ଅଛଇ ଯେ ତହିଁ ।
ଏମନ୍ତ ଗୋପାଳଲୀଳା ବନରେ ହୁଅଇ । ୨୨୨ ।
ପଶ୍ଚିମ ଦିଗରେ କୃଷ୍ଣ ଅଛନ୍ତି ଯେ ପୁଣ ।
କୁଞ୍ଜବନ ବୋଲିଣ ଯେ ନାମ ଅଟେ ଶୁଣ । ୨୨୩ ।
ଅଗ୍ନିକୋଣେ ହେମବନ ସହନନ୍ଦ ସ୍ଥାନ ।
ରାହାସଲୀଳାର ସେହୁ ଅଟଇ ଯେ ସ୍ଥାନ । ୨୨୪ ।
ନୀଳବନେ ସୁଦାମ ଯେ ପୂର୍ବସ୍ଥାନେ ରହେ ।
ବୃନ୍ଦାବନ ପଶ୍ଚିମରେ ଦାମ ଶାଖା ଥାଏ । ୨୨୫ ।
ଶ୍ରୀବତ୍ସ ବକୁଳ ବନେ ଉତ୍ତର ଦିଗରେ ।
କଦମ୍ବବନେ ଅକ୍ରୁର ନୈଋତ ସ୍ଥାନରେ । ୨୨୬ ।

---

୨୧୮—୧ ଅରଣ୍ୟେ ନଗା (କ);

ସଦ୍ଧନନ୍ଦ ସଙ୍ଗତରେ ବୃଦ୍ଧନନ୍ଦ ରଙ୍ଗେ ।
ବୃଦ୍ଧନନ୍ଦ ବାସନ୍ତୀ ଯେ ବନରେ ଅକ୍ଷୟେ । ୧୧୭ ।
ଆନନ୍ଦନନ୍ଦ ଯେ ପୁଣ ବାୟବ୍ୟକୋଣରେ ।
ସଦ୍ଧବନ ବିହାର ଯେ କରନ୍ତି ସୁଖରେ । ୧୧୮ ।
ଏମନ୍ତ ବୃନ୍ଦାବନର କାହାଣୀ ।
ଗୁରୁଭକ୍ତିଗୀତା ଅଚ୍ୟୁତ ଭଣି । ୧୧୯ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ସପ୍ତତ୍ରିଂଶ ଛନ୍ଦ ॥



# ଅଷ୍ଟତ୍ରିଂଶ ଛାନ୍ଦ

କହୁବା କଥାଏ ଗୁରୁ ଏ ବଡ଼ ବସ୍ତୁର ।
କେଉଁ ମନ୍ତ୍ରେ କେଉଁ ଗୋପାଳଙ୍କୁ ସେ ସୁମର । ୧ ।
କେଉଁ କୁଞ୍ଜୀ କେଉଁ ଦଗେ ଅଛନ୍ତି ସେ ପୁଣ ।
କେଉଁ ମନ୍ତ୍ର ଭଜ ସଖା ଦରଶନ ପୁଣ । ୨ ।
ଶୁଣ ହେ ସ୍ୱାମୀ ସଦାଶ ଭଗତ ବସ୍ତୁର ।
ଉଦ୍ୟାନ ଯାଦବ ମିଳ ଅଛ ଗୋପଦାର । ୩ ।
ହେତୁ ମନେ ଧର ଏହୁ ଗୁରୁଙ୍କ କୃପତ ।
କୋଟିଜନ୍ମ ଭାଗ୍ୟ ଥିଲେ ଏମନ୍ତ ପ୍ରାପତ । ୪ ।
ଅଷ୍ଟଦଗେ ଗୋପାଳ ସେ ଦ୍ୱାଦଶ ଅଛନ୍ତି ।
ତାଙ୍କୁ ସୁମରଣ ତାଙ୍କୁ ମନ୍ତ୍ରେ କରେ ସ୍ଥିତ । ୫ ।
ଉଦ୍ଧବ ଗୋପାଳ ପୂର୍ବେ ଅଛନ୍ତି ସେ ରହୁ ।
ସେ ଗୋପାଳ ମନ୍ତ୍ରବଧି ଶୁଣ ମନ ଦେଇ । ୬ ।
କ୍ଲୀଙ୍କଉଁ ମାଧବ ବୋଲି କର ସୁମରଣ ।
ଉଦ୍ଧବ କୃଷ୍ଣ ନମାମ୍ୟହଂ ସେ ବୋଲିଣ । ୭ ।
ତେବେ ପୂର୍ବ ଦଳରେ ସେ ପାଇବ ଭଗତ ।
ଦ୍ୱାଦଶ ଗୋପାଳ ଅଷ୍ଟଦଗ ଚନ୍ଦ୍ରକାନ୍ତ । ୮ ।
ସାତ୍ୱିକ ଗୋପାଳ ପୁଣ ଐଶାନ୍ୟ ଦଗେଣ ।
ସେ ଗୋପାଳ ମନ୍ତ୍ରବଧି ହେତୁ ମନେ ଗୁଣ । ୯ ।
ଓଁ କଳ୍ପତରୁ ଯେ ସାତ୍ୱିକ ନାମ ବୋଲି ।
ପୂର୍ବଦଗ ଶ୍ରେଷ୍ଠ ସାଖା ଅଟେ ଏହୁ ବୋଲି । ୧୦ ।

ଯାଦବ ଗୋପାଳ ପୁଣ ଉତ୍ତରରେ ଥାନ ।
ଓଁ କୃଷ୍ଣ ରାଧା ରାଧା କୃଷ୍ଣ କୃଷ୍ଣ ଧ୍ୟାନ । ୧୧ ।
କୃଷ୍ଣ ରାଧେ ଶ୍ୟାମ ବୋଲି ମନ୍ତ୍ରକୁ ଭଜିବ ।
ତେବେ ସିନା ଉତ୍ତର ଯେ ଦଳରେ ମିଶିବ । ୧୨ ।
ବାୟବ୍ୟ କୋଣରେ ନନ୍ଦ ସଖା ପୁଣ ଥାଏ ।
ଓଁ କ୍ଲୀଂ ପରମାନନ୍ଦ ପୁଣ ଧ୍ୟାୟେ । ୧୩ ।
ହରେ ହରେ ବୋଲିଣ ଯେ ମନ୍ତ୍ରକୁ ସୁମର ।
ଉତ୍ତର ଦଳ ସଖାଙ୍କ ମନ୍ତ୍ର ଏ ବିସ୍ତର । ୧୦ ।
କୃଷ୍ଣସଖା ପଶ୍ଚିମ ଯେ ଦଳରେ ଅଛନ୍ତି ।
ଓଁ କ୍ଲୀଂ କୃଷ୍ଣ ପରମାନନ୍ଦ ନମାମ୍ୟହଂ ଚିନ୍ତି । ୧୫ ।
ଏମନ୍ତ ବୋଲିଣ ସଖା ସୁମରଣ କଲେ ।
ପଶ୍ଚିମ ଦଳରେ ସିନା ଗମି ପାରେ ଭଲେ । ୧୬ ।
ଆନନ୍ଦ ସଖା ଯେ ପୁଣି ବାୟୁବ୍ୟରେ ରହି ।
କୃଷ୍ଣ କୃଷ୍ଣ ଗୋବିନ୍ଦ ଯେ ମନ୍ତ୍ରଗୋଟି ଧ୍ୟାୟି । ୧୭ ।
ତେବେ ଯେ ପଶ୍ଚିମ ଦଳ ଭିତରେ ମିଶେ ।
ଗୋପାଳମଣ୍ଡଳୀ ଲୀଳା ହୃଦରେ ପ୍ରକାଶେ । ୧୮ ।
ଅଗ୍ନି କୋଣେ ସଚ୍ଚନନ୍ଦ ବରଜ ଯେ ରହେ ।
କ୍ଲୀଂ କୃଷ୍ଣ ମାଧବ ଯେ ହୃଦରେ ଜପ କହେ । ୧୯ ।
ଅଗ୍ନି କୋଣେ ସଖା ଅଙ୍ଗେ କରିବ ଭଜନ ।
ତେବେ ସିନା ପାଇବ ଯେ ଭିତରେ ସ୍ଥାନ । ୨୦ ।
ଅଷ୍ଟକୋଣ ଉପରେ ଯେ ଷଷ୍ଠକୋଣ ପରେ ।
ସୁଦାମ ଗୋପାଳ ପୁଣ ଅଛନ୍ତି ପୂର୍ବରେ । ୨୧ ।
କ୍ଲୀଂ କୃଷ୍ଣ ଯେ ଜପ ହୃଦରେ ସ୍ୱାହା ବୋଲି ।
ତେବେ ପୂର୍ବ ଦଳରେ ଯେ ଗମିଲନ୍ତି ବୋଲି । ୨୨ ।

---

୧୭—୧ ଅନାଦ ସଖା ଯେ (କ);
୨୧—୧ ଉପରେ ଯେ ଅଷ୍ଟ (ଖ);

ପଶ୍ଚିମ ଦଗରେ ଦାମ ଅଛନ୍ତି ଯେ ରହ୍ମ ।
ଯାଳଉଁ କୃଷ୍ଣାୟ ନମ ମନ୍ତ୍ର ଗୁଣ କହ୍ମ । ୨୩ ।
ତେବେ ସେ ପଶ୍ଚିମ ଦଳେ କରବ ଦର୍ଶନ ।
ତେବେ ସିନା ସଖା ହେତୁ ଭଗତରେ ମନ । ୨୪ ।
ଉତ୍ତର ଦଗରେ ସଖା ଶ୍ରୀବତ୍ସ ରହ୍ମଣ ।
ସ୍ମରଉଁ କୃଷ୍ଣାୟ ନମ ମନ୍ତ୍ର ଯେ ଗୁଣିଣ । ୨୫ ।
ତେବେ ସେ ଉତ୍ତର ଦଳେ ପାଇବ ଭଗତ ।
ଶ୍ରୀବତ୍ସ ସଖା ଯେ ପୁଣ ଏହୁ ମନ୍ତ୍ରେ ଚନ୍ତ୍ର । ୨୬ ।
ନନ୍ଦ ସଙ୍ଗେ ବୃନ୍ଦନନ୍ଦ ଅଛନ୍ତ ଯେ ରହ୍ମ ।
ଯାଳଉଁ ରାମ ରାମ ଯେ ମାଧବ ନମ କହ୍ମ । ୨୭ ।
ଏ ଗୋପାଳ ପ୍ରମରବ ବାୟବ୍ୟ ଦଗରେ ।
ତେବେ ସିନା ପଶିବ ସେ ଭଗତସ୍ୱରରେ । ୨୮ ।
ଅକ୍ରୂର ଗୋପାଳ ପୁଣ ନଇଋତେ ରହ୍ମ ।
ଯାଳଉଁ କୃଷ୍ଣ ରାମ ହରେ ନମାମ୍ୟହଂ କହ୍ମ । ୨୯ ।
ଏମନ୍ତେ ଦ୍ୱାଦଶ ଗୋପ ଅଟନ୍ତି ସାର ।
ସାଧୁଜନମାନଙ୍କର ଅଟେ ଏ ଉଦ୍ଧାର । ୩୦ ।
ସୁବଳ ସୁରଥ ଲୋକପାଳ ଧର୍ମାନନ୍ଦ ।
ଦକ୍ଷିଣ ଯେ ବଳରାମ ସଙ୍ଗରେ ଆନନ୍ଦ । ୩୧ ।
ସଙ୍କର୍ଷଣ ରାମ ହରେ କରବ ଭଜନ ।
ଚଉଷଠି ଗୋପାଳରେ ଦ୍ୱାଦଶ ପ୍ରଧାନ । ୩୨ ।
ବୃନ୍ଦା କୁଟୀ ମଠରେ ଯେ ହୁଅବ ତପିଣ ।
ଉପଦେଶ ମନ୍ତ୍ର ଜପ କରଣ ଯତନ । ୩୩ ।
କୃଷ୍ଣ କୃଷ୍ଣ ପୁରୁଷୋତ୍ତମ କର ଯେ ଭଜନ ।
ଉଦ୍ଧବ ଭଜନ କରେ ବସି ବୃନ୍ଦାବନ । ୩୪ ।

---

୩୨—୧ ସଙ୍କର୍ଷଣ ନମ ହରେ (୯):

ସୁହାସ କୁଟୀରେ ପୁଣ ସାଗୁକ ଯେ ରହୁ ।
ପରମାନନ୍ଦ ଯେ ରାମ କୃଷ୍ଣ ଜପେ ତହିଁ । ୩୫ ।
ସାରୁକ ରହନ୍ତି ବନେ ରହୁଣ ଯେ ପୁଣ ।
ଏମନ୍ତ ହୋଇଣ ପୂର୍ବ ସଖା ଦୁଇଜଣ । ୩୬ ।
ଯାଦବ ଗୋପାଳ ପୁଣ ଉତ୍ତର ଦଗେଣ ।
ଓଁ ରାଧେ କୃଷ୍ଣବଲ୍ଲଭି ଭଜନ କରେଣ । ୩୭ ।
ଲବଣ୍ୟବନ କୁଟୀରେ କଶୋର କଶୋରୀ ।
ଯାଦବ ଗୋପାଳ ସେହୁ ବନ ରକ୍ଷା କରୁ । ୩୮ ।
ବାୟୁବ୍ୟକୋଣରେ ନନ୍ଦ ସଖା ରହୁଛନ୍ତି ।
କାଳରି ରାମ କୃଷ୍ଣ ନମାମ୍ୟହଂ ଯେ ଚଳ୍ନନ୍ତି । ୩୯ ।
ସଦା ଆନନ୍ଦ କୁଟୀରେ ନନ୍ଦୁଣ ସେ ଲୀଳା ।
ଉତ୍ତର ଦଗରେ ସଖା କରଛନ୍ତି ଖେଳା । ୪୦ ।
କୃଷ୍ଣ ସଖା ପଶ୍ଚିମ ଯେ ଦଗରେ ରହୁଣ ।
କୃଷ୍ଣାୟ ଗୋବିନ୍ଦାୟ ନମ ଯେ ବୋଲୁଣ । ୪୧ ।
କୁଞ୍ଜ କୁଟୀ ବନରେ ଯେ ରହୁଣ ଯତନ ।
କୃଷ୍ଣ ସଖା ରହୁଛନ୍ତି ହେତୁ ମନେ ଘେନ । ୪୨ ।
ଅକ୍ରୂର ଗୋପାଳ ପୁଣ ନଇଋତ ସ୍ଥାନ ।
କଣ୍ଟକବନ କୁଟୀରେ କରନ୍ତେ ଭଜନ । ୪୩ ।
ଶୂନ୍ୟ କୃଷ୍ଣ ପଦ୍ମନାଭ ନମ ଯେ ଗୁଣିଣ ।
ଏମନ୍ତ ହୋଇଣ ସଖା ଭକତ ହେ ଶୁଣ । ୪୪ ।
ଅଗ୍ନିକୋଣେ ସଦାନନ୍ଦ ଅଛନ୍ତି ଯେ ରହୁ ।
ହେମବନ କୁଟୀରେ ଯେ ମନ୍ତ୍ର ଜପ ତହିଁ । ୪୫ ।
ହ୍ରଂ ଶ୍ରୀଂ ରାମ କୃଷ୍ଣ କୃଷ୍ଣ ହରେ ।
ହେମବନେ ସଦାନନ୍ଦ ଲୀଳାରେ ବିହରେ । ୪୬ ।
ଆନନ୍ଦ ସଖା ଏ ପୁଣ ବାୟୁବ୍ୟକୋଣେଣ ।
କୃଷ୍ଣଶୂନ୍ୟ ନମ ବୋଲି ମନ୍ତ୍ରକୁ ଜପିଣ । ୪୭ ।

ସନ୍ତବନ କୁଟୀରେ ଯେ କରନ୍ତି ବିଶ୍ରାମ ।
ଏମନ୍ତ ହୋଇଣ ଅଷ୍ଟବନ ଅଟେ ନାମ । ୪୮ ।
ବସନ୍ତ ବନରେ ବୃନ୍ଦାବନ ଯେ ନନ୍ଦନ ।
ବାୟବ୍ୟ କୋଣରେ ନନ୍ଦ ସଙ୍ଗତେଣ ପୁଣ । ୪୯ ।
କାଳିନ୍ଦୀ ଶୂନ୍ୟ କୃଷ୍ଣ ନମାମ୍ୟହଂ ଯେ ଗୁଣିଲେ ।
ସଖା ସେବା ଭଗନ୍ତି ଯେ କୃଷ୍ଣଙ୍କୁ ଗୁଣିଲେ । ୫୦ ।
ପଶ୍ଚିମ ପୂର୍ବ ଦିଗରେ ସୁଦାମ ରହିଣ ।
ମାଳବନ କୁଟୀରେ ଯେ ବିଶ୍ରାମ କରିଣ । ୫୧ ।
କାଳିନ୍ଦୀ କୃଷ୍ଣାୟ ଗୋପୀଜନ ଯେ ଗୁଣିଣ ।
ମାଧବାୟ ନମାମ୍ୟହଂ ମନ୍ତ୍ର ସୁମରନ୍ତି । ୫୨ ।
ପଶ୍ଚିମ ଦିଗରେ ଦାମ କରନ୍ତି ବିଶ୍ରାମ ।
କଦମ୍ବବନ କୁଟୀରେ ମନ୍ତ୍ରକୁ ଗୁଣିଣ । ୫୩ ।
କୃଷ୍ଣାୟ ଗୋପୀଜନ ବୋଲିଣ ନମୋନମ ।
ଦାମ ସଖା ରହିଛନ୍ତି ଶ୍ରୀକୃଷ୍ଣ ପାଶେଣ । ୫୪ ।
ଉତ୍ତରେ ଶ୍ରୀବତ୍ସ ପୁଣ ରହିଣ ଅଛନ୍ତି ।
ବକୁଳବନ କୁଟୀରେ ମନ୍ତ୍ର ଯେ ଜପନ୍ତି । ୫୫ ।
ଗୋବିନ୍ଦ ଗୋପାଳ ନମାମ୍ୟହଂ ସୁମରଣ ।
ଦ୍ୱାଦଶ କୁଟୀକି ବାର ବୃନ୍ଦାବନ ପୁଣ । ୫୬ ।
ତମାଳବନ ଯେ ଅଛି କୁଞ୍ଜବନ ପାଶେ ।
ବାସନ୍ତୀବନ ନିକଟ ତାଳବନ ଦିଶେ । ୫୭ ।
ଏମନ୍ତ ହୋଇଣ ବୃନ୍ଦାବନର ବିହାର ।
ଶ୍ରୀକୃଷ୍ଣ ସଙ୍ଗତେ ସେବା କରନ୍ତି ପସ୍ପର । ୫୮ ।
ଦ୍ୱାଦଶ ମନ୍ତ୍ର ଯେ ବାର ସଖା ପୁଣ ଭଜେ ।
ଶ୍ରୀକୃଷ୍ଣ ସୁମରି ପୁଣ ବୃନ୍ଦାବନ ବିଜେ । ୫୯ ।
ଏହୁ ବାର ମନ୍ତ୍ର ପୁଣ ଶିଷ୍ୟକୁ କହିବ ।
ତେବେ ସିନା ଶିଷ୍ୟ ମନ ବୋଧ ଯେ ହୋଇବ । ୬୦ ।

ଚଉଷଠି ଗୋପାଳ ଯେ ବାର ମନ୍ତ୍ର ଗୁଣି ।
ବାର ମନ୍ତ୍ର ଜପିଣ ଯେ କୃଷ୍ଣ ସେବା ପୁଣି । ୭୧ ।
ଅଷ୍ଟକୋଣେ ଚଉଶ ଯେ ମନ୍ତ୍ରକୁ ଲେଖିବ ।
ଚଉଶ ମୂରତି ବସ୍ତ୍ର ଅଙ୍ଗୁଳି ଦେବ । ୭୨ ।
ଦାମ ସୁଦାମ ସୁବାହୁ ସୁବଳ ଯେ ସଖି ।
ସଖ ଛଡ଼େ ଚଉଶ ଯେ ଗୋପାଳ ସ୍ୱରୂପ । ୭୩ ।
ଷୋଳ ବେଳ ମିଶିଲେ ଯେ ହୋଇବ ବତିଶ ।
ଆବର ସଖ ଆଠରେ ବତିଶ ଯେ ଘୋଷ । ୭୪ ।
ପୁଣ ତନବଧିରେ ଯେ କରିବ ବିସ୍ତର ।
ଓଁକାର ଅଟଇ ପୁଣ ତ୍ରିକୋଣ ପଦ୍ମର । ୭୫ ।
ଅର୍ଦ୍ଧମାତ୍ରା ଅଟଇ ଯେ ଅକ୍ଷର ପଞ୍ଚମ ।
ଓଁକାର ମଣ୍ଡଳ ଷୋଳଦଳ ଦକ୍ଷିଣେ । ୭୬ ।
ତକାର ଅଟଇ ପୁଣ ଉତ୍ତର ଦିଗଇ ।
ଉତ୍ତର ଦିଗରୁ ଆସି ପୂର୍ବଦିଗେ ରହି । ୭୭ ।
ପୂର୍ବ ଯେ ଉତ୍ତର ପୁଣ ଏକ ବୋଲି କହେ ।
ଦକ୍ଷିଣଦିଗରୁ ଗମ ପଶ୍ଚିମକୁ ଲଗେ । ୭୮ ।
ତକାର ବତିଶ ଦଳ ତହିଁପରେ ଷୋଳ ।
ତହିଁ ଯେ ମଣ୍ଡଳ ଗୋଟି ଅଟେ ଅଷ୍ଟଦଳ । ୭୯ ।
ତହିଁପରେ ଅର୍ଦ୍ଧମାତ୍ରା ଛଡ଼ଦଳ କନ୍ଦ ।
ବନ୍ଦ ଅଟେ ଷଡ଼ଦଳ ସାଧୁଭେଦ ପା... ୦ ।
ତହିଁପରେ ବେଳଦଳେ ଦୁଇ ଛଇ ଜାଣ ।
ବେଳ ପରେ ଏକଦଳ ମଣ୍ଡଳ ପ୍ରମାଣ । ୭୧ ।
ବୃନ୍ଦାବନ ଉପରେ ଯେ ସ୍ୱହ୍ୱାସ ବହ୍ୱାର ।
ତହିଁ କୃଷ୍ଣ ଗୋପଗୋପୀଏ ଗୁରୁଙ୍କ ପରିବାର । ୭୨ ।
ଏ ଭେଦ ଜାଣିଲେ ସିନା ଗୁରୁଦୀକ୍ଷା ପାଇ ।
ଏ ଭେଦ ନ ଜାଣି ଶିଷ୍ୟ କଲେ ବାଧା ହୋଇ । ୭୩ ।

ଗୁରୁଶିଷ୍ୟ ବସନ୍ତି ଯେ ପଥର ନାବରେ ।
ଚକ୍ଷୁଶୂନ୍ୟ ପ୍ରାଣୀ ଯେହ୍ନେ ପଡ଼ଇ କୂପରେ । ୭୪ ।
ଶୟନେ ସ୍ୱପନେ ଗୁରୁଠାରେ ଚିତ୍ତ ଦିଅ ।
ବିଷୟ ଯୁବତୀ ପ୍ରାୟେ ମନ ଗୋଟି ଥୁଅ । ୭୫ ।
ବସ୍ତ୍ର ଅନ୍ନ ଧନ ଜନ ପଣ ଆଦି ଥିବ ।
କ୍ରି ନିବେଦ ଆଗେ ଭୋଗ ତା କରିବ । ୭୬ ।
ପୁଣ୍ୟଜାତ ହେଲେ ଗୁରୁଠାରେ ଦୀକ୍ଷା ନେଇ ।
ଅନ୍ନ କମାଇଲେ ଗୁରୁମୁଖରେ ଭୁଞ୍ଜାଇ । ୭୭ ।
ବସ୍ତ୍ର ଆଦି ମିଳିଲେ ଯେ ଗୁରୁ ଅଙ୍ଗେ ଦେବ ।
ଭଗତ ସଂସାର ଅଙ୍ଗେ ତେବେ ସେ ହୋଇବ । ୭୮ ।
ପଣ ଥିଲେ ଗୁରୁକାର୍ଯ୍ୟେ ହୋଇବ ତତ୍ପର ।
ଚରଣ୍ଡ କରିବ ଆସି ଗୁରୁଙ୍କ ମନ୍ଦିର । ୭୯ ।
ଏତେ ଗୁଣ ଥିଲେ ଶିଷ୍ୟ ଅଟଇ ନୁହଇ ।
ସେବାବିଧି ଶିଷ୍ୟର ଯେ ବହୁତ ଅଟଇ । ୮୦ ।
ମନ୍ତ୍ରଯନ୍ତ୍ର ତନ୍ତ୍ରବିଧି ଗୁରୁଙ୍କର ପଣ ।
ଅବାଢ଼ ଜ୍ୟୋତି ଯେ ଛାୟା ସମାଧି ନିପୁଣ । ୮୧ ।
ନିଷ୍ଫଳ ହୋଇବା ହେତୁ ନ ଜାଣିଲେ ଗୁରୁ ।
ନିଶ୍ଚେ ବାଦ ପଡ଼ଇ ଯେ ଏଅର୍ଥେ ସେ ଗୁରୁ । ୮୨ ।
ଛନ୍ଦ ଷଡ଼ାଙ୍ଗ ଅଙ୍ଗନ୍ୟାସ କରନ୍ୟାସ ।
ସକଳ ସାସ୍ତ୍ର ମୁଖେ କରୁଥିବ ଘୋଷ । ୮୩ ।
ରୁଆପଙ୍କ ଗ୍ରନ୍ଥ ଲକ୍ଷ ଭଜନ ଜାଣିମ ।
ଏହା ନ ଜାଣିଲେ ଗୁରୁ ପଣ ଯେ ଅଧମ । ୮୪ ।
ଅଣ୍ଡି ସ ମାଇ ଯେ ମନ୍ତ୍ର ଜାଣିବ ପ୍ରମାଣ ।
ତିଥି ବାର ନକ୍ଷତ୍ର ଯେ ବରିଷ୍ଠି ଶୁଣ । ୮୫ ।

---

୮୪—୧ ରୁଆପଙ୍କ (କ);

ଏ ଭେଦ ନ ଜାଣି ଶିଷ୍ୟ କଲେ ବଡ଼ ମନ୍ଦ ।
ସାଧୁଜନ ଗୋଷ୍ଠିରେ ସେ ପଡ଼େ ବଡ଼ ଦ୍ୱନ୍ଦ । ୮୬ ।
ମୁକୁନ୍ଦ ଅନନ୍ତଦାସ ଗୋପାଳା ଶୁଣ ।
ହେରୁ ଶିଷ୍ୟେ କହୁବ ସେ ଘଟକୁ ଦେଖିଣ । ୮୭ ।
ପଣ୍ଡିତ ଘଟରେ ହୃଶମହୃମା ରହୃଭ ।
ମୂଢ଼ନ୍ତ ଶିଷ୍ୟର ଭେଦ ଏଥି ପୁଣ କାହିଁ । ୮୮ ।
ଶ୍ରୀଅଚ୍ୟୁତ ବଚନ ହେ ରାମଚନ୍ଦ୍ର ଘୋଷ ।
ଭୂଅ ବଳ ବସ୍ତ୍ର ଧର୍ମ ମନକର ତୋଷ । ୮୯ ।
ଉପଦେଶ ଦାସ ତୁମ୍ଭେ ବାରଜଣ ଶୁଣ ।
ରାହାସଦାସ ଯେ ବାରଜଣ ମନେ ଗୁଣ । ୯୦ ।
ଏହୁ ଗୁରୁଭକ୍ତିଗୀତା ବର୍ଣ୍ଣଲେ ସୁଗତ ।
ଶ୍ରୀଚରଣଦାସ ଗୁରୁ କୃପା କରିଛନ୍ତି । ୯୧ ।
ବୃନ୍ଦାବନ ଚରିତ ଯେ କହିଲେ ଗୁପତେ ।
ଶ୍ରୀସାରଙ୍ଗପଣିବାରଜନର ଯେ ହିତେ । ୯୨ ।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ଅଷ୍ଟବିଂଶ ଛାନ୍ଦ ।

—※—

## ଊନଚତ୍ୱାରିଂଶ ଛାନ୍ଦ

ସୁଦାମ ଦାମ ଯେ ଶ୍ରୀବସ୍ତ୍ର ବନ୍ଧୁ ।
ସ୍ତୋକ କୃଷ୍ଣ ସଙ୍ଗେ ଉଦ୍ଧବ ରନ୍ଧୁ । ୧ ।
ଅକ୍ରୂର ସାତୁକି ଯାଦବ ପୁଣ ।
ସହନନ୍ଦ ବୃଙ୍କନନ୍ଦ ଘେନଣ । ୨ ।
ନନ୍ଦ ଗୋପାଳ ଯେ ସଙ୍ଗତେ ପୁଣ ।
ଆନନ୍ଦନନ୍ଦ ଯେ ଅଛନ୍ତି ଜାଣ । ୩ ।
ସୁବାହୁ ସୁବଳ ସୁରଥ ମିଳ ।
ଲୋକପାଳ ଧର୍ମାନନ୍ଦ ମଣ୍ଡଳୀ । ୪ ।
ରାମକୃଷ୍ଣ ବେନି ସଙ୍ଗତେ ସେବା ।
ଜନମେ ଜନମେ ସଙ୍ଗତେ ଥିବା । ୫ ।
ସତ୍ୟ ତ୍ରେତୟା ଯେ କଳି ଦ୍ୱାପର ।
ଲୀଳା କରନ୍ତି କୃଷ୍ଣ ସଙ୍ଗତର । ୬ ।
ନୀଳ କୁଟୀରେ ଯେ ସୁଦାମ ରନ୍ଧୁ ।
ନବୀନ ତରୁ ଚନ୍ଦ୍ରପାଶେ ରନ୍ଧୁ । ୭ ।
ବଇଁଶୀ କାହାଳୀ ଶିଂଘା ଶବଦ ।
ବେଣୁ ବଇଁଶୀ ଯେ ସୁସ୍ୱର ନାଦ । ୮ ।
ସ୍ଫଟିକର ବେଦ ସ୍ୱବର ଖମ୍ବ ।
ମାଣିକ୍ୟଜଡ଼ିତ ଅଟି ସୁଲଭ । ୯ ।
ପ୍ରବାଳର ବତା ମୁକୁତା ଗୁନ୍ଥଇ ।
ବାଇଶି ପାବଚ୍ଛ ଯିବାକୁ ଚଢ଼ି । ୧୦ ।
ବିବିଧ ପୁଷ୍ପ ଯେ ଚନ୍ଦ୍ରପାଶେଣ ।
ଆମୋଦ କରଇ ଗ୍ରାସ ବନେଣ । ୧୧ ।

ବିବିଧ ପକ୍ଷୀ ଯେ ନାଦ କରନ୍ତି ।
ଚଉଷଠିକୋଟି ଏହି ରୂପଟି । ୧୨ ।
କୁଟୀ ଗୋଟିକରେ ଏକ ଗୋପାଳ ।
ଶ୍ରୀକୃଷ୍ଣଙ୍କର ସେବାରେ ଖେଳ । ୧୩ ।
ଦିବାରାତ୍ରିରେ ଯେ ଅଠ ପ୍ରହର ।
ସେବା କରନ୍ତି ଯେ କୃଷ୍ଣ ପଯର । ୧୪ ।
ପ୍ରଥମ ପ୍ରହର ଦାମ ସଖାଙ୍କର ସେବା ।
ବାୟବ୍ୟ ପଶ୍ଚିମେ ଗୋପପୋଏ ମିଳିଥିବା । ୧୫ ।
ସେବା ଯେ ସୁଦାମ କରେ ଦ୍ୱିତୀୟ ପ୍ରହରେ ।
ଈଶାନ୍ୟ ପବରେ ପୋଏ ଅଛନ୍ତି ସଙ୍ଗରେ । ୧୬ ।
ସୁବାହୁ ଗୋପାଳ ପୁଣ ଦକ୍ଷିଣ ଦିଗର ।
ସୁବଳ ଗୋପାଳ ପୁଣ ଉତ୍ତର ଦିଗର । ୧୭ ।
ତୃତୀୟ ପ୍ରହରେ ପୁଣ ସୁବାହୁ ସେବଣ ।
ଏମନ୍ତେଣ ସଦା ହିବା କୃଷ୍ଣପାଦେ ମନ । ୧୮ ।
ସୁବଳ ଚତୁର୍ଥ ପୁଣ ପ୍ରହରେ ସେବଣ ।
ପଞ୍ଚପ୍ରହରେ ସେବା ଦାମ ପୁଣ । ୧୯ ।
ଷଷ୍ଠମପ୍ରହରେ ସେବା ସୁଦାମ ଯେ ମିଳି ।
ଶ୍ରୀକୃଷ୍ଣ ଶିରରେ ସେବା ଯେ ପୁଷ୍ପ ଅଞ୍ଜଳି । ୨୦ ।
ସପ୍ତମପ୍ରହରେ ପୁଣ ସୁବାହୁ ସେବଣ ।
ଅଷ୍ଟମପ୍ରହରେ ସେବା ସୁବଳ କରଣ । ୨୧ ।
ଶ୍ରୀବୃନ୍ଦାବନ ଗୋପରେ ଶ୍ରୀକୃଷ୍ଣ ସଙ୍ଗର ।
ଶ୍ରୀକୃଷ୍ଣ ସେବା ନାମରେ ହୋଇ ତତପର । ୨୨ ।
ପାମର ଅଚ୍ୟୁତ ଗୀତେ ଲେଖିଲନ୍ତି ବୋଲି ।
ଏ କୁଟ ସନ୍ଧି କୁଟୀରେ ପାଣବ କ ପେଲ । ୨୩ ।
ଚଉଷଠିକୁଟୀ ତେବେ ଦର୍ଶନ କରିବ ।
ଏ କୁଟୀକି ନ ପଶିଲେ ଫଣସ୍ତ ରହିବ । ୨୪ ।

ଏ କୁଟୀରେ ପଶି ଯେବେ ସେବା କରିପାର ।
ଶ୍ରୀଗୋପାଳ ରୂପ ତେବେ ଦରଶନ କର । ୧୫ ।
କେତେବେଳେ ସେ ବେଶ ଯେ ଅଟଇ ଶୁକଳ ।
କେତେବେଳେ ସେ ବେଶ ଯେ ଅଟଇ ଶ୍ୟାମଳ । ୧୬ ।
କେତେବେଳେ ସେ ବେଶ ଯେ ଗହ୍ୱର ଅଟଇ ।
କେତେବେଳେ ସେ ବେଶ ଯେ ରଙ୍ଗମସ୍ଥ ହୋଇ । ୧୭ ।
ନୀଳବର୍ଣ୍ଣ ଅଟଇ ଯେ କେତେବେଳେ ବେଶ ।
ଅନନ୍ତ ସ୍ୱରୂପ କେତେବେଳେ ହୋଏ ଦୃଶ୍ୟ । ୧୮ ।
ଦବାନଳୀ ବୃନ୍ଦାବନେ କରୁଥିବ ଚନ୍ଦ୍ର ।
ମୁକୁନ୍ଦ ଅନନ୍ତ ଦୁଇ ମନେ ହେଉ ଚନ୍ଦ୍ର । ୧୯ ।
ହେଉମନେ ବୃନ୍ଦାବନେ ଯାଇଣ ତ ପାର ।
ଲୋଚନ ପାଢେ ରମିଲେ ଫୁଟି ହିନା ମର । ୨୦ ।
ଦୀନ ଅଚ୍ୟୁତକୁ ଗୁରୁ ହେଉ ଦେଲେ କହୁ ।
ଗୁରୁ ନ କହୁଲେ ବୃନ୍ଦାବନ ହେଉ ନୋହୁ । ୨୧ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଊନବିଂଶତ୍ ଗ୍ରନ୍ଥ

---

୧୯—୧ କରୁଥିବ ଚନ୍ଦ୍ର (କ); ୧୯—୨ ହେଉରୁଚ (ଖ);
୨୦—୨ ଲୋଚନ ପାବେ (କ);

## ଚତ୍ୱାରିଂଶତ୍ ଛାନ୍ଦ

ଶୁଣ ହେ ସୁଜନ ଗୋପାଳ ସାର ।
ପଶ୍ଚିମ ଦ୍ୱାରରେ ଯେଉଁ ବିସ୍ତାର । ୧ ।
ଦ୍ୱିତୀୟ ଦୁଆରେ ଶ୍ରୀଦାମ ପୁଣ ।
ସଙ୍ଗତେ ଏକ ସେ ଗୋପାଳ ଜାଣ । ୨ ।
ସେହୁ ପଶ୍ଚିମ ଯେ ତୃତୀୟ ଦ୍ୱାରେ ।
ସ୍ତୋକ କୃଷ୍ଣ ଏକା ଯେନ ସଙ୍ଗରେ । ୩ ।
ଉଦ୍ଧବ ଗୋପାଳଗଣ ହେ ତହିଁ ।
ପଶ୍ଚିମ ଦ୍ୱାରରେ ଗୋପାଳ ରହି । ୪ ।
ଉତ୍ତର ପୂର୍ବେ ଯେ ବରଣ ଖେଳ ।
ଦୁଇ ଆବରଣେ ଦୁଇ ଗୋପାଳ । ୫ ।
ତୃତୀୟ ଆବରଣେ ସେ ସେ ଦୁଇ ।
ସୁଦାମ ସଖାର ଗୋପାଳ ତହିଁ । ୬ ।
ଦକ୍ଷିଣ ଦ୍ୱାରରେ ଗୋପାଳ ପୁଣି ।
ତୃତୀୟ ଦୁଆରେ ଅଛନ୍ତି ଜାଣ । ୭ ।
କଙ୍କିଣୀ ସଙ୍ଗତେ ଦୁଇ ଗୋପାଳ ।
ଦକ୍ଷିଣ ଦ୍ୱାରରେ କରନ୍ତି ଖେଳ । ୮ ।
ତୃତୀୟ ଦୁଆରେ ରହି ଅଛଇ ।
ଲବଙ୍ଗ ଗୋପାଳ ମିଳଣ ଦୁଇ । ୯ ।
ଉଦ୍ଧବ ଗୋପାଳ ପୂର୍ବଦ୍ୱାରରେ ।
ଏମନ୍ତ ହୋଇଣ ବୃଶ ଦ୍ୱାରରେ । ୧୦ ।

---

୭—୧ ପୁଣ୍ୟ ଦୁଇ (ଖ);

ପଶ୍ଚିମ ପଞ୍ଚମଦ୍ୱାରେ ଯେ ପୁଣ।
ପାରିଜାତକ ଯେ ବୃକ୍ଷ ଭଦ୍ଦିଣ। ୧୧ ।
ଉତ୍ତର ପଞ୍ଚମଦ୍ୱାରେ ଯେ ପୁଣ ।
ହରିଚନ୍ଦନ ଯେ ବୃକ୍ଷ ଉଦ୍ଭିଣ । ୧୨ ।
ପୂର୍ବଦଗେ ବ୍ରହ୍ମକୁଣ୍ଡ ଅଛଇ ।
ନୟନଞ୍ଜନକୁଣ୍ଡ ପଶ୍ଚିମେ ରହି । ୧୩ ।
ଦକ୍ଷିଣେ ଅଛଇ ରୁଦ୍ର ଯେ କୁଣ୍ଡ ।
କୃଷ୍ଣକୁଣ୍ଡ ଅଛୁ ଉତ୍ତରଖଣ୍ଡ । ୧୪ ।
ବ୍ରହ୍ମକୁଣ୍ଡେ ପଶି ସ୍ନାନ କରିବ ।
ରୁଦ୍ରକୁଣ୍ଡରେ ଯେ ରୂପ ଗୁଣିବ । ୧୫ ।
କୃଷ୍ଣକୁଣ୍ଡରେ ଯେ ସ୍ନାହାନ କର ।
କୃଷ୍ଣ ସଙ୍ଗତେ ଗୋପାଳ ସୁମର । ୧୬ ।
ନୟନଞ୍ଜନକୁଣ୍ଡେ କରି ସ୍ନାହାନ ।
ଲଳିତା ହିସ୍ତୁରି କର ଦର୍ଶନ । ୧୭ ।
ତେବେ ଯିନା ରାଧାକୃଷ୍ଣକୁ ପାଇ ।
ରାଧାକୃଷ୍ଣ ଛନ୍ତି ପଶ୍ଚିମେ ରହି । ୧୮ ।
ପ୍ରଥମ ଦୁଆରେ ଗୋପୀ ରହନ୍ତି ।
ଚଉଷଠି ଗୋପୀ ସେବା କରନ୍ତି । ୧୯ ।
ପୂର୍ବଦଗରେ ଯେ ଲଳିତା ପୁଣ
ଅଠର ଗୋପୀ ଯେ ସଙ୍ଗତେ ଜାଣ । ୨୦ ।
ବିଶାଖା ଶ୍ରିସ୍ଥା ଯେ ଦୁଇ ମିଳଣ ।
ଚଉଦକୋଟି ଯେ ତାଙ୍କ ସଙ୍ଗେଣ । ୨୧ ।
ହରିପ୍ରିୟା ସଙ୍ଗେ ଶ୍ରୀମତୀ ରହି ।
ନଇର୍ଋତ କୋଣେ ଏ ଦୁଇ ରହି । ୨୨ ।

---

୧୬—୨ କୃଷ୍ଣ ଅଙ୍ଗ ଯେ (କ);

ଊଣାଇଶ ଗୋପୀ ତାଙ୍କ ସଙ୍ଗରେ ।
ସେବା କରୁଛନ୍ତି ତାଙ୍କ ସମ୍ମୁଖରେ । ୨୩ ।
ଈଶ୍ୱରଦିଗରେ ଶ୍ରୀମତୀ ପୁଣ ।
ଶ୍ରୀମତୀ ଧନ୍ୟା ଚନ୍ଦ୍ରାନନ ଜାଣ । ୨୪ ।
ପନ୍ଦର ଗୋପୀ ଯେ ତାଙ୍କ ସଙ୍ଗର ।
ସେବା କରନ୍ତି ଯେ ରାଧା ପଦ୍ମର । ୨୫ ।
ବାୟବ୍ୟଦିଗରେ ଶ୍ୟାମଳା ପୁଣ ।
ଚନ୍ଦ୍ରରେଖା ଗୋପୀ ଅଛୁ ସଙ୍ଗେଣ । ୨୬ ।
ପନ୍ଦର ଗୋପୀ ଯେ ସଙ୍ଗତେ ରହୁ ।
ରାଧାଙ୍କ ସଙ୍ଗତେ ସେବା ଯେ ବହୁ । ୨୭ ।
ଦକ୍ଷିଣେ ପଦ୍ମା ଯେ ଅଛନ୍ତି ଜାଣ ।
ମଧୁମତୀ ସଖୀ ତାଙ୍କ ସଙ୍ଗେଣ । ୨୮ ।
ବତିଶ ଗୋପୀ ଯେ ସଙ୍ଗତେ ଛନ୍ତି ।
ରାଧାଙ୍କ ଚରଣସେବା କରନ୍ତି । ୨୯ ।
ଭଦ୍ରା ଗୋପୀ ଛନ୍ତି ନଇର୍ତରେ ।
କୃଷ୍ଣପ୍ରିୟା ଛନ୍ତି ତାଙ୍କ ସଙ୍ଗର । ୩୦ ।
ବତିଶ ଗୋପୀ ଯେ ଅଛନ୍ତି ପାଶ ।
ରାଧାସେବା କର ରାତ୍ର ଦିବସ । ୩୧ ।

---

୨୩—୨ ରାଧା ସମ୍ମୁଖରେ (ଖ);
୨୮—୨ ଶଶିରେଖା ସଖୀ ସଙ୍ଗତେ ଜାଣ (ଖ);
୨୯—୧ ସଙ୍ଗତେ ରହନ୍ତେ (ଖ); ୨୯—୨ ରାଧା ଠାକୁରାଣୀ ସେବାରେ ଥାଏ (ଖ); ୩୦—ସବ୍ୟା ଗୋପୀଛନ୍ତି ଅଗ୍ନି ଯେ କୋଣ । ମଧୁମତୀ ସଖୀ ତାଙ୍କ ସଙ୍ଗେଣ (ଖ; ୩୧—୧ ଗୋପୀ ଯେ ସଙ୍ଗତେ ଥାନ୍ତି (ଖ);
୩୧—୨ ରାଧାଙ୍କ ଚରଣେ ସେବା କରନ୍ତି (ଖ);

ପଶ୍ଚିମ ଯୁଗଳ ରାଧିକା କୃଷ୍ଣ ।
ଚନ୍ଦ୍ରାବଳୀ ସେବା କରଣ ଧ୍ୟାନ । ୩୨ ।
ଶଏ ନନ୍ଦଗୋପୀ ସଙ୍ଗତେ ରହେ ।
ଚନ୍ଦ୍ରାମଣିସ୍ଥଳ ସେବା ସେ ହୋଏ । ୩୩ ।
ମୁରୁଜସେବା ଯେ ଶ୍ୟାମଳା କରେ ।
ବୀଣା ବଜାନ୍ତି ଶ୍ରୀମତୀ ହସ୍ତରେ । ୩୪ ।
ହରପ୍ରିୟା ସଖୀ ରବା ବଜାଇ ।
ଦଶାଖା ପୂର୍ବେ ଯେ ଛନ୍ଦ ଧରାଇ । ୩୫ ।
ସେବ୍ୟା ସଖୀ ପୁଣ ମୃଦଙ୍ଗ ବାଏ ।
ପଦ୍ମା ଅଳଙ୍କାର ଭଦ୍ରା ଯୋଗାଏ । ୩୬ ।
ରାଧାଙ୍କଠାବରୁ ସ୍ଫୁର ଯେ କଳା ।
କଳା ଶ୍ୟାମ ବୋଲି ଏକ ହୋଇଲା । ୩୭
କୁଙ୍କୁମ ଶୁକଳ ରଙ୍ଗ ଯେ କହୁ ।
ଏ ସ୍ଫୁର କଳାର ବୈଷ୍ଣବ ହୋଇ । ୩୮ ।
ପ୍ରେମରୂପା ଚନ୍ଦ୍ରାବଳୀ ଯେ ପୁଣ ।
ରତ୍ନରେଖା ହରପ୍ରିୟା ବୋଲିଣ । ୩୯ ।
ଏହାଙ୍କଠାବରୁ ଆବର ସ୍ଫୁର ।
ଆଠ ଅଷ୍ଟା ଯେ ଚଉଷଠି ନାରୀ । ୪୦ ।
ପୂର୍ବେ ଲଳିତା ବୃନ୍ଦାବତୀ ମିଳି ।
ମଧୁମତୀ ଚମ୍ପା ଲଳିତା କେଳି । ୪୧ ।
ଦକ୍ଷିଣା ମଦନା ଶଶୀ ଯେ ରେଖା ।
ତ୍ରିପୁରଦେବୀ ଯେ ସଙ୍ଗତେ ଦେଖା । ୪୨ ।
ଭାମ୍ବଳ ସ୍ଫୁମର ସେବା କରନ୍ତି ।
ଷୋଳଲକ୍ଷ ନାରୀ ସଙ୍ଗତେ ଥାନ୍ତି । ୪୩ ।

---

୩୨—୨ କରଣ କଷ୍ଟ (କ);
୪୧—୧ ଚମ୍ପାଲତିକା ମେଳି (ଖ);

ଇଶାନ୍ୟେ ସୁଭଦ୍ରା ଏ ରଙ୍ଗଦେବୀ ।
ଅନ୍ଧଳା ତାର ତିଲୋତ୍ତମା ଆଦି । ୪୪ ।
ମାଳତୀ ଯୂଥ ଯେ ଏ ଗୋପଗୋଷ୍ଠ ।
ବନୂଂଶୀ ଗନ୍ଧଚନ୍ଦନ ଦେଇ । ୪୫ ।
ସ୍ୱଳକ୍ଷ ଗୋପୀ ଭଦ୍ରା ସଙ୍ଗରା
ଇଶାନ୍ୟ ପୂର୍ବରେ ଶୋପୀ ସୁମର । ୪୬ ।
ଧନ୍ୟା ଶ୍ରୀମତୀ ଯେ ଉତ୍ତରେ ପୁଣ ।
ଶଶୀରେଖା ଦୂତୀ ଶ୍ୟାମ ସଙ୍ଗେଣ । ୪୭ ।
ବସନ୍ତ ମୁକୁଳୀ ଏ ଗୋପନାରୀ ।
ଭନୁଂଶୀମାନ ହସ୍ତରେ ଧରି । ୪୮ ।
ସେବା କରନ୍ତି ଯେ ରାଧା ଶ୍ରୀମୂର ।
ଛଡ଼ିଲକ୍ଷ ନାରୀ ତାଙ୍କ ସଙ୍ଗର । ୪୯ ।
ବାୟବ୍ୟ ଦିଗରେ ସେବ୍ୟା ଯେ ରହି ।
କୁମାରୀ କାମଶ୍ରେଣୀ ସଖି ଦୁଇ । ୫୦ ।
ମେନକା ବିଦ୍ୟାଧରୀ ରମ୍ଭା ପୁଣ ।
ସୁଶୀଳା ସଖୀ ଶାକାମ୍ବେରୀ ଜାଣ । ୫୧ ।
ତାମ୍ବୂଳ ପୁଷ୍ପ ଯେ ସେବା କରନ୍ତି ।
ଷୁଳକ୍ଷ ନାରୀ ସଙ୍ଗତେ ଥାନ୍ତି । ୫୨ ।
ଦକ୍ଷିଣେ ପଦ୍ମା ଯେ ଅଛନ୍ତି ରହି ।
ତିଲୋତ୍ତମା ବିଦ୍ୟାଧରୀ ଯେ ଦୁଇ । ୫୩ ।
ଅନ୍ନପୂର୍ଣ୍ଣା ଶାକାମ୍ବେରୀ ଯେ ପୁଣ ।
ଚଞ୍ଚଳା ମଦନା ଗୋପୀ ଯେ ଗଣ । ୫୪ ।
ଭ୍ରମରସେବା ଯେ କରନ୍ତି ରହି ।
ଦଶଲକ୍ଷ ନାରୀ ସଙ୍ଗତେ ଥାଇ । ୫୫ ।

---

୫୩—୧ ବସନ୍ତା ସୁମିଳ (ଖ);
୪୯—୨ ଛଡ଼ ଛଡ଼ (ଖ);

ଶ୍ରୀମତୀ ଗୋପୀ ସେ ଅଗ୍ନି କୋଣରେ ।
ମାଳତୀ ରତ୍ନରେଖା ସେ ସାଙ୍ଗରେ । ୫୬ ।
କୁଙ୍କୁମ ସୁଗନ୍ଧକା ନାମ୍ନୀ ପୁଣ ।
ଚନ୍ଦ୍ରାବତୀ ଦକ୍ଷିଣା ସେ ମିଶ୍ରିଣ । ୫୭ ।
ପରମଲକ୍ଷ୍ମୀ ପରମାନନ୍ଦ ସେ ।
ଯୋଗେଶ୍ୱର ନାମ୍ନୀ ଯେକଣ ବନେ । ୫୮ ।
ଛତ୍ରଲକ୍ଷ ନାମ୍ନୀ ସଙ୍ଗତେ ପୁଣି ।
ଗାନ୍ଧାର ସ୍ୱରରେ ଗୀତ ଗାଇଣ । ୫୯ ।
ଶଙ୍ଖ କରତାଳ ମୃଦଙ୍ଗ ତାଳ ।
ଶୁଦ୍ଧସ୍ୱରରେ କରି ମଙ୍ଗଳ । ୬୦ ।
ଏ ବେଶ ସେବା ସେ ରାଧାଙ୍କ ସଙ୍ଗେ ।
ନୃତ୍ୟ କରନ୍ତି ସେ ବିବିଧ ରଙ୍ଗେ । ୬୧ ।
ଗୋପୀମାନଙ୍କର ସୁନ୍ଦର ବେଶ ।
ରାଧାଠାକୁରାଣୀ ଦେଖି ହରଷ । ୬୨ ।
ଅହଲ୍ୟା ଗୋପୀ ସେ ନଇର୍‌ତରେ ।
ତାରା ମନ୍ଦୋଦରୀ ଛନ୍ତି ପାର୍ଶ୍ୱରେ । ୬୩ ।
ଗଙ୍ଗା ଦ୍ରୌପଦୀ ରେବତୀ ପୁଣ ।
କାନ୍ତିମାଳା ସୁକୁମାରୀ ସଙ୍ଗେଣ । ୬୪ ।
ତାମ୍ବୁଳ ସେବା ଯେ କରନ୍ତି ରଙ୍ଗ ।
ରାଧା ଠାକୁରାଣୀ ମୁଖକୁ ଧାଇଁ । ୬୫ ।
ପଶ୍ଚିମେ ଭଗାଖା ଅଛନ୍ତି ପୁଣ ।
କମଳା ତୁଳସୀ ସଙ୍ଗତେ ଜାଣ । ୬୬ ।
ଜମ୍ବୁବତୀ ସତ୍ୟଭାମା ରୁକ୍ମିଣୀ ।
ଲକ୍ଷ୍ମୀ ଶ୍ରୀଆ ସଙ୍ଗେ ସାରଦା ପୁଣି । ୬୭ ।

---

୬୧—୧ ଗାସ୍ତେଣ ବେଶ (ଖ);

ଶ୍ୟାମଳା ମିଶିଣ ଏ ଗୋପୀଗଣ ।
ପାଞ୍ଚଲକ୍ଷ ନାରୀ ତାଙ୍କ ସଙ୍ଗେଣ । ୬୮ ।
ଚାମର ସେବା ଯେ ରାଧା ଶ୍ରୀମୁଖରେ ।
ଚଉଷଠି ଗୋପୀ ଅଷ୍ଟ ଦଗରେ । ୬୯ ।
ଅଠାବନଲକ୍ଷ ଅନନ୍ତ ନାରୀ ।
ରାତ୍ରି ଦବା ରାଧାସେବା ଯେ କରି । ୭୦ ।
ସନ୍ତ୍ରିତତ କେଶ ସମ୍ଭ୍ରମେ ପୁଣ ।
ନବୀନ ନାଗରୀ କେଶ ସାଜିଣ । ୭୧ ।
ଉର୍ଦ୍ଧ୍ୱପରେ କେତ୍ତୁ ଶିଖଣ୍ଡ ଦେଇ ।
କସ୍ତୁରୀ ତିଳା ଲଲିତା ଯୋଗାଇ । ୭୨ ।
ଗଣ୍ଡସ୍ଥ କପୋଳେ ଶୋଭା ଦଶିଲ ।
ଶିଖଣ୍ଡି ଶୋଭେ ତ ଶ୍ୟାମ ବୋଇଲ । ୭୩ ।
ଚନ୍ଦ୍ରାବଳୀ ବୋଲେ ଚୂଡ଼ା ସୁନ୍ଦର ।
ଗୋପୀ ସେବା କରେ ରାଧା ଅଙ୍ଗର । ୭୪ ।
ଜାଇ ମାଳତୀ କେତକୀ ଗୋ ପୁଣ ।
ଶୁଭ୍ରକେଶୀ ସେବା କରନ୍ତି ଜାଣ । ୭୫ ।
ଅଷ୍ଟରତ୍ନ ମଣି ମୁକୁତାମାନ ।
ସୀମନ୍ତିନୀ ଗୋପୀ ଦଏ ଖଞ୍ଜିଣ । ୭୬ ।
କୁସୁମ କବେରୀ ଉପରେ ପୁଣ ।
କେ ଗୋପୀ ଓଢ଼ଣୀ ଯୋଗାଏ ପୁଣ । ୭୭ ।
ଅଷ୍ଟରତ୍ନ କାପ ଶ୍ରବଣେ ଦେଇ ।
କେଉଁ ଗୋପୀ ନେଇ କେଶ ଯୋଗାଇ । ୭୮ ।
ଫୁଲ ମଲ୍ଲୀକଢ଼ି କେ ଗୋପୀ ଦେଇ ।
କେ ବୋଲେ ସୁନ୍ଦୁ ଶୁଝକୁ କନ୍ଦଇ । ୭୯ ।

---

୭୨—୨ ତିଳା ଲଲିତା (କ);

ଲଲାଟେ ସିନ୍ଦୂର କେ ଗୋପୀ ଦେଇ ।
ଗନ୍ଧ ଚନ୍ଦନ କେ ଗୋପୀ ଯୋଗାଇ । ୮୦ ।
କେ ଗୋପୀ ଦଅଇ ନାସେ ବସଣୀ ।
ଝଲିଅଛୁ କ ଯେ ଏ ବଦନମଣି । ୮୧ ।
ମଦନ ଧନୁକୁ ଗଞ୍ଜେ ଭ୍ରୂଲତା ।
କେ ବୋଲେ କମଳୁ ନୟନ ଜିତା । ୮୨ ।
ନୟନେ କଜ୍ଜ୍ୱଳ କେ ଗୋପୀ ଦେଇ ।
ଉମିଶକ ପୁଣ ଏହୁ ଜିତଇ । ୮୩ ।
ତିଳ ଫୁଲକୁ ଗୋ ନାସିକା ଗଞ୍ଜେ ।
ମୁକୁତାକୁ ଶ୍ରେଷ୍ଠ ଦନ୍ତ ବସିଜେ । ୮୪ ।
କେ ବୋଲେ ବଧୁଳୀ ନିନ୍ଦେ ଅଧର ।
କଣ୍ଠେ ପୁନା ପୁତା କେ ଦଏ ହାର । ୮୫ ।
ଅଷ୍ଟରତ୍ନ ମିଶି କଣ୍ଠୁ ବସିଜେ ।
ହୃଦରେ ପଦକ ସୁନ୍ଦର ସାଜେ । ୮୬ ।
କରେ ରତ୍ନଚୂଡ଼ୀ କଟକି ପୁଣ ।
ବାହୁଟି ବନ୍ଦମାଳ ଯେ ଭୂଷଣ । ୮୭ ।
ଚାରୁ ଯେ ମୁଦ୍ରିକା ଅଙ୍ଗୁଷ୍ଠି ସାଜେ ।
ଛଚଣ୍ଡ ବସନ ହୃଦେ ବସିଜେ । ୮୮ ।
ସୁଘଣ କୁଚରେ କାଞ୍ଚଲି ଦେଇ ।
ଗୋପୀମାନେ ସେବା କରନ୍ତି ତହିଁ । ୮୯ ।
ଜଲଟ କଦଳୀ ଜଘନ ଜିଣି ।
ପଦ୍ମରେ ନୂପୁର ବାଜେ ବାଜେଣି । ୯୦ ।
ସୁରଧନୁ ନିନ୍ଦେ ପାଦ ଅଳତା ।
ଅଙ୍ଗୁଷ୍ଠିରେ ଅଷ୍ଟରତନ ଜିତା । ୯୧ ।

---

୮୮—୧ ମୃଦୁଳ କୁଚରେ (କ);

କରଣେ ଅଛନ୍ତି ଅମୃତ ଯେହ୍ନ ।
ତିନ ଭୁବନରେ ଅଟେ ଜନମା । ୯୨ ।
ଗୋପୀଗଣମାନେ ସେବ ଅଛନ୍ତି ।
ସର୍ବ ଗୋପୀସାର ଲଳିତା ହୋନ୍ତି । ୯୩ ।
ଲଳିତା ନିପୁଣ ଭଜନ କର ।
ନରଞ୍ଜନକୁଣ୍ଡେ ସ୍ନାହାନ କର । ୯୪ ।
ନରଞ୍ଜନ କୁଣ୍ଡେ ସ୍ନାହାନ କଲେ ।
ଗୋପୀ ଅଙ୍ଗ ତେବେ ଧଉତ ଭଲେ । ୯୫ ।
ରାଧିକା ରୂପକୁ ପାଇ ଦର୍ଶନ ।
ହେତୁ ମନେ ସାଧିଜନେ ଦେ ଯେହ୍ନ । ୯୬ ।
ରାଧା ଶାଧା ମିଳି ପ୍ରଥମ କାଳେ ।
ଚମ୍ପକ ଫୁଲ ସେ ହୃଦକମଳେ । ୯୭ ।
ବେଶ କରନ୍ତି ସେ ରାଧାଙ୍କୁ ପୁଣ ।
ପ୍ରଥମ ପ୍ରହରେ ସେ ଗୋପୀଗଣ । ୯୮ ।
ଚନ୍ଦ୍ରରେଖା ଗୋପୀ ଦୁଇପ୍ରହରେ ।
ନାଗେଶ୍ୱର ପୁଷ୍ପ ଯେହ୍ନଣ କରେ । ୯୯ ।
ରାଧାଠାକୁରାଣୀ ସେବାରେ ରହି ।
ସର୍ବ ଗୋପୀ ତାଙ୍କ ସଙ୍ଗତେ ଥାଇ । ୧୦୦ ।
ତୃତୀୟପ୍ରହରେ ଚନ୍ଦ୍ରାବଳୀ ସେ ।
ମାଧବୀ ବେଶରେ ରାଧାଙ୍କୁ ପୂଜେ । ୧୦୧ ।
ତାଙ୍କ ସଖୀଗଣ ସଙ୍ଗତେ ଯେହ୍ନ ।
ରାଧିକାସେବାରେ ହୋଇ ଦଇନ । ୧୦୨ ।
ଚତୁର୍ଥ ପ୍ରହରେ ମଦନା ଗୋଇ ।
କଦମ୍ବପୁଷ୍ପ ସେ ଅଙ୍ଗେ ଯୋଗାଇ । ୧୦୩ ।

---

୯୪—୨ ରାଧାକୁଣ୍ଡେ ଯାଇ (ଖ);

ରାଧାଠାକୁରାଣୀ କରନ୍ତି ବେଶ ।
କେ କହୁ ପାରିବ ଗୋପୀଙ୍କ ରସ । ୧୦୪ ।
ଚତୁର୍ଥ ପ୍ରହରେ ସେ ମଧୁମତୀ ।
ପଞ୍ଚବର୍ଣ୍ଣ ପୁଷ୍ପମାଳା ଯେ ଘେନି । ୧୦୫ ।
ସେବା କରନ୍ତି ସେ ରାଧାଙ୍କୁ ପୁଣ ।
ପଞ୍ଚମ ପ୍ରହରେ ସୁବେଶ ଜାଣ । ୧୦୬ ।
ଷଷ୍ଠମ ପ୍ରହରେ ଶ୍ରୀମତୀ ପୁଣ ।
ସେବା କରନ୍ତି ସେ ଘେନିଣ ଗନ୍ଧ । ୧୦୭ ।
ଲବଙ୍ଗ ପୁଷ୍ପରେ ବିନୋଦ ବେଶ ।
ମଧୁମତୀ ଆନ୍ତି ତାଙ୍କର ପାଶ । ୧୦୮ ।
ଶଶୀରେଖା ଗୋପୀ ସପ୍ତ ପ୍ରହରେ ।
କୁନ୍ଦପୁଷ୍ପ ଘେନି ସେବା ସେ କରେ । ୧୦୯ ।
ହରିପ୍ରିୟା ଗୋଟି ଅଷ୍ଟ ପ୍ରହରେ ।
ବିବିଧ ବର୍ଣ୍ଣ ଯେ ପୁଷ୍ପ ଆଗାରେ । ୧୧୦ ।
ରାଧା ଠାକୁରାଣୀ କରନ୍ତି ବେଶ ।
ଅନନ୍ତ ଗୋପୀ ଯେ ରାଧାଙ୍କ ଦାସ । ୧୧୧ ।
ଅଷ୍ଟଦଳରେ ଯେ କେଶର ପରେ ।
ରାଧାକୃଷ୍ଣ ବସି ଜଗ ତହିଁରେ । ୧୧୨ ।
ସମ୍ମୁଖେ ଚନ୍ଦ୍ରାବଳୀ ଯେ ଅଛନ୍ତି ।
ଅଛନ୍ତି ରାଧିକା ବାମ ଯେ କଟି । ୧୧୩ ।
ଭଜେ ଭଜଛନ୍ତି ଶ୍ରୀକୃଷ୍ଣ ପୁଣ ।
ନବଲକ୍ଷ ଗୋପୀ ସେବା କରନ୍ତି । ୧୧୪ ।
ସମ୍ମୁଖେ ଅଷ୍ଟରତ୍ନରେ ନିର୍ମାଣ ।
ମାଳତୀ ଲତା ଯେ କୁଟୀ ପାଶେଣ । ୧୧୫ ।
ତାମ୍ବୁଲ ସେବା ଯେ କରନ୍ତି ଗୋଟି ।
ସୁବର୍ଣ୍ଣ ବର୍ଣ୍ଣେ ପୀତ ବସ୍ତ୍ର ଶୋଭି । ୧୧୬ ।

ବାୟବ୍ୟଦିଗରେ ଶ୍ୟାମ ଯେ ରହୁ ।
ଅର୍ଦ୍ଧଅଙ୍ଗ ତାଙ୍କ ଶ୍ୟାମ ଦିଶଇ । ୧୧୭ ।
ଅର୍ଦ୍ଧଅଙ୍ଗ ତାଙ୍କ ଗଉର ପୁଣ ।
ସୁବର୍ଣ୍ଣଲତା ଯେ ଗୃହ ପାଶେଣ । ୧୧୮ ।
ନୀଳ ବସନ ଯେ ଅଙ୍ଗକୁ ସାଜେ ।
ଏମନ୍ତ ଶ୍ୟାମଳା କୁରଣ ବିଜେ । ୧୧୯ ।
ଶ୍ରୀମତୀ ଗୋପୀ ଯେ ହୃଦରେ ରହୁ ।
ପଦ୍ମପ୍ରାନ୍ତେ ତାଙ୍କ ଅଙ୍ଗ ଦିଶଇ । ୧୨୦ ।
ଶୁକ୍ଳ ବସନ ପିନ୍ଧଣ ପୁଣ ।
ମଲ୍ଲିକାଲତା ଯେ ଗୃହ ପାଶେଣ । ୧୨୧ ।
ଶ୍ରୀମତୀ ଭ୍ରମର ସେବା ଯେ କରେ ।
ଶ୍ୟାମଳା ଗନ୍ଧଚନ୍ଦନ ଯେ କରେ । ୧୨୨ ।
ହରପ୍ରିୟା ଯେ ଐଶାନ୍ୟଦିଗରେ ।
ସୁବର୍ଣ୍ଣକୁ ଅଙ୍ଗ ନିନ୍ଦଇ ତାରେ । ୧୨୩ ।
କାଞ୍ଚନଲତା ଯେ ଗୃହ ପାଶରେ ।
ନୀଳବସନ ଯେ ପିନ୍ଧି ଅଙ୍ଗରେ । ୧୨୪ ।
ରତ୍ନ ପଦ୍ମରଣ ସେବା ଯେ କରେ ।
ସେବା କରନ୍ତି ଯେ ଏ ନିରନ୍ତରେ । ୧୨୫ ।
ବିଶାଖା ନାୟିକା ପୂର୍ବରେ ରହୁ ।
ପୀତବର୍ଣ୍ଣ ତାଙ୍କ ଅଙ୍ଗ ଦିଶଇ । ୧୨୬ ।
ନୀଳବସନ ଯେ ଅଙ୍ଗ ସୁନ୍ଦର ।
ଲବଙ୍ଗଲତାରେ ତାଙ୍କର ଘର । ୧୨୭ ।
ରତ୍ନମାଳା ଅଲଙ୍କାର ଯେ ପୁଣି ।
ସେବା କରନ୍ତି ଯେ ରାଧା ଅଙ୍ଗେଣ । ୧୨୮ ।
ସେବ୍ୟା ନାୟିକା ଯେ ଅଗ୍ନିକୋଣର ।
ଆରକ୍ତ ବର୍ଣ୍ଣ ଯେ ଅଙ୍ଗ ସୁନ୍ଦର । ୧୨୯ ।

ଶୁକଳ ବସନ ପିନ୍ଧଣ ଗୋପୀ ।
ମାଧବୀଲତା ଯେ କୁଞ୍ଜ ପାଶେଇ । ୧୩୦ ।
ନାନା ଔଷଧମାନ ସେବା ତାଙ୍କର ।
ମାଧବୀଲତାରେ ଅଟଇ ଘର । ୧୩୧ ।
ପଦ୍ମା ନାମେ ଗୋପୀ ଦକ୍ଷିଣେ ରହେ ।
ପୀତବର୍ଣ୍ଣ ତାଙ୍କ ଅଙ୍ଗେ ଯେ ଶୋହେ ।୧୩୨ ।
ପଦ୍ମଲତା ପୁଷ୍ପ ବେଢ଼ ସୁନ୍ଦର ।
ଖୋଲ ବସନ ଯେ ଅଙ୍ଗେ ସୁନ୍ଦର । ୧୩୩ ।
ଭୋଜନ ଷଡ଼ରସ ଯେ କରନ୍ତି ।
ଏମନ୍ତେଣ ପଦ୍ମା ଦକ୍ଷିଣେ ଥାନ୍ତି । ୧୩୪ ।
ଭଦ୍ରା ନାୟିକା ରହି ଯେ ନୈର୍ଋତ ।
ଶ୍ୟାମ ଅଟଇ ଯେ ତାଙ୍କ ବର୍ଣ୍ଣ ତ । ୧୩୫ ।
ମାଧବୀଲତାରେ ଅଛନ୍ତି ରହି ।
ବସନ ଧୂଳର ପ୍ରାପ୍ତେ ଦଣ୍ଡେଇ । ୧୩୬ ।
ଔଷଧ ବସ୍ତୁ ଯେ ସେବା ତାଙ୍କର ।
ନଇର୍ଋତରେ ଯେ ଭଦ୍ରା ସୁନ୍ଦର । ୧୩୭ ।
ଲଳିତା ଗୋପୀ ଯେ ସେ ଚନ୍ଦ୍ରାବଳୀ ।
ପଶ୍ଚିମେ ଶ୍ରୀକୃଷ୍ଣ ସମ୍ମୁଖେ ଖେଳି । ୧୩୮ ।
ଦର୍ପଣ ସେବା ଯେ ଲଳିତା କରେ ।
ଅଷ୍ଟ ନାୟିକା ଯେ ଅଷ୍ଟ କୋଣରେ । ୧୩୯ ।
ଛଡ଼ ନାୟିକା ଯେ ଅଛନ୍ତି ରହି ।
ବୃନ୍ଦାବତୀ ରଙ୍ଗଦେବୀ ଯେ କହି । ୧୪୦ ।
ରାଧା କୃଷ୍ଣଙ୍କର ଜଗିଣ ଦ୍ୱାର ।
ସେବା କରେ ବୃନ୍ଦାବତୀ ଭ୍ରମର । ୧୪୧ ।

---

୧୩୩—୧ ପୁଷ୍ପ ତାଙ୍କ ଗୃହର (କ);

ରାଧାକୃଷ୍ଣ ଭକ୍ତ ତେବେ ପାଇବ ।
ଶ୍ରୀଗୁରୁ ମୁଖରେ ଏହା ପୁଚ୍ଛିବ । ୧୪୨ ।
କୃଷ୍ଣଭକ୍ତ ଅଛନ୍ତି ହୃଦରେ ପୁଣ ।
ଶ୍ରୀଶକ୍ତ ଅଛନ୍ତି ଦକ୍ଷିଣେ ଜାଣ । ୧୪୩ ।
ଷୋଳ ଦଳରେ ଯେ ଦୁଆଗ୍ର ହୋଇ ।
ତ୍ରିପୁର ପୂର୍ବରେ ଅଛନ୍ତି ରହି । ୧୪୪ ।
ତାରିଣୀ ଦକ୍ଷିଣେ ଅଛନ୍ତି ଜାଣ ।
କ୍ଷମା ଯେ ପଶ୍ଚିମ ଦଗରେ ପୁଣ । ୧୪୫ ।
ଭଇରବୀ ଯେ ହୃଦରେ ଅଛଇ ।
ଷୋଳ ଦଳରେ ଯେ ଦୁଆଗ୍ର ସେହି । ୧୪୬ ।
ଅନନ୍ତ ଗୋପୀରୁ ସାର ଯେ ପୁଣ ।
ନବଲକ୍ଷ ଗୋପୀଶ୍ରେଷ୍ଠ ଯେ ଗଣ । ୧୪୭ ।
ନବ ଲକ୍ଷ ସାର ଅଟନ୍ତି ଗୋଇ ।
ଷୋଳ ସହସ୍ର ଯେ ସାର ଅଟଇ । ୧୪୮ ।
ଷୋଳ ସସ୍ର ସାର ଏ ଚଉଷଠି ।
ଚଉଷଠିରୁ ଯେ ଅଠର ଗୋପୀ ୧୪୯ ।
ଅଠରରୁ ସାର ଅଟନ୍ତି ବାର ।
ବାରରୁ ସାର ଯେ ଆଠ ସୁମର । ୧୫୦ ।
ଆଠରୁ ସାର ଯେ ଦୁଇ ଅଟଇ ।
ଦୁଇକଳାରୁ ଧୃଣ ଗୋପୀ ହୋଇ । ୧୫୧ ।
ଐଶାନ୍ୟ ଦଗରେ କୃଷ୍ଣ କଳା ।
ଶ୍ୟାମକଳା ନଇର୍‌ତେ ରହିଲା । ୧୫୨ ।
ଆରକ୍ତ କଳା ଯେ ଅଗ୍ନିକୋଣରେ ।
ପଦ୍ମବର୍ଣ୍ଣ ପୁଣ ରହେ ହୃଦରେ । ୧୫୩ ।

---

୧୫୩—୨ ପଦ୍ମଦଳ (ଖ);

ପୂର୍ବଦଳେ ପୀତକଳା ରହିଲ ।
ଗଉରକଳା ପଶ୍ଚିମେ ରହିଲ । ୧୫୪ ।
ଶ୍ୟାମକଳା ପୁଣ ବାୟବ୍ୟେ ରହି ।
ପୀତବର୍ଣ୍ଣ କଳା ଦକ୍ଷିଣେ ରହି । ୧୫୫ ।
ପୀତ କୁଙ୍କୁମ ଯେ ପୂର୍ବ ଈଶାନ୍ୟ ।
କୁଙ୍କୁମ ରହିଲ ଈଶାନ୍ୟକୋଣ । ୧୫୬ ।
ଏମନ୍ତ ହୋଇଣ ପୂର୍ବ ଅଷ୍ଟଦ ।
କୁଙ୍କୁମ କଳାଟି ଏ ଦଳେ ରହି । ୧୫୭ ।
ପୀତ ଆରକତ ଦକ୍ଷିଣେ ପୁଣ ।
ଆରକତ ରହେ ଦକ୍ଷିଣକୋଣ । ୧୫୮ ।
ପଦ୍ମ ଶୁକଳ ଯେ ଶ୍ୟାମ ଗଉର ।
ଧନ କଳା ଯେ ଉତ୍ତର ସାଗର । ୧୫୯ ।
ଶ୍ୟାମ ଗଉର ଯେ ବାୟବ୍ୟେ ରହେ ।
ଏମନ୍ତେ ଶୁକଳ ଉତ୍ତରେ ଶୋହେ । ୧୬୦ ।
ପଶ୍ଚିମେ ନୈର୍‌ଋତେ ଗଉର ଶ୍ୟାମ ।
ନଇର୍‌ଋତେ ଶ୍ୟାମ କଳା ଉତ୍ତମ । ୧୬୧ ।
ଶ୍ୱେତ ରଙ୍ଗକଳା କୁଙ୍କୁମ କହି ।
ଗୃହକଳା ରାଧା ଅଙ୍ଗରୁ ହୋଇ । ୧୬୨ ।
ପ୍ରେମରୂପା ଚନ୍ଦ୍ରାବଳୀ ଯେ ଦୁଇ ।
ରଙ୍ଗରେଖା ହରପ୍ରସ୍ତା ଯେ ଶୋହି । ୧୬୩ ।
ରାଧାଙ୍କ ଅଙ୍ଗରୁ ବୃନ୍ଦ ନାୟିକା ।
ଏ ବୃନ୍ଦକଳାରୁ ଅନଙ୍ଗ ଶାଖା । ୧୬୪ ।
ହରପ୍ରିୟା ଛନ୍ତି ନଇର୍‌ଋତର ।
କୁଙ୍କୁମ କଳା ଯେ ତାଙ୍କ ଅଙ୍ଗର । ୧୬୫ ।
ରଙ୍ଗରେଖା ଅଗ୍ନିକୋଣରେ ରହି ।
ଆରକତ ବର୍ଣ୍ଣ ଅଙ୍ଗରେ ଶୋହି । ୧୬୬ ।

ନଇର୍ତ କୋଣେ ଭଦ୍ରା ଅଛଇ ।
ଚନ୍ଦ୍ରାବଳୀ କଳା ଯେମନ୍ତ ସେହୁ । ୧୬୭ ।
ଶ୍ୟାମବର୍ଣ୍ଣ ଭଦ୍ରା ଅଟଇ ପୁଣ ।
ଏମନ୍ତ ହୋଇଛି ପଶ୍ଚିମ ଭାଗ । ୧୬୮ ।
ପ୍ରେମରୂପାଠାରୁ ଶ୍ୟାମଳା ପୁଣ ।
ଶୁକଳ ପକ୍ଷ ଯେ କଳା ବୋଲଣ । ୧୬୯ ।
ଶୁକ୍ଳକଳା ପୁଣ ଏମନ୍ତ ହୋଇ ।
ପୂର୍ବ ପଶ୍ଚିମ ଯେ ଦକ୍ଷିଣେ କନ୍ଥ । ୧୭୦ ।
ଉତ୍ତର ପଶ୍ଚିମ ସ୍ୱର ଯେ ପୁଣ ।
ଓଁକାର ଅର୍ଦ୍ଧାଙ୍ଗ ବିନ୍ଦୁ ହେବ ଜାଣ । ୧୭୧ ।
ଉକାର ପୂର୍ବ ଯେ ବିନ୍ଦୁ ପଶ୍ଚିମ ।
ଉକାର ଉପରେ ଦକ୍ଷିଣ ସ୍ଥାନ । ୧୭୨ ।
ଓଁକାର ବିନ୍ଦୁ ଯେ ଉତ୍ତର କହୁ ।
ଗୁରୁମୁଖେ ତତ୍ତ୍ୱ ଭେଦିବଲେ ପାରୁ । ୧୭୩ ।
ମନ୍ତ୍ର ସୁମରିଣ କର ଦର୍ଶନ ।
ରାଧେକୃଷ୍ଣଶ୍ୟାମ କରଣ ନମ । ୧୭୪ ।
ଯୁଗଳ ମନ୍ତ୍ର ଯେ ଭଜନ କର ।
ଅଷ୍ଟ ସଖୀଙ୍କର ସେବା କରୁଣ । ୧୭୫ ।
ଷଡ଼ଗୁଣ ଉପରେ ଷଟ୍‌କୋଣ ଥୋଇ ।
ଯୁଗଳି ବୀଜ ଯେ ମନ୍ତ୍ର ବସାଇ । ୧୭୬ ।
ରାଧାକୃଷ୍ଣ ମନ୍ତ୍ରେ କର ଦର୍ଶନ ।
ତେବେ ପାଇବ ଭଗବତର ସ୍ଥାନ । ୧୭୭ ।
ଶିଷ୍ୟଙ୍କୁ ଏ ଭେଦ ଗୁରୁ ନ କହୁ ।
ଅଯୋଗ୍ୟ ସାଧୁଣୀ ଗୁରୁ ଅଟଇ । ୧୭୮ ।

---

୧୭୧—୨ ଊଁକାର (ଖ);
୧୭୬—୧ ଷଟ୍‌କୋଣ ଉ ପଥ (କ);

ଶିଷ୍ୟ ଦରସିଖା ଅଲୁଣି ଜାଣ ।
ଗୁରୁଶିଷ୍ୟ ଦୁହେଁ ଏମନ୍ତ ପୁଣ । ୧୭୯ ।
ସ୍ୱପ୍ନରେ ଯେସନ ପଡ଼ଇ ବାଛ ।
ଏକଥା ବିବେକ ମୁଖରେ ପୁଚ୍ଛ । ୧୮୦ ।
ଦାତାର ପଦାର୍ଥ ନାଶକୁ ଯାଇ ।
ଗନ୍ଧୁଣୀ ଗୋଷ୍ଠାତ ଲଗେ ମରଇ । ୧୮୧ ।
ଦେଲଲୋକର ତ ମନ ବିରସ ।
ଦ୍ୱରର କଥା ଯେ ଅମୃତ ରସ । ୧୮୨ ।
ଦ୍ୱଶରସର ଯେ ଭେଦ ନ ଜାଣି ।
ଶିଷ୍ୟକର୍ଣ୍ଣେ ଦୀକ୍ଷା କହିନ୍ତି ପୁଣି । ୧୮୩ ।
କ୍ଷୁଧାର୍ତ୍ତି ହୋଇଣ ଶିଷ୍ୟ ପୁଚ୍ଛଇ ।
ଗୁରୁ ଦ୍ୱଶରସ ଭୁଞ୍ଜାଏ ନାହିଁ । ୧୮୪ ।
ସେ ଶିଷ୍ୟର କ୍ଷୁଧା ନୁହଇ ନାଶ ।
ଗୁରୁଙ୍କୁ ଲାଗଇ ଆଶା ଯେ ଦୋଷ । ୧୮୫ ।
ଯନ୍ତ୍ରମନ୍ତ୍ର ଏଣୁ ଗୁରୁ ସାଧିବ ।
ଶିଷ୍ୟକୁ ଯତନେ ଗୁପତେ ଦେବ । ୧୮୬ ।
ଦ୍ୱଶ ମହିମା ଅଯାଚକେ ଦେଲେ ।
ଶୂକର ହୁଅଇ ସେ ପ୍ରାଣୀ ମଲେ । ୧୮୭ ।
ମନ୍ତ୍ରଯନ୍ତ୍ର ଶିଷ୍ୟଠାରେ କହିବ ।
ଯାଚକେ କହିଲେ କୁଷ୍ଠ ଜନ୍ମିବ । ୧୮୮ ।
ତଷ୍ଟାଙ୍କ ପଞ୍ଚାଙ୍ଗ ଯେହ୍ନ ନ କରେ ।
ଗୁରୁ ଅପରାଧ ସେହ୍ନ ଆବୋରେ । ୧୮୯ ।
ଶୂଦ୍ରମଠ ଦାନ ଅତ୍ୟନ୍ତ ଗ୍ଲାର ।
ଶ୍ରୀଗୁରୁ କରୁଣା କଲେ ଉଦ୍ଧର । ୧୯୦ ।

---

୧୭୯—୧ ଦରସିକ୍ଷା ଲୁଣୀ (ଖ);

ଚଉଶ ବୃତ୍ତରେ ଅଚ୍ୟୁତ ଦାସ ।
ଗୁରୁଭକ୍ତଗୀତା କଲେ ପ୍ରକାଶ । ୧୯୧ ।
ପାଷାଣ୍ଡ ଜନକୁ ଏହା ନ କହ ।
ପଣ୍ଡିତ ଚଉରେ ଏ ଶାସ୍ତ୍ର କହ । ୧୯୨ ।
ବାରବରଷ ଏ ପାଠ ଶୁଣିମ ।
ବୋଧ ଭେଦ ଗୁରୁ ବତାଇ ଦେବ । ୧୯୩ ।
ତେବେ ପାଇବ ଏ ଗ୍ରନ୍ଥର ସନ୍ଧି ।
ପଦବନ୍ଧରେ ଯେ ଅଛଇ ଛନ୍ଦ । ୧୯୪ ।
ପାମର ଅଚ୍ୟୁତ ନ ଧର ଦୋଷ ।
ସାଧୁଜନମାବେ ମୁଖରେ ଘୋଷ । ୧୯୫ ।

ଇତି ଶ୍ରୀଗୁରୁଭକ୍ତଗୀତାକଥନେ ନାମ ଚତ୍ୱାରିଂଶତ୍ ଗ୍ରନ୍ଥ ।।



# ଏକ ଚତ୍ୱାରଂଶତ୍ ଛାନ୍ଦ

ଦେବଙ୍କ ଦୁର୍ଲଭ ଚିନ୍ତାମଣି ଯେ ଅଛଇ ।
ଶଏ ଯୋଜନର ଦୀର୍ଘ ଷଟକୋଣ ହୋଇ ୧ ।
ପୁଣ ଶଏ ଯୋଜନ ଅଟଇ ପୁଣ ସ୍ଥିର ।
ଅଷ୍ଟକୋଣ ଏମନ୍ତ ଯେ ଚିନ୍ତାମଣି କର । ୨
ସହସ୍ର କେଶର ଚଉଦ୍ଧି ପାଶର ଯେ ସ୍ଥଳ ।
ରାଧାସଙ୍ଗେ ବିହାର ଯେ ମଦନଗୋପାଳ । ୩ ।
ଶ୍ରୀକୃଷ୍ଣଙ୍କୁ ବେଶସେବା ଗୋପାଳ କରନ୍ତି ।
ସେଠାବର ନ ଚ ସ୍ତ୍ରି ଶ୍ଚ ନ ଚ ପୁରୁଷ ହୋନ୍ତି । ୪ ।
ଯୁଗଳମନ୍ତ୍ର ଜପିଲେ ଭକ୍ତ ଅଙ୍ଗ ହୋଇ ।
ଶ୍ରୀକୃଷ୍ଣଙ୍କୁ ବେଶ ନେଇ ଗୋପାଳ ଯୋଗାଇ । ୫ ।
ବଟହ୍ନପୁଚ୍ଛ ଯେ ଚୂଡ଼ାମନ୍ତ୍ର ପଢ଼ି ପୁଣ ।
ସୁଦାମ ଗୋପାଳ କୃଷ୍ଣ ଶିରରେ ଦେଇଣ । ୬ ।
ଗୁଞ୍ଜବୁଞ୍ଜ ମାଳ ପୁଣ ଦାମ ଯୋଗାଇଣ ।
ଅଷ୍ଟରତ୍ନ ତିଳକ ଯେ ଶ୍ରୀବତ୍ସ ଖଞ୍ଜିଣ । ୭ ।
ସୁବାହୁ ଗୋପାଳ ପୁଣ ଶ୍ରୀ ଖଣ୍ଡ ଦେଇ ।
ଗୋରଚନା ଚିତା ପୁଣ ସୁବଳ ଯୋଗାଇ । ୮ ।
ଅରୁଣ ତରୁଣ ମୃଦୁ କୋମଳ ଲୋଚନ ।
କେଉଁ ସଖା ଦିଅନ୍ତି ଯେ ନୟନେ ଅଞ୍ଜନ । ୯ ।
ହେମସୂତ୍ରେ ନାସାରେ କେ ଦିଅନ୍ତି ମୁକୁତା ।
ମଦନବାଣକୁ ଭ୍ରୂଭଙ୍ଗି ଅଟେ ଜିତା ୧୦ ।
ସର୍ବରଙ୍ଗ କୁଳକୁ ଯେ ନିନ୍ଦଇ ଅଧର ।
ଦନ୍ତମୋଢ଼ ଟିଟକ ଯେ ଦିଶଇ ସୁନ୍ଦର । ୧୧ ।

ବୃନ୍ଦାବନ ଅଷ୍ଟରତ୍ନ କୁଣ୍ଡଳ କର୍ଣ୍ଣରେ ।
ସେବା ଯେ କରନ୍ତି ପୁଣ ଶ୍ରୀକୃଷ୍ଣ ଅଙ୍ଗରେ । ୧୨ ।
କମ୍ବୁକଣ୍ଠେ ବ୍ୟାଘ୍ରନଖ ଅଷ୍ଟରତ୍ନେ ଶୋହେ ।
କଉସ୍ତୁଭମଣି ହୃଦେ ଶୋଭାବନ ପାଏ । ୧୩ ।
ଭଟଟି ବାହୁଟି କରେ କଙ୍କଣ କେ ଦେଇ ।
ହୃଦରେ ପଦକ କେତୁ ଗୋପାଳ ଖଞ୍ଜାଇ । ୧୪ ।
ଅଷ୍ଟରତ୍ନ ମୁଦ୍ରିକା କେ ଅଙ୍ଗୁଷ୍ଠରେ ଦେଇ ।
ସ୍ତୋକ କୃଷ୍ଣ ମୁରଳୀ ଯେ ହସ୍ତରେ ଯୋଗାଇ । ୧୫ ।
କଟୀରେ ଘଣ୍ଟ ଘ ଗୁଞ୍ଜ କେ ଗୋପାଳ ଦେଇ ।
ପୀତବସ୍ତ୍ର ନଟ କଚ୍ଛ କେ ପୁଣି ପାଳଇ । ୧୬ ।
ପାହୁଡ଼ ନୂପୁର ପୁଣ ସାତୁକ ଯେ ଦେଇ ।
ରତ୍ନକଠାଉ ଉଦ୍ଧବ ପଦ୍ମରେ ଯୋଗାଇ । ୧୭ ।
ଚନ୍ଦନଚନ୍ଦନ ଗୋ ଅଙ୍ଗେ ପାଏ ଶୋଭାବନ ।
ଦକ୍ଷିଣ କରେ ମୁରଲୀ ଗୋପୀଙ୍କ ଭଜନ । ୧୮ ।
ଭକତବତ୍ସଳ ବାନା ବାମକରେ ଧରେ ।
ତ୍ରିଜଗମୋହନ ବନେ ରତ୍ନବେଦୀ ପରେ । ୧୯ ।
ଦକ୍ଷିଣକନ୍ଧରେ ଶୋହେ ମଇତା ସୁନ୍ଦର ।
କେକୀକଣ୍ଠ ନୀଳମେଘ ନନ୍ଦନ ମନ୍ଦର । ୨୦ ।
ଖଞ୍ଜନ ନୟନ କସେ କୁଞ୍ଜର ଆନନ ।
ଶ୍ରୀଅଙ୍ଗ ନିନ୍ଦଇ କସେ ଦଳିତ ଅଞ୍ଜନ । ୨୧ ।
ନୀଳ ହୃତପଲ କସେ କାଳନ୍ଦୀର ଜଳ ।
ରତ୍ନବେଦୀକାରେ ରୂପ ଦଶଇ ଉଜ୍ଜ୍ୱଳ । ୨୨ ।
ସ୍ତୋକକୃଷ୍ଣ ପ୍ରଥମ ଯେ ପ୍ରହରରେ ପୁଣ ।
ଚମ୍ପା ପୁଷ୍ପ ଅଙ୍ଗରେ ଯେ ସେବା ଯୋଗାଇଣ । ୨୩ ।
ବୃନ୍ଦାବନ ଗୋପାଳ ଯେ ଦ୍ୱିତୀୟ ପ୍ରହରେ ।
ନାଗେଶ୍ୱର ପୁଷ୍ପ ବେଶ କରନ୍ତି ଅଙ୍ଗରେ । ୨୪ ।

ଖାରବାହୁ ଗୋପାଳ ସେ ତୃତୀୟ ପ୍ରହରେ ।
ମାଧବୀପୁଷ୍ପ ସେ ସେବା କରନ୍ତି ଅଙ୍ଗରେ । ୨୫ ।
ସଞ୍ଜୟ ଗୋପାଳ ପୁଣ ଚତୁର୍ଥ ପ୍ରହରେ ।
କଦମ୍ବ ସେ ପୁଷ୍ପ ସେବା କରନ୍ତି କୃଷ୍ଣରେ । ୨୬ ।
ସାରୁକ ଅର୍ଜୁନ ପୁଣି ପଞ୍ଚମ ପ୍ରହରେ ।
ବୈଜୟନ୍ତୀ ପୁଷ୍ପ ସେବା କରନ୍ତି ଅଙ୍ଗରେ । ୨୭ ।
ସୁବାହୁ ଗୋପାଳ ପୁଣ ଷଷ୍ଠ ପ୍ରହରରେ ।
ଲବଙ୍ଗପୁଷ୍ପରେ ବେଶ କରନ୍ତି ସୁନ୍ଦରେ । ୨୮ ।
ସପ୍ତମପ୍ରହରରେ ଶୁଣ ବିନୋଦ ଗୋପାଳ ।
କୁନ୍ଦପୁଷ୍ପେ ସେବା ସେ କରଇ ସେ କୁଶଳ । ୨୯ ।
ସୁଦାମ ଦାମ ଗୋପାଳ ଅଷ୍ଟମପ୍ରହରେ ।
ବନମାଳପୁଷ୍ପ ସେବା କରନ୍ତି ଅଙ୍ଗରେ । ୩୦ ।
କୃଷ୍ଣମନ୍ତ୍ର ସ୍ମରଣ ଦର୍ଶନ କରିବ ।
କଲଇଁ କୃଷ୍ଣାୟ ନମ ମନ୍ତ୍ରରେ ଧରିବ । ୩୧ ।
ଅଷ୍ଟକୋଣ ବସାଇଲେ ମନ୍ତ୍ର ସର୍ବ ହୋଏ ।
କଲଇଁ ଶ୍ରୀକୃଷ୍ଣ ସେ ମନ୍ତ୍ର ଭେଦ କହେ । ୩୨ ।
କୃ ଅଟେ ସୁଦାମ ସେ ଷ୍ଣା ଦାମ କହି ।
ୟ ଅଟେ ବଳଭଦ୍ର ନମ ସଖା ଦୁଇ । ୩୩ ।
ଲୋକପାଳ ଧର୍ମାନନ୍ଦ ଅଟନ୍ତି ସେ ଦୁଇ ।
ନ ଲୋକପାଳ ମ ଧର୍ମାନନ୍ଦ କହି । ୩୪ ।
ଏଣୁକରି ରାମକୃଷ୍ଣ ଗୋପାଳ ସେବଣ ।
ରାମକୃଷ୍ଣ ବେଶ ସେ କରନ୍ତି ଅନୁକ୍ଷଣ । ୩୫ ।
ରାଧାଦେବୀ ଶ୍ରୀକୃଷ୍ଣର ସେବାରେ ବସିଲେ ।
ଚନ୍ଦ୍ରାମଣି ସ୍ଥଳେ ବିଜେ ମଦନଗୋପାଳ । ୩୬ ।

୩୨—୧ ଅଷ୍ଟକୋଣ (ଙ);

ଗୁରୁ ବୁଝାଇଲେ ତତ୍ତ୍ୱ ଭେଦ ପାରେ ଶିଷ୍ୟ ।
ତକାର ସଖା ଅଟନ୍ତି ବଳଦେବ କୃଷ୍ଣ । ୩୭ ।
ବନ୍ଦ୍ କୃଷ୍ଣ ଅଟନ୍ତି ଶୁଣ ହେ ସୁଜନ ।
ଓଁକାରର ଆଦ୍ୟ ଅଟେ କୃଷ୍ଣ ସଖା ପୁଣ । ୩୮ ।
ସେବା ବେଶ ଯନ୍ତ୍ର ତତ୍ତ୍ୱ ମନ୍ତ୍ର ହେତୁ କର ।
ଗୁରୁ ବୁଝାଇଲେ ଶିଷ୍ୟ ନରକୁ ଉଦ୍ଧାର । ୩୯ ।
ଏ ଭେଦ ନ ଜାଣି ଗୁରୁ ଅଙ୍ଗ ଯନ୍ତ୍ର କର ।
ଅନ୍ଧେ ଅନ୍ଧ ସଙ୍ଗ ଯେହ୍ନେ ପଥରେ ନ ତର । ୪୦ ।
ଶୁଣ ହେ ମୁକୁନ୍ଦ ନନ୍ଦ ଅଚ୍ୟୁତ ବଚନ ।
ଭୁଥ ବନ୍ଧ କୃଷ୍ଣ ଦାସ ମନେ ହେତୁ ଘେନ । ୪୧ ।
ଏହୁ ଗୁରୁଭକ୍ତଗୀତା ଗୁରୁଙ୍କର ଧନ ।
ଅଣାକ୍ଷର ମନ୍ତ୍ର ଅଟେ ଗୁରୁ ହେତୁ ଧ୍ୟାନ । ୪୨ ।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଏକଚତ୍ୱାରିଂଶତ୍ ଛାନ୍ଦ ।

---

୩୯—୨ ନରଙ୍କ ଉପରେ ଗୁରୁ ଏ ଭେଦରେ ପାର (କ);

# ଦ୍ୱିଚତ୍ୱାରିଂଶତ୍ ଛାନ୍ଦ

ପ୍ରଥମ ପୂର୍ବ ସେ ଦୁଆରେ ପୁଣ ।
ଗୋପକନ୍ୟାମାନେ ଦ୍ୱାର ଜଗିଣ । ୧
ଦ୍ୱିତୀୟ ଦୁଆରେ ଗୋପାଳ ପୁଣ ।
ଚିନ୍ତାମଣି ସ୍ଥଳ ରକ୍ଷା କରଣ । ୨ ।
ତୃତୀୟ ଦୁଆରେ ଗୋପାଳେ ରନ୍ଧ ।
ଚତୁର୍ଥ ଦୁଆରେ ସୁରଭି କନ୍ଧ । ୩ ।
ପାରିଜାତ ବୃକ୍ଷ ପଞ୍ଚମ ଦ୍ୱାରେ ।
ବିଷ୍ଣୁ ବିଜେ କରି ସେହୁ ମୂଳରେ । ୪ ।
ଅଷ୍ଟପାଟବଂଶୀ ବିଷ୍ଣୁ ସଙ୍ଗର ।
ଉଦ୍ଧବ ଗୋପାଳ ଗଣ୍ଡ ତହିଁର । ୫ ।
ଅଷ୍ଟ ଆବରଣେ ବିଷ୍ଣୁ ବନ୍ଦଣ ।
ଲକ୍ଷ୍ମୀ ସରସ୍ୱତୀ ସଙ୍ଗତେ ପୁଣ । ୬ ।
ଅନନ୍ତ ଶଙ୍କର ଅନନ୍ତ ତହିଁ ।
ଚିନ୍ତାମଣିସ୍ଥଳ ଏମନ୍ତ ହୋଇ । ୭ ।
ସପ୍ତ ଆଭରଣେ ବିଷ୍ଣୁ ଅଛନ୍ତି ।
ଶୁକଳବର୍ଣ୍ଣ ଚତୁର୍ଭୁଜ ହୋଇ । ୮ ।
ଉତ୍ତର ପ୍ରଥମ ଦୁଆରେ ପୁଣ ।
ଶ୍ରୁତିକନ୍ୟାମାନେ ତହିଁ ବନ୍ଦଣ । ୯ ।
ଦ୍ୱିତୀୟ ଦୁଆରେ ଗୋପବାଳକ ।
ସୁଦାମ ଗୋପାଳ ସଙ୍ଗେ ବାଳକ । ୧୦ ।
ତୃତୀୟ ଦୁଆରେ ରହନ୍ତି ଗୋପ ।
ଚତୁର୍ଥେ ଧେନୁ ଶ୍ୟାମଳସ୍ୱରୂପ । ୧୧ ।

ପଶ୍ଚିମ ଦୁଆର କୃଷ୍ଣଚନ୍ଦନ
ସୁବର୍ଣ୍ଣ ମନ୍ଦରେ ସେତୁ ଲାଞ୍ଛନଣ । ୧୧ ।
ବଳଦେବ ବନେ ରେବତୀ ଘେନ ।
ଷଷ୍ଠମ ଦୁଆରେ ଦେବଗଣଙ୍କ । ୧୩ ।
ସପ୍ତମ ଦୁଆରେ ବୃକ୍ଷ ରକ୍ଷଣ ।
ଚଇତନ୍ୟ ବୃକ୍ଷ ନାମ ଯେ ପୁଣ । ୧୪ ।
ପ୍ରଥମେ ଦକ୍ଷିଣ ଦୁଆରେ ପୁଣ ।
ଦେବକନ୍ୟାମାନେ ଦ୍ୱାର ଜଗିଣ । ୧୫ ।
କଙ୍କିଣୀ ଗୋପାଳ ଦ୍ୱିତୀୟ ଦ୍ୱାରେ ।
ଲବଙ୍ଗ ଗୋପାଳ ତୃତୀୟ ଦ୍ୱାରେ । ୧୬ ।
ଚତୁର୍ଥ ଦୁଆରେ କୃଷ୍ଣ ବୃକ୍ଷ ଯେ ।
ଅବତାର ବୃକ୍ଷ ସେଠାରେ ଝଳେ । ୧୭ ।
ପଶ୍ଚିମଦ୍ୱାରେ ରାଧାକୃଷ୍ଣ ରହୁ ।
ଏକାଦଶ ବନ ଚଉପାଶହିଁ । ୧୮ ।
ମଧ୍ୟରେ ଅଛଇ ଏକଇ ବନ ।
ଉତ୍ତରେ ଯମୁନା ନଦୀର ସ୍ଥାନ । ୧୯ ।
ପଶ୍ଚିମେ ରାଧାକୃଷ୍ଣ ବଛେ ଜଗ ।
ପୂର୍ବ ପଶ୍ଚିମ ଯେ ଦଶ ବଗୃନ । ୨୦ ।
ଉତ୍ତର ଦକ୍ଷିଣ ଅଛଇ ଦୁଇ ।
ବୃନ୍ଦାବନେ ସେବା କରଣ ଲଭି । ୨୧ ।
ଅଗ୍ନି ବାୟବ୍ୟ ଯେ ନଇର୍ତ୍ତ ତରେ ।
ଈଶାନ୍ୟ ମିଶିଣ ଅଷ୍ଟ ଦଳରେ । ୨୨ ।
ଅଠଅଷ୍ଟ ଚଉଷଠି ଦୁଆର ।
ଅଷ୍ଟଦ୍ୱାର ଜଗି ସେବା ବଧୁର । ୨୩ ।
ବରଣ୍ଡନା ସମ୍ପୂର୍ଣ୍ଣ ନାମ ତହିଁ ।
ପୂର୍ବଦଳରେ ଯେ ବୃକ୍ଷ ଅଛଇ । ୨୪ ।

ଐଶାନ୍ୟ ଦଳେ କୃପବଷ୍ଟୁ ପୁଣ ।
ଚନ୍ଦ୍ରାମଣିସ୍ଥଳ ଜଗି ରହିଣ । ୧୫ ।

ବରାହବଷ୍ଟୁ ସେ ଉତ୍ତରେ ସ୍ଥାନ ।
ରତ୍ନବେଦୀସ୍ଥାନେ ସେଚା ଭଜନ । ୧୬ ।

ନୃସିଂହ ବଷ୍ଟୁ ବାୟୁବ୍ୟଦଳରେ ।
ରହିଅଛନ୍ତି ସେ ସେବା ସ୍ମରବେ । ୧୭ ।

ବାମନ ପଶୁରାମ ଦୁଇ ପୁଣି ।
ନଇର୍ତ୍ୟକୋଣଦଳେ ରହିଣ । ୧୮ ।

ଦକ୍ଷିଣଦଳେ ଶ୍ରୀରାମ ମୂରତି ।
ରତ୍ନବେଦୀପରେ ଶୋଭା ଦଶନ୍ତି । ୧୯ ।

ଅଗ୍ନି କୋଣେ ବସେ ଜଗନ୍ନାଥ ।
ପଞ୍ଚମୂରତି ସେ ଘେନି ସଙ୍ଗତ । ୨୦ ।

ଏମନ୍ତେ ଅଷ୍ଟବଷ୍ଟୁ ଚଉପାଶେ ।
ବେଢ଼ି ରହିଛନ୍ତି ଶ୍ରୀକୃଷ୍ଣପାଶେ । ୨୧ ।

ରାଧାକୃଷ୍ଣ ବସେ ପଶ୍ଚିମ ଦଳ ।
ଏମନ୍ତ ହୋଇ ଚନ୍ଦ୍ରାମଣିସ୍ଥଳ । ୨୨ ।

ଅଷ୍ଟବଷ୍ଟୁ ସେବା କଲେଣ ପୁଣ ।
ଅବତାର ବଷ୍ଟୁ ସେବା କରଣ । ୨୩ ।

ତେବେ ସିନା ରାଧ କୃଷ୍ଣଙ୍କୁ ପାଇ ।
ବଷ୍ଟୁ ବାଣ୍ଟ ତେବେ ଗ୍ରହଣ ଦେଇ । ୨୪ ।

ଅଜପା ମନ୍ତ୍ର ସେ ଜପ କରଣ ।
ଅବତାର ବଷ୍ଟୁ ସନ୍ତୋଷ ପୁଣ । ୨୫ ।

ଅଜପା ମନ୍ତ୍ର ସେ ଜପଇ ନାହିଁ ।
ରାଧାକୃଷ୍ଣ ସେହୁ ଦୃଶ୍ୟ ନ ପାଇ । ୨୬ ।

ପ୍ରଅମେ ସ୍ୱର ତଥିପରେ ସ୍ୱର୍ ।
ତଥି ପାର୍ଶ୍ୱେ ସ୍ୱର ସ୍ୱର ଧର । ୩୭ ।
ସ୍ୱର ଅଠରେ ଯେ ହେବ ବନ୍ଧନ ।
ବୀଜମନ୍ତ୍ର ଆଠ ଅକ୍ଷର ଘୋଷ । ୩୮ ।
ତତ୍ସବିତୁ ର୍ବରେଣୀୟ୍ୟୋ ଯେ କହ ।
ଭର୍ଗୋଦେବସ୍ୟ ଧର୍ମହି ଅଟଇ । ୩୯ ।
ଧିୟୋୟୋନ ପ୍ରଚୋଦୟାତ୍ ସୁମର ।
ପର ରଜ ଶେଷ ବନ୍ଦ ଆଠର । ୪୦ ।
ପ୍ରଥମରେ ସ୍ୱରି ବୀଜକୁ ଧର ।
ଯନ୍ତ୍ର ଗୋଟିଏ ଯେ ଲେଖି ଭୂମିର । ୪୧ ।
ସେ ଯନ୍ତ୍ରେ ଏକ ବସନେକ ହୋଇ ।
ତ୍ରିପଂକ୍ତି ଗୁପତ ଠାବରେ କହୁ । ୪୨ ।
ତହିଁ ବସାଇବ ଅଠ ଅକ୍ଷର ।
ପରଂ ବସ୍ତୁରୂପ ଭଣ ସୁମର । ୪୩ ।
ରଜ ବସ୍ତୁ ତରସ୍ମିନ ପାର୍ଶ୍ୱେ
ଏମନ୍ତେ ଅଜପା ମନ୍ତ୍ର ଜପିଣ । ୪୪ ।
ଶେଷ ମସ୍ତକ ରୁଦ୍ରବସ୍ତୁ କହୁ ।
ବନ୍ଦ ସର୍ବଦେବ ଅନ୍ତନ୍ତ୍ର ଧ୍ୟାୟି । ୪୫ ।
ଦକ୍ଷିଣ ଅଗ୍ନିରେ ପର ବସଇ ।
ପୂର୍ବ ଐଶାନ୍ୟ ଯେ ରଜକୁ କହୁ । ୪୬ ।
ବନ୍ଦ ବସଇ ବାୟୁବ୍ୟଦଗରେ ।
ଏମନ୍ତ ଅଜପା ଅସ୍ତ୍ର ହୋଇଲେ । ୪୭ ।

---

୩୭—୧ ତଥି ପାଶେଣ (ଖ);
୪୧—୧ ପ୍ରଥମେ ଅଠ ସ୍ୱର କରି ଧର (ଖ); ୪୫—୧ ମସ୍ତକ ବସ୍ତୁ ପୁଣ (କ)
୪୭—୧ ବେଜାକ୍ଷର ନଇର୍ତ୍ତ୍ୟର । ବନ୍ଦ ବସଇ ବାୟୁବ୍ୟଦଗର (ଗ)

ଏ ଭେଦ ଜାଣିଲେ ଗୁରୁ ବୋଲଇ ।
ଗୁରୁଅଙ୍ଗ ବୋଲି ସଂସାରେ କହ୍ନ । ୪୮ ।
ଶିଷ୍ୟର କଳ୍ପ ସେ ହୋଏ କାରଣ ।
ମଳେଣ ଗନ୍ଧ ସେ ଲଭଇ ପୁଣ । ୪୯ ।
ବାସନା ରହଇ ବୀଜ ପାଚଣ ।
ବୃକ୍ଷ ଅଙ୍କୁରଇ ଇଚ୍ଛା ସୁଖେଣ । ୫୦ ।
କେଉଁ ଗ୍ରିବ ପଡ଼ିଏ ଝଡ଼ ନ ପଡ଼େ ।
ଦଗଧ ମୃତ୍ତିକା ରହେ ପୃଥ୍ୱୀରେ । ୫୧ ।
ଏଣୁ କରି ହରିନାମ ଘୋଷିବ ।
ହରିଚରଣରେ ଶରଣଥିବ । ୫୨ ।
ଶ୍ରବଣେ ହରିକଥା ଶୁଣୁଥିବ ।
ବଦନରେ କରିକଥା ଗୁଣିବ । ୫୩ ।
ହସ୍ତରେ ହରିର ଚରଣ ପୁଣ ।
ତାଳ କର୍ତ୍ତାଳ ଖୋଳ ବୀଣା ଗୁଣ । ୫୪ ।
ଜମ୍ପ ଶାରଙ୍ଗୀ ଯେ ଅମୃତ ରସ ।
ଖଞ୍ଜଣ ଗ୍ରାମତାଳରେ ଯେ ଘୋଷ । ୫୫ ।
ଭଜନ ତୁଳସୀ ମାଳ ଯେ ପୁଣ ।
ଲେଖନେ ଲେଖିବ ଶ୍ରୀକୃଷ୍ଣଗୁଣ । ୫୬ ।
ରେଖାପଲ୍ଲବରେ ତୁଳସୀ ମାଳ ।
ଭୁଆଗ୍ରନ୍ଥ ପଦ ଲକ୍ଷ କଲ୍ଲୋଳ । ୫୭ ।
ଛତ୍ରଭଙ୍ଗ ଯେ ଛନ୍ଦଣ ରାଗେଣି ।
ନବତାଳେ କୃଷ୍ଣକଥା ଯେ ଗୁଣି । ୫୮ ।
ଦନ୍ତ ତାଳବ୍ୟ ହ୍ରସ୍ୱ ଦୀର୍ଘରେ ।
ମୂର୍ଦ୍ଧଣ୍ୟ ପ୍ଲୁତାନୁସ୍ୱାର ବର୍ଣ୍ଣରେ । ୫୯ ।
ଏତେ ଗୁଣରେ ଯେ ଲେଖନକରେ ।
କୃଷ୍ଣର ଗୁଣ ଲେଖିବ ହସ୍ତରେ । ୬୦ ।

ଜ୍ୟୋତି ଅବାଙ୍ଗ ସେ ଗୁପ୍ତ ସମାଧି ।
ଓଁକାର ପଞ୍ଚ ଜଳାନ୍ଧ୍ରକ ଭେଦ । ୬୧ ।
ଯେଉଁ ଜନର ଏତେ ଚିହ୍ନା ଗୁଣ ।
ସେ ଜନ ଚନ୍ଦ୍ରାମଣି ଦରଶନ । ୬୨ ।
ଦେହ ବନ୍ଧନ ସେ ଗୁଣ ସ୍ୱଚ୍ଛନ୍ଦ ।
ଦେହ ଅନ୍ତେ ପୁଣ ଗୋଲକ ପାନ୍ତ । ୬୩ ।
ବିଷ୍ଣୁ ଅନନ୍ତ ମୁକୁନ୍ଦ ଯାଦବ ।
ଶୁଣ ବିଷ୍ଣୁଦାସ ଭଗତଭାବ । ୬୪ ।
ଚଉଷଠି ବିଷ୍ଣୁ ମଧ୍ୟରେ ଲୀଳା ।
ଦୁଷ୍ଟ ନିବାରଣ ସନ୍ଥଙ୍କ ଭେଳା । ୬୫ ।
ଚଉଷଠିରୁ ଯେ ବତିଶ ଜାଣି ।
ବତିଶୁଁ ସାର ଦଶରୂପ ପୁଣି । ୬୬ ।
ଦଶରୁ ସାର ଯେ ଅଠ ଅଟଇ ।
ଅଠରୁ ସାର ପାଞ୍ଚରୂପ ହୋଇ । ୬୭ ।
ଶ୍ୱେତ ପୀତ ଲୋହିତାରକ୍ତ ପୁଣ ।
ନୀଳ ସ୍ୱରୂପ ପାଞ୍ଚରୂପ ଜାଣ । ୬୮ ।
ଶ୍ୱେତସ୍ୱରୂପ ନାରାୟଣ ନାମ ।
ପୀତସ୍ୱରୂପ ଗୁଣିମ ଶ୍ରୀରାମ । ୬୯ ।
ଲୋହିତ ସ୍ୱରୂପ ଗୋପେ କହ୍ନାଇ ।
ଅରକ୍ତରୂପ ଚଇତନ୍ୟ କହି । ୭୦ ।
ନୀଳ ସ୍ୱରୂପ ଯେ କଳଙ୍କିରୂପ ।
ନାଶନ୍ତି ଜଗତଜନର ତାପ । ୭୧ ।
ଆଉ ଯେତେ ରୂପ ନୀଳ ବିହାର ।
ନୀଳ ଜଣେ ଇଚ୍ଛନ୍ତି ଖବର । ୭୨ ।

---

୬୨—୧ ନୟନର ଏତ ବୁଣର (କ, ଗ); ସେନ (କ), ଚିନ (ଖ);

ବଳୀର ଛମନ୍ତେ ବାମନ ହୋଇ ।
ହିରଣ୍ୟ ଛଳେ ନୃସିଂହ ରୂପହିଁ । ୭୩ ।
ପୃଥ୍ୱୀର ଛଳେ ବରାହ ଯେ କୂର୍ମ ।
ବ୍ରହ୍ମା ବେଦଛଳେ ମୀନ ଉତ୍ତମ । ୭୦ ।
ମୂଢ଼ଙ୍କ ଛଳେ ବଉଦ୍ଧ ମୂରତ ।
ବିପ୍ରଙ୍କ ଛଳେ ପଶୁରାମ ହୋନ୍ତି । ୭୫ ।
ପାତାଳ ଛଳେ ଅନନ୍ତ ସ୍ୱରୂପ ।
ଧନ୍ୱନ୍ତରି ସ୍ୱରୂପ ନରଙ୍କ ହିତ । ୭୬ ।
ଭରଥ ଶତ୍ରୁଘନ ଏ ଲକ୍ଷ୍ମଣ ।
ଷଟି ନିସ୍ତାରଣେ ଏ ରୂପ ପୁଣ । ୭୭ ।
ସୁଭଦ୍ରା ସୁଦ୍ରି (ସୁଦର୍ଶନ) ଅକାଶାଦରେ ।
ପୃଥ୍ୱୀ ଆପ ତେଜ ବାୟୁ ସଙ୍ଗରେ । ୭୮ ।
ଶୂନ୍ୟ ଆଦିତ୍ୟ ଚନ୍ଦ୍ର ତାରଗଣ ।
ମନ ବୁଦ୍ଧି ଅହଂକାର ଯେ ଗୁଣ । ୭୯ ।
ହୟଗ୍ରୀବ ବ୍ୟାସ ଶୁକ ଅଟଇ ।
ବିଷ୍ଣୁ ଅଂଶେ ଲୀଳା କରନ୍ତି ମହୀ । ୮୦ ।
ବିଷ୍ଣୁର ଲୀଳାରେ ଖେଳ ଏ ମହୀ ।
ମୂଢ଼ମାନେ ଏହା ଜାଣନ୍ତି ନାହିଁ । ୮୧ ।
ଧନ ଜନ ପତି ମାୟାରେ ମତ୍ତ ।
ଗୁରୁଚରଣରେ ନ ଦେଇ ଚିତ୍ତ । ୮୨ ।
ଗୁରୁଙ୍କୁ ଯେଣୁ ସେ ନ ପୁଚ୍ଛେ ପ୍ରାଣୀ ।
ତେଣୁ ବିଷ୍ଣୁମାୟା ନ ପାରେ ଜିଣି । ୮୩ ।
ଯେଣୁ ବିଷ୍ଣୁଗୁଣ ଗୁରୁ ଘୋଷନ୍ତି ।
ବିଷ୍ଣୁ ଗୁରୁ ତେଣୁ ଭିନ୍ନ ନୁହନ୍ତି । ୮୪ ।
ଗୁରୁ ଆଗେ ଶିଷ୍ୟ କହିଲେ ମିଛ ।
ଲାଗଇ ଗୋହତ୍ୟାଦୋଷ ପ୍ରତ୍ୟକ୍ଷ । ୮୫ ।

ଗୁରୁଠାରେ ଘଡ କପଟ କଣ ।
ବ୍ରହ୍ମହତ୍ୟା ଦୋଷ ପାତକ କଣ । ୮୬ ।
ଛନ୍ଦକର ଗୁରୁଠାରେ କହିଲେ ।
ସୁରାପାନଦୋଷ ଲାଗଇ ଭଲେ । ୮୭ ।
ମାୟାକଥା ଯେବେ ଗୁରୁଙ୍କୁ କହି ।
ବଶୁଲ ମାତୃହରଣ ସେ ହୋଇ । ୮୮ ।
ବସ୍ତ୍ର ପରାଏ ଗୁରୁଙ୍କୁ ମଣିବ ।
ଶିବ ପରାଏ ଗୁରୁଙ୍କୁ ପୂଜିବ । ୮୯ ।
ଗୁରୁଙ୍କୁ ବ୍ରହ୍ମାପ୍ରାୟେ ସ୍ତୁତି କର ।
ଆଜ୍ଞାକୁ ହୋଇଥିବ ଅବଧାର । ୯୦ ।
ଏତେ ଗୁଣ ଶିଷ୍ୟ ବୋଲି ଜାଣିବ ।
ଏମନ୍ତ ଶିଷ୍ୟ ଭକତ ଗଣିବ । ୯୧ ।
ଗୃହ ଭବସେ କରୁଥିବ କାନ୍ତି ।
ଶ୍ରୀକୃଷ୍ଣ ଗୁଣ ଯେ ଧ୍ୟାନରେ ଚନ୍ତି । ୯୨ ।
ଘନ୍ତ ତନ୍ତ୍ର ମନ୍ତ୍ର ଘୋଷୁଣ ଥିବ ।
ଗୁରୁର ଭକତ ତେବେ ହୋଇବ । ୯୩ ।
ଶ୍ରୀଗୁରୁଚରଣେ ଶରଣ ପଶ ।
ପାମର ଅଚ୍ୟୁତ ନ ଧର ଦୋଷ । ୯୪ ।
ଗୁରୁଭକ୍ତଗୀତା ଶିଷ୍ୟକାରଣେ ।
ପାମର ଅଚ୍ୟୁତ ଏ ଗୀତେ ଭଣେ । ୯୫ ।

ଇତି ଶ୍ରୀଗୁରୁଭକ୍ତଗୀତାକଥନେ ନାମ ଦ୍ୱିଚତ୍ୱାରିଂଶତ୍ତ ଗ୍ରନ୍ଥ ।

—※—

## ଦ୍ୱିଚତ୍ୱାରିଂଶତ୍ ଛାନ୍ଦ

କହୁବା କଥାଏ ଶ୍ରୀଗୁରୁଦେବ ।
କପଟରୂପ ଯେ ବହୁଦଶ୍ୱବ । ୧ ।
ମୂଢ଼ଙ୍କ ନମନ୍ତ କର୍ପା ଦୃଷ୍ଟାନ୍ତ ।
ପଣ୍ଡତଦର୍ଶନେ ଭଗନ୍ତ ପାନ୍ତ । ୨ ।
ଶୁଣ ହେ ସୂତର ସୁତ ବଚନ ।
ମନ୍ତ୍ରମୂର୍ତ୍ତି କରି କର ଭଜନ । ୩ ।
କପଟ ରୂପକୁ କଲେ ଦର୍ଶନ ।
ମନ୍ତ୍ରମୂର୍ତ୍ତି ପୂଜା କରିବ ମନ । ୪ ।
ଓଁକାର ବୋଲିଣ ଯେଉଁ ଅକ୍ଷର ।
କ୍ଷର ବୋଲି କରି ମନେ ସୁମର । ୫ ।
ମ ଅକ୍ଷରଟି କଳାବଦନ ।
ଗ୍ର ଅକ୍ଷରଟି ରଙ୍ଗାଧର ଧ୍ୟାନ । ୬ ।
ହ୍ର ଅକ୍ଷର ଡାହାଣ ଭୁଜରେ ।
ବାମ ଭୁଜରେ ରେ ଅକ୍ଷର ଧରେ । ୭ ।
ଡାହାଣ ନୟନ କ୍ଲୁଁ ଟି କହୁ ।
ଷ୍ଟ୍ର କ୍ଷର ବାମ ନୟନ ହୋଇ । ୮ ।
ମ କ୍ଷର ବେନି ଶ୍ରବଣ ହୋଏ ।
ଜୀବଆତ୍ମା ଗ୍ର ଅକ୍ଷର କହେ । ୯ ।
କ୍ଲୁଁ ଅକ୍ଷର ଯେ ଦେହେ ଅଟଇ ।
ଦେହମଧ୍ୟେ ଷ୍ଟ୍ରଅ ଆତ୍ମା ବୋଲଇ । ୧୦ ।

---

୫—୧ ଓଁକାର (କ);
୧୦—୨ ଦେହ ମଧ୍ୟେ କ୍ଲୁଁ (କ, ଖ);

ସିଂହାସନ ଅଟେ ଗ୍ର ଅକ୍ଷର ।
ଏମନ୍ତ ହୋଇଣ ମନ୍ତ୍ର ସୁନ୍ଦର । ୧୧ ।
କପଟ ରୂପକୁ ତେବେ ବର୍ଜନ ।
ସ୍ୱଚ୍ଛନ୍ଦ ଚିତ୍ତ ଯେ କରଣ ମନ । ୧୨ ।
ସୁଖ ଦିବସରେ କର ଭଜନ ।
ଶ୍ରୀଗୁରୁ ମୁଖରୁ ପଚ୍ଛୁଣ ଘେନ । ୧୩ ।
ସଖୀଅଙ୍ଗ ଚିହ୍ନି କରିବା ଲକ୍ଷ୍ୟେ ।
ଅକ୍ଷର ଗୋଟିକେ ସଖୀଏ ହୋଏ । ୧୪ ।
ହ୍ଲ କ୍ଷର ବୃନ୍ଦାବତୀ ଅଟଇ ।
ରେ ଅକ୍ଷର ରଙ୍ଗଦେବୀ କହି । ୧୫ ।
ସୁଭଦ୍ରା ଅଟଇ ଗ୍ର ଅକ୍ଷର ।
ମ କ୍ଷର ପ୍ରଦ୍ୟୁମ୍ନଦା ସୁନ୍ଦର । ୧୬ ।
ରତ୍ନରେଖା କ୍ଲୁ କ୍ଷର ଅଟଇ ।
ଷ୍ଣ କ୍ଷର ଚନ୍ଦ୍ରାଦେବୀଟି କହ । ୧୭ ।
ଏମନ୍ତେ ଛଅ ଯେ ସଖୀ ଗୁଣିଣ ।
ଗୁରୁଙ୍କୁ ଏ ଭେଦ ପଚ୍ଛର ପୁଣ । ୧୮ ।
ରେ କ୍ଷର ବୋଲି ରେବତୀ ଗୁଣ ।
ଗ୍ର ଅକ୍ଷରରୁ ଦୂତିକା ପୁଣ । ୧୯ ।
ମ ଅକ୍ଷରରୁ ସାବିତ୍ରୀ ଗୋଇ ।
ଚନ୍ଦ୍ରାବଳୀ କ୍ଲୁରୁ କ୍ଷରେ କସଇ । ୨୦ ।
ରାଧା ସୁନ୍ଦରଣ କ୍ଲୁରୁ ମନ୍ତ୍ରେଣ ।
ଏମନ୍ତ ହୋଇଣ ଗୋପୀ ଗୁଣିଣ । ୨୧ ।
ଜିବାନରେ ସଖୀ କର ଭଜନ ।
ଶୀରଭି ବୃନ୍ଦାବତୀ ରାଧା ପୁଣ । ୨୨ ।
ସାରଭି ରେବତୀ ପ୍ରେମରୂପାହି ।
କାଳଭି ଚନ୍ଦ୍ରାବଳୀ ରାଧା କହ । ୨୩ ।

ହୃଦରେ ରାମ କୃଷ୍ଣ ଛନ୍ଦେ ଭଜିବ ।
ହରଷି ଶୀରଷି କାଳଂ ବୁଝିବ । ୧୪ ।
ଏମନ୍ତ ସ୍ୱରୂପ ଗୋଟି ବସାଇ ।
ପୂର୍ବମୁଖେ ଗୁରୁ ବସିବ ଧାସ୍ତି । ୧୫ ।
ଶିଷ୍ୟଙ୍କୁ ପଶ୍ଚିମ ମୁଖ କରିବ ।
ଶିଷ୍ୟ କର୍ଣ୍ଣରେ ଯେ ମନ୍ତ୍ର କହିବ । ୧୬ ।
ହୃଦରେ କୃଷ୍ଣ ରାମ ମନ୍ତ୍ର ସୁମର ।
ଶାମ ଶବଦ ଯେ ରୂପତ କର । ୧୭ ।
ହୃଦରେ ବୀଜଗୋଟି ପ୍ରଥମେ ଥୋଇ ।
ରାମ ବୀଜ ତଥି ପାଶେ ବସାଇ । ୧୮ ।
କୃଷ୍ଣ ବୀଜ ତଥି ପାଶେ ରହିନ ।
ଶ୍ୟାମ ବୀଜ ତଥି ପାଶେ ବସିବ । ୧୯ ।
ହୃଦରେ ରାମ ବୀଜ ତଳେ ବସାଇ ।
ତହିଁ ତଳେଣ ପ୍ରଣବକୁ ଥୋଇ । ୨୦ ।
ଗୁରୁପୀଢ଼ ତଥି ତଳେ ଲେଖିବ ।
ଶେଷେ ପରାପର ଗୁରୁ ଗୁଣିବ । ୨୧ ।
ପରମ ଗୁରୁ ଯେ ତଥି ତଳେଣ ।
ଶ୍ରୀଗୁରୁ ଆପଣେ ତଥି ତଳେଣ । ୨୨ ।
ଶାମବୀଜ ପାଶେ ଚନ୍ଦ ବସାଇ ।
ବିବିଧ ପଦାର୍ଥ ପୂଜା ଯେ ଥୋଇ । ୨୩ ।
ବସ୍ତ୍ର ଅଳଙ୍କାର ଯେବା ମିଳିବ ।
ସମର୍ପଣ ନେଇ ମନ୍ତ୍ରେ କରିବ । ୨୪ ।

---

୧୯—୧ ରେ ଷଢୁ ଗୁଣ (ଖ);
୨୧—୨ ଶେଷେ ତହିଁ ପରାପର ଗୁଣିବ (କ);

ଫୁଲ ପାନ ବସ୍ତ୍ର ଚନ୍ଦନ ଯେତେ ।
ଦୁବ ଅକ୍ଷତ ଶ୍ରୀଫଳ ସହିତେ । ୩୫ ।
ହରିଡ଼ା ଗୁଆ ଯେ ବନ୍ଧେ ଫଳ ।
ଗୁରୁଚରଣରେ ସେବା ନିର୍ମଳ । ୩୬ ।
ନବବନେ ପୂଜେ ଦୀକ୍ଷା କହିଲେ ।
ଚନ୍ଦଗୋଟି ଲେଖି ନାମ କହିଲେ । ୩୭ ।
ହୁଅଇ ତାହାର ପରମ ଗତି ।
ମୁକ୍ତି ହେଲେ ପୁଣ ଜନ୍ମ ଲଭନ୍ତି । ୩୮ ।
ବରଷେ ପୂର୍ତ୍ତିରେ ମନ୍ତ୍ର କହିଲେ ।
ଚନ୍ଦ ଛନ୍ଦାକ୍ଷର ଲେଖି ପୃଥ୍ୱୀରେ । ୩୯ ।
ଶିଷ୍ୟର ହୁଅଇ ଉଗତ ଜାତ ।
ମଲେଣ ଶ୍ରୀମନ୍ତ ଘରରେ ଜାତ । ୪୦ ।
ତୃତୀୟ ବରଷେ ନାମ କହିଲେ ।
ଚନ୍ଦ ଚଉବୀଜ ଲେଖିବ ଭଲେ । ୪୧ ।
ପ୍ରଣବ ଗୋଟିଏ ପୁଣ ବସାଇ ।
ମହାଯୋଗୀ ଘରେ ମଲେ ଜନ୍ମଇ । ୪୨ ।
ପଞ୍ଚମ ବରଷେ ନାମ କହିଲେ ।
ଚନ୍ଦ ମନ୍ତ୍ରବୀଜ ପ୍ରଣବ ଭଲେ । ୪୩ ।
ଗୁରୁ ପ୍ରଣବ ଯେ କହିବ ତହିଁ ।
ମଲେଣ ଦେବତା ଶରୀର ପାଇ । ୪୪ ।
ସପ୍ତମ ବରଷେ ନାମ କହିବ ।
ଚନ୍ଦମନ୍ତ୍ର ଗୁରୁ ପ୍ରଣବ ଥିବ । ୪୫ ।
ଓଁକାର ବସାଇ ବତିଶ ଦଳ ।
ମଲେ ଜନ୍ମ ବଇକୁଣ୍ଠରେ ମେଳ । ୪୬ ।

---

୪୧—୧ ମନ୍ତ୍ର କହିଲେ (ଗ);

ନବମ ବରଷେ ଦୀକ୍ଷା ବନ୍ଧିଲେ ।
ଜାଲାନ୍ଧ୍ର ଯନ୍ତ୍ର ଯେ ଲେଖିବ ଭଲେ । ୪୭ ।
ଶିଷ୍ୟଙ୍କୁ କହିଲେ ଭଗତ ହୋଏ ।
ମଲେ ସେହୁ ଯାଜ ବନାଶ ନୋହେ । ୪୮ ।
ଲେଉଛି ସେ ଜନ ହରି ଭଜନ ।
ଭଗତ ସ୍ୱବରେ ବଳଇ ମନ । ୪୯ ।
ବାରବରଷରେ ଦୀକ୍ଷା ବନ୍ଧିବ ।
ଜାଲାନ୍ଧ୍ର ସମାଧି ଗ୍ରୁପ୍ତ କହିବ । ୫୦ ।
ପଞ୍ଚାକ୍ଷର ଅଣାକ୍ଷର ଯେ ପୁଣ ।
ଅଣାକ୍ଷର ଲେଖି କହିବା ଅନ୍ୱେଷଣ । ୫୧ ।
ପଞ୍ଚାକ୍ଷର କର୍ଣ୍ଣ ଦେଶରେ କହି ।
ଏ ଦୀକ୍ଷା ପାଇଲେ ଭଗତ ହୋଇ । ୫୨ ।
ଏ ଦୀକ୍ଷା ଯାହାକୁ ହୋଏ ପ୍ରାପତ ।
ଜାଣିବା ସେ ଜନ କୃଷ୍ଣ ଭଗତ । ୫୩ ।
ଏ ଦୀକ୍ଷା ଯେବେ ଯେ ସ୍ମରଇ ନାହିଁ ।
ଯଦୁବଂଶ ଭକ୍ତ ତାକୁ ନ କହି । ୫୪ ।
ଯେ ଅଣ ଅକ୍ଷରେ ହୁଅନ୍ତି ଭକ୍ତ ।
ଅନନ୍ତ ଭକ୍ତରେ ଭଗତେ ସେତ । ୫୫ ।
ଦକ୍ଷିଣାସ୍ତନ ହୃଦରେ ବନ୍ଧବ ।
ରବ ଶନ ଗୁରୁ ମଙ୍ଗଳ ଭାବ । ୫୬ ।
ଶୁକଳ ପକ୍ଷ ଯେ ତଥି ବସ୍ତୁଣ ।
ପୁରୁଷ ଅଙ୍ଗକୁ ଶିଷ୍ୟ ଯେ କର । ୫୭ ।

---

୫୬—୧ ଦେଖ ଯେ ହୋଇ (କ),
୫୭—୧ ବନ୍ଧବ (କ); ୪୮—୨ ଦଦେ ବମର (ଖ);

ସୋମ ଶୁକ୍ର ବୁଧବାର ସୁମର ।
ଉତ୍ତରସ୍ଥଣ ଯେ ହୁଦେ ବମ୍ବର । ୫୮ ।
ପ୍ରି ଶ୍ରିଜନଙ୍କୁ ଯେ ଦୀକ୍ଷା ଦେଲେଣ ।,
ଗୁରୁଙ୍କ ପ୍ରମାଦ ନ ପଡ୍ଡେ ପୁଣ । ୫୯ ।
ହରେ ରାମକୃଷ୍ଣ ପୁରୁଷେ ଦେବ ।
ରାଧେ କୃଷ୍ଣଶ୍ୟାମ ସ୍ତ୍ରି ଶ୍ରି କହିବ । ୬୦ ।
ଦକ୍ଷିଣାସ୍ଥନେ ସ୍ତ୍ରି ଶ୍ରିଙ୍କି ଦେଇ ।
ଗୁରୁଙ୍କୁ ପ୍ରମାଦ ନଷ୍ଟେ ପଡ଼ଇ । ୬୧ ।
ଉତ୍ତରସ୍ଥଣେ ପୁରୁଷଙ୍କୁ ଦେଲେ ।
ଗୁରୁଙ୍କୁ ବପତ୍ତି ପଡ଼ଇ ଭଲେ । ୬୨ ।
ଶିଷ୍ୟହୃଦେ ଭକ୍ତି ନୁହଇ ଜାତ ।
ମୂଳମନ୍ତ ତାର ହୁଅଇ ହତ । ୬୩ ।
ଏଣୁକରି ଦେବ ଅଣ୍ଟିର ମାଇ ।
ଅଣସ୍ଥଷ ବାୟୁ ଏଣୁ ଖେଳଇ । ୬୪ ।
ମନ୍ତ୍ର ଶୁଦ୍ଧ ଗୁରୁ ଅଙ୍ଗ କହିବ ।
ମନ ଚଞ୍ଚ ଯେ ବ୍ରହ୍ମଲୋକେ ଥିବ । ୬୫ ।
ଅଭି କୃଷ୍ଣମନ୍ତ୍ର ପଞ୍ଚତନ୍ତ୍ରରେ ।
ନମ ବୋଲି ଶୁଦ୍ଧ କରି ମନ୍ତ୍ରରେ । ୬୬ ।
ଦଶାଦର ନମ ଏ ସୁଦର୍ଶନେ ।
ଛଗଚକ୍ର ପୁଣ କରିବ ମନେ । ୬୭ ।
ଅଗ୍ନିଦଳ ପୂଜା ପ୍ରଥମେ କରି ।
ଦକ୍ଷିଣ ଦଳରୁ ପୂଜା ବରିଶ । ୬୮ ।

---

୬୦—୧ହରେକୃଷ୍ଣ ରାମ (ଖ);
୬୨—୧ କୃଷ୍ଣମୂର୍ତ୍ତି (କ); ୬୬—୨ ନମ ଶୁଦ୍ଧି ସିଦ୍ଧ (ଚ);

ଉତ୍ତର ଦଗକୁ ପୂଜା କରିବ ।
ନୈର୍ଋତ ଦଗକୁ ପୁଣ ବନ୍ଦବ । ୬୯ ।
ବାୟୁବ୍ୟଦଗକୁ ପୂଜା ଯେ କର ।
ଈଶାନ୍ୟଦଗକୁ ପୂଜା ସୁମର । ୭୦ ।
ପୂର୍ବଦଗକୁ ଯେ ପୂଜା କରଣ ।
ପଶ୍ଚିମ ଦଗକୁ ପୂଜା ବନ୍ଦଣ ୭୧ ।
ପାତାଳ ଅନନ୍ତ ଦେଶ ବନ୍ଦଣ ।
ସ୍ୱର୍ଗ ବ୍ରହ୍ମଦଶ ବନ୍ଦବ ପୁଣ । ୭୨ ।
ଦଶଦଗ ପୂଜା ଏମନ୍ତ କର ।
ପୂର୍ବମୁଖେ ବସି ଗୁରୁ ସୁମର । ୭୩ ।
ସୁଦର୍ଶନ ଚକ୍ର ନମ ବୋଲଣ ।
ଦଶଦଗ ସୁଦର୍ଶନ ଯେ ପୁଣ । ୭୪ ।
ବାମପାର୍ଶ୍ୱେ ଗୁରୁଙ୍କୁ ବସାଇ ।
ଅଗ୍ରେ ରାଧାକୃଷ୍ଣ ବିଜେ କରାଇ । ୭୫ ।
ଦକ୍ଷିଣ ପାର୍ଶ୍ୱେ ଶିଷ୍ୟ ଯେ ଗଣ ।
ଏମନ୍ତେ ପୂଜା ଯେ ଶିଷ୍ୟ କରଣ । ୭୬ ।
ଜଗମସ୍ଥାନରେ ବସିଣ ପୁଣ ।
ଶିଷ୍ୟ ଗୁରୁଦୀକ୍ଷା ଗୋପ୍ୟ ଶ୍ରବେଣ । ୭୭ ।
ପାହାନ୍ତ ପ୍ରହରେ ସ୍ନାନ କରଣ ।
ଦୀକ୍ଷା ଦେଲେ ଭକ୍ତି ହୁଅଇ ପୁଣ । ୭୮ ।
ସ୍ୱଫ ପାଞ୍ଚଘଡ଼ୀଠାରେଣ ପୁଣ ।
ଦୀକ୍ଷା ଦେଲେ ଭଲ ହୋଏ କାରଣ । ୭୯ ।
ସ୍ୱଫ ଏକଘଡ଼ୀଠାବରେ ପୁଣ ।
ଦୀକ୍ଷା ଦେଲେ ଭଲ ହୁଅଇ ଶୁଣ । ୮୦ ।
ଦିବା ପାଞ୍ଚଘଡ଼ୀଠାବରେ ଦେବ ।
ଶିଷ୍ୟର ଉତ୍ତମ ହୁଅଇ ଲାଭ । ୮୧ ।

ଚନ୍ଦନବୃକ୍ଷରେ ତୁଳସୀ ତଳେ ।
ନିଗମବନେ ବା ଓଁଶ୍ମଶାନେ । ୮୨ ।
ଶିଷ୍ୟଙ୍କୁ ମନ୍ତ୍ରରେ ଶୁଦ୍ଧ କରିଣ ।
ଶିଷ୍ୟମନ୍ତ୍ରରୁ ମନରେ ଗୁଣ । ୮୩ ।
ଅଚିଁ ଶୁଦ୍ଧ କୃଷ୍ଣ କୃଷ୍ଣ ବୋଲିଣ ।
ହ୍ରଂ ହ୍ରଂ ବୋଲି ମନ୍ତ୍ର ପଢ଼ିଣ । ୮୪ ।
ଶିଷ୍ୟଙ୍କୁ ଏମନ୍ତେ ସ୍ନାନ କରାଇ ।
ଶିଷ୍ୟ ଯେ ସ୍ନାନର ଫଳ ଲଭଇ । ୮୫ ।
ଗୁରୁଙ୍କ ମନ୍ତ୍ର କରିଣ ଲକ୍ଷ୍ୟେ ।
ଅଚିଁ କୃଷ୍ଣ କୃଷ୍ଣ ହର ହର ଯେ । ୮୬ ।
ଅଶ୍ୱିନ ଦେଲେ ଏମନ୍ତେଣ ସ୍ନାନ ।
ଗୁରୁଶିଷ୍ୟ ଦୁହେଁ କର ଭଜନ । ୮୭ ।
କାର୍ତ୍ତିକମାସରେ ଦେଲେଣ ପୁଣ ।
ଶିଷ୍ୟ ମନ୍ତ୍ର ମନେ ସୁମରେ ପୁଣ । ୮୮ ।
ଅଚିଁ କୃଷ୍ଣ କୃଷ୍ଣ ହରଈଁ କହୁ ।
କ୍ରରଉଁ ପାଶ ଅଉଁ ନମ ହୋଇ । ୮୯ ।
ଗୁରୁମନ୍ତ୍ର ସୁମରିଣ ଯେ ତବେ ।
ଓଁ ପୁରୁଷୋତ୍ତମ ନମ କର ନଭ୍ୟୋ । ୯୦ ।
ଗୁରୁଙ୍କ ରାଧା ଅଙ୍ଗେଣ ଧ୍ୟାଇ ।
ଶିଷ୍ୟ ଚନ୍ଦ୍ରାବଳୀ ଅଙ୍ଗ ସେବଇ । ୯୧ ।
କୃଷ୍ଣ ଅଙ୍ଗେ ମନ ନେଇ ଯୋଗାଇବ ।
ଚନ୍ଦ୍ରାମଣିସ୍ଥଳେ ଧ୍ୟାନ କରିବ । ୯୨ ।

---

୯୦—୨ ଓଁ ପୁରୁଷୋତ୍ତମ କରଣ ନଭ୍ୟୋ (ଚ),
ଅଉଁ ପୁରୁଷୋତ୍ତମ ନମ କର ନଭ୍ୟୋ । (ଝ)।

ସେ ଅଷ୍ଟ ଦଳର କେଶର ପରେ ।
ରାଧାକୃଷ୍ଣ ବସେ ପ୍ରେମସ୍ୱବରେ । ୯୩ ।
ଏକକଟୀ ବେଢ଼ ପାଦ ଅଛଇ ।
ପାଦେ ଶ୍ୟାମ ପାଦେ ଗଉର ହୋଇ । ୯୪ ।
ଭୁଜେ ଗଉର ସେ ଭୁଜେ ଶ୍ୟାମଳ ।
ଲପନ ଗଉର କାନନ୍ଦୀ ଜଳ । ୯୫ ।
ଏମନ୍ତେଣ ଲୀଳା କରଣ ଚନ୍ଦ୍ରି ।
ଭଗତଜନ ତା ଦର୍ଶନେ ପାଇ । ୯୬ ।
ଅଧେ ପ୍ରକୃତି ଅଧେ ଅଟେ ପୁରୁଷ ।
ଶ୍ରୀବୀଜ ସୁମର କାଳନ୍ତି ଘୋଷ । ୯୭ ।
ସୁନାମ ଅବୀଜ ଏକତ୍ର କର ।
ପୁରୁଷ ଅଙ୍ଗକୁ ଧ୍ୟାନ ସେ କର । ୯୮ ।
ଗୁରୁ ରାଧା ବୀଜ କର ଏକତ୍ର ।
ପ୍ରକୃତି ପୁରୁଷ ସେ ଜୀବରେ ଚନ୍ଦ୍ର । ୯୯ ।
ଜୀବ ପରମରେ ଜବି ଭଜନ ।
ଜ୍ୟୋତ ସମାଧିରେ କରଣ ଧ୍ୟାନ । ୧୦୦ ।
ଅଶେଷଜନ୍ମର ଦୁରିତ ଯାଇ ।
ଏ ଭେଦ ଜାଣିଲେ ଶିଷ୍ୟ ବୋଲଇ । ୧୦୧ ।
ଏ ଭେଦ ପୁଣ ସେ ଶିଷ୍ୟ ନ ଜାଣେ ।
ଶିଷ୍ୟ ଗୁରୁ ଦୁହେଁ ଭ୍ରମେ ଏ ବଣେ । ୧୦୨ ।
ବନସ୍ତେ ଭ୍ରମିଣ ନ ପାଏ ପଥ ।
ଅମନ୍ତ୍ରା ମାନ୍ତ୍ରଣ କେଉଁଣ ଜାତ । ୧୦୩ ।
ଜନ୍ମ ଅକାରଣେ ଏମନ୍ତ ଯାଏ ।
ଅନେକ ଜନ୍ମେଣ ଭକ୍ତି ଉଦୟେ । ୧୦୪ ।

---

୯୮—୧ ସୁମନ ଅବୀଜ (କ)।

ସମାଧି ଅଛଇ ଭଗତ ମୂଳ ।
ଅଚ୍ୟୁତର ସେବା ନିକୁଣ୍ଠସ୍ଥଳ । ୧୦୫ ।

ଜମ୍ବୁଗ୍ରାମଦେଶେ ରାମର ହିତ ।
ଉଷରବାସିନାଳାରେ ଥିତ । ୧୦୬ ।

ପୂର୍ବଜନ୍ମଫଳେ ରାମକୁ ମୁହିଁ ।
ଏ ଦୀକ୍ଷା କହିଲି ସେନେହ ବହି । ୧୦୭ ।

ରାମ କହିଲେ ଯେ ରୁମ୍ଣକ୍ତ ପୁଣ ।
ଅନନ୍ତ ମୁକୁନ୍ଦ ଧନ୍ୟ ଶ୍ରବଣ । ୧୦୮ ।

ଭଗତ ଶିଷ୍ୟକୁ ଏ ଦୀକ୍ଷା ଦେବ ।
ନିର୍ମଳ ଶିଷ୍ୟର ମନ ବୁଝିବ । ୧୦୯ ।

ସେ ଶିଷ୍ୟ ହୃଦରେ ଏ ଦୀକ୍ଷା ରହେ ।
ଛଦ୍ମ ଶିଷ୍ୟ ଯେ ଏହା ନ ପାଏ । ୧୧୦ ।
ଛଳନେ ଭଗତ ଚରଣ ସୁତ ।
ସୁଦାମ ସଖା ମୁଁ ଦାସ ଅଚ୍ୟୁତ । ୧୧୧ ।
ଏ ଗୀତା ଗୁପତ କଲେ ବର୍ଣ୍ଣିତ ।
ଫେଡ଼ିଲେ ଝଟନ୍ତି ପଡ଼ଇ ସତ । ୧୧୨ ।

ଉତ୍ତମ ଶିଷ୍ୟକୁ ଏ ପାଠ କହ ।
ମୂଢ଼ାନ୍ତ ଶିଷ୍ୟ ଯେ ବୁଝିବ କାହିଁ । ୧୧୩ ।

ମୂଢ଼ାନ୍ତ ଦାମ୍ଭିକ କପଟୀଜନେ ।
ମିଥ୍ୟା ପରବାଦ ଯେ ଚଳେ ମନେ । ୧୧୪ ।

ସେ ଜନ ଘଟେ ଏ ପ୍ରବେଶ ନୋହି ।
କହିଲେ ଏଣୁଟି ଅପ୍ରାଧ ହୋଇ । ୧୧୫ ।

ଶରଧା କରି ଯେ ବୁଝି ଯେଜବ ।
ହରଷେ ସେ ଜନ ଆଗେ ଭଣିବ । ୧୧୬ ।

ଏ ପାଠ ଶରଧା ରସିକ ହୃଦେ ।
ପାମର ଅଚ୍ୟୁତ ଲେଖିଲ ଗୀତେ । ୧୧୭ ।

ଇତି ଶ୍ରୀବ୍ରହ୍ମଭକ୍ତିଗୀତାକଥନେ ନାମ ଊନଚତ୍ୱାରିଂଶତ ଗ୍ରନ୍ଥ ।



## ଚତୁଶ୍ଚତ୍ୱାରିଂଶତ୍ ଛାନ୍ଦ

କରୁଣା କରିବା ସୁଦୟା ଚିତ୍ତେଣ ।
ହରେକୃଷ୍ଣ ମହାମନ୍ତ୍ର ଶୁଦ୍ଧ ପରମାଣ । ୧ ।
କେବଳ ଅକ୍ଷର ମାତ୍ର ଜେ ଅଷ୍ଟ ପୁରୁଷ ।
ବୁଝାଇ କହିବା ଗୁରୁ ଫିଟିବ ସନ୍ଦେଶ । ୨
ସତ୍ୟ ପରତତ୍ତ୍ୟ ତୁମେ ଦୁଇ ଦାସ ଶୁଣ ।
ଅନନ୍ତ ମୁକୁନ୍ଦ ତୁମ୍ଭେ ଅଟ ହେ ସୁଜାଣ । ୩ ।
ପରିକୃତ ଭାଷା ଗୀତ କରିଣ ଯେ କହୁ ।
ଗୋପାଳ ସ୍ୱତେ ହେ ତୁହିଁ ଏହୁ ଗୀତ ଗାଇ । ୪ ।
ଚନ୍ଦନ କୋଠା ଧରିବ ସ୍ୱର ଅଷ୍ଟ କରି ।
ଭୂମି ଖଣ୍ଡେ ଲିପିଣ ଯେ ମନ୍ତ୍ରକୁ ସୁମରି । ୫ ।
ହରେକୃଷ୍ଣ ମହାମନ୍ତ୍ର ବତିଶ ଲେଖିଣ ।
ନାନା ଉପହାର ଭୋଗ ଦେବ ସେଠାରେଣ । ୬ ।
ବସ୍ତ୍ର ପୂଜା ଦେଇଣ ସେ ଶିଷ୍ୟକୁ କହିବ ।
ଶିଷ୍ୟର ସଂଶୟ ଦୋଷ ମନରୁ ଛାଡ଼ିବ । ୭ ।
ତତ୍ତ୍ୱେ ବୁଝାଇଲେ ଶିଷ୍ୟ ମନ ହୋଏ ସ୍ଥିର ।
ଜଡ଼ମତ ଭାଙ୍ଗିଲ ଯେ ଶିଷ୍ୟ ହୃଦୟର । ୮ ।
ତତ୍ତ୍ୱଭେଦ କହିବା ନେ ମନ୍ତ୍ରେ ହେତୁକର ।
ଏମନ୍ତ ହୋଇଣ ଗୁରୁଦୀକ୍ଷାର ବିସ୍ତର । ୯ ।
ହରେ ଯେ ଓଁକାର କୃଷ୍ଣ ବିନ୍ଦୁ ବୋଲି ପୁଣ ।
ଅର୍ଦ୍ଧାଙ୍ଗେ ମନ୍ତ୍ର ରାମକୁ କର ସୁମରଣ । ୧୦ ।

---

୧୦—୨ ମନ୍ତ୍ରରାଜକୁ (ଖ);

ଉତ୍ତମ ଦିନରେ ଏହୁ ସମ୍ବନ୍ଧ ପୁଣି ।
ଶିଷ୍ୟହୃଦେ ଭଗତି ଅଙ୍କୁର ହୋଏ ପୁଣ । ୧୧ ।
ମନ୍ଦଦିନେ କହିଲେ ଭକ୍ତି ନାହିଁ ହୋଇ ।
ଶିଷ୍ୟ ମୂଢ଼ମତି ପୁଣ ହୃଦୁଁ ନ ଛାଡ଼ଇ । ୧୨ ।
ମୁକୁନ୍ଦ ଅନନ୍ତ ଶିରେ କରଦେଇ ହସ୍ତ ।
ଏଥିରେ ସଂଶୟ ଗୁରୁ ଫେଡ଼ିଣ କହିବା । ୧୩ ।
ଶୁଣ ଅହେ ରାମସୁତ ମୁକୁନ୍ଦ ଅନନ୍ତ ।
ଗୁରୁ ଉପଦେଶ ବିଧି ପରମ ଗୁପତ । ୧୪ ।
ବିଶ୍ୱାସ ଭକତ ଶିଷ୍ୟ ହୋଇଥିଲେ ସେ ପାଇ ।
ବିଶ୍ୱାସ ଭକ୍ତ ନୋହିଲେ ଭ୍ରମି ମରୁଥାଇ । ୧୫ ।
ଗୁରୁ ଏଣୁକରି ସେ ଉତ୍ତମ ଦିନ ଚିହ୍ନିଣ ।
ଶିଷ୍ୟଙ୍କୁ ଦିଅନ୍ତି ହେତୁ ସୁଘଡ଼ି ବୁଝିଣ । ୧୬ ।
ପୂର୍ଣ୍ଣିମୀ ଦିନରେ ଦେଲେ ସର୍ବସିଦ୍ଧି ହୋଇ ।
ପ୍ରତିପେ ଉତ୍ତମ ତେଜ ବୃଦ୍ଧି ପ୍ରକାଶଇ । ୧୭ ।
ଦ୍ୱିତୀୟାରେ ଉତ୍ତମ ସେ ସିଦ୍ଧି ହୋଏ ଫଳ ।
ତୃତୀୟାରେ ଆନନ୍ଦ ସେ ହୁଅଇ ମଙ୍ଗଳ । ୧୮ ।
ଚତୁର୍ଥୀଦିନରେ ଦେଲେ ବଶ ସେ ହୁଅଇ ।
ପଞ୍ଚମୀଦିନରେ ହେଲେ ଧନବନ୍ତ ହୋଇ । ୧୯ ।
ଷଷ୍ଠୀ ସପ୍ତମୀରେ ଉତ୍ତମ ହୋଏ ପୁଣ ।
ଅଷ୍ଟମୀରେ ନିଷେଧ ନବମୀ ଭଲ ଶୁଣ । ୨୦ ।
ଦଶମୀତିଥିରେ ସେ ଦାରିଦ୍ର୍ୟ ଯୋଗ ହୋଇ ।
ଏକାଦଶୀଦିନରେ ସୁଜ୍ଞାନ ଭକ୍ତି ପାଇ । ୨୧ ।
ଦ୍ୱାଦଶୀଦିନରେ ଦେଲେ ମୃତ୍ୟୁ ହୋଏ ବାଜ ।
ପୁଣ ଦାରା ଧନକ୍ଷୟେ ତ୍ରୟୋଦଶୀ ବୁଝ । ୨୨ ।
ବଳସିଦ୍ଧି ହୁଅଇ ଚତୁର୍ଦ୍ଦଶୀ ଦିନେ ।
କଳହଯୋଗ ପ୍ରାପତ ଅମାବସ୍ୟାରେ ଦେନେ । ୨୩ ।

ଏମନ୍ତ ହୋଇଣ ତଥ୍ୟମାନଙ୍କର ପୁଣ ।
ଗୁରୁଦୀକ୍ଷା ଭଗତ ହେ ଗୋପସୁତ ଶୁଣ । ୧୪ ।
ପୂର୍ବେ ଯେ ଶ୍ରୀକୃଷ୍ଣ ଯାହା ନାରଦେ କହିଲେ ।
ତୁମ୍ଭେତ ଶୁଣିଲ ପୁଣ ପୂର୍ବ ସ୍ୱର୍ଗ୍ୟଫଲେ । ୧୫ ।
ରବିବାରେ ଦୀକ୍ଷା ଦେଲେ ଦୁଖଯୋଗ ହୋଇ ।
ସୋମବାରେ ସୁଖଯୋଗ ପରାପତ ପାଇ । ୧୬ ।
ମଙ୍ଗଳବାରରେ ସର୍ବସିଦ୍ଧ ହୋଏ ଯୋଗ ।
ବୁଧବାରେ ବିଦ୍ୟାଭକ୍ତ ଲଭଇ ସଂଯୋଗ । ୧୭ ।
ଗୁରୁବାରେ ଦପିତ ସେ ତେଜବଳ ହୋଇ ।
ସର୍ବଜନ ବଶ୍ୟ ଶୁକ୍ରଦିନରେ ଲଭଇ । ୧୮ ।
ଶନିବାରେ ପୁତ୍ର ଧନ କ୍ଷୟ ହାନି ହୋଏ ।
ଏଣୁକରି ଗୁରୁ ସର୍ବଠାରୁ ପୁଣ୍ୟମୟେ । ୧୯ ।
ଗୁରୁ କୃଷ୍ଣ ବଇଷ୍ଣବ ତିନ ଅଙ୍ଗ ଏକ ।
ସୁମରିଲେ ଖଣ୍ଡନ ଯେ ହୁଅଇ ପାତକ । ୨୦ ।
ଚଇତ୍ରମାସରେ ଦେଲେ ଅନ୍ଧ ଯେ ଲୋଚନ ।
ବୈଶାଖମାସରେ ଦେଲେ ପାଇ ଭକ୍ତି ସ୍ଥାନ । ୨୧ ।
ଜ୍ୟେଷ୍ଠମାସେ ଦୀକ୍ଷାଦେଲେ ମରଣ ଲଭଇ ।
ଆଷାଢ଼ମାସରେ ଦେଲେ ବନ୍ଧୁନାଶ ଯାଇ । ୨୨ ।
ଶ୍ରାବଣମାସରେ ଦେଲେ ମହାସୁଖ ପାଏ ।
ଭାଦ୍ରବ ଆଶ୍ୱିନେ ରତ୍ନ ପ୍ରାପ୍ତ ହୁଅଏ । ୨୩ ।
କାର୍ତ୍ତିକରେ ମହାଲକ୍ଷ୍ମୀ ପରାପତ ଯୋଗ ।
ମାର୍ଗଶିରେ ଧନବୃଦ୍ଧି ହୁଅଇ ସଯୋଗ । ୨୪ ।
ପୁଷ୍ପେଣ ମୁକତିଯୋଗ ପରାପତ ହୋଏ ।
ମାଘେଣ ସମ୍ପତ୍ତିଯୋଗ ହୁଅଇ ଜଡବସ୍ତୁ । ୨୫ ।
ସର୍ବ କର୍ମଫଳ ଯେ ଫଗୁଣମାସେ ହୋଇ ।
ଦ୍ୱାଦଶମାସର ବିଧି ଏମନ୍ତ ଅଟଇ । ୨୬ ।

ଶିଷ୍ୟରେ ଏମନ୍ତ ଯୋଗ ଜାଣିଣ କହିବ ।
ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ସ୍ତବ । ୩୭ ।
ହରେ ହରେ ବୋଲିଣ ଯେ ବକ୍ଷ୍ୟତ ତ୍ରୁଟିବ ।
ଛଡ଼ାକ୍ଷର ମନ୍ତ୍ରବଧ୍ୟ ଏମନ୍ତ ଯେ ସ୍ତବ । ୩୮ ।
ହରେରାମ ହରେରାମ ବକ୍ଷ୍ୟଣ କର ।
ରାମ ରାମ ହରେ ହରେ ବଚନ ସୁମର । ୩୯ ।
ଷୋଳଗୋଟି ଅକ୍ଷର ଯେ ଅଣ୍ଡିର ଅଟଇ ।
ବେଦଅଠ ଏଥିରେ ଯେ ପ୍ରି ସ୍ଥଅଙ୍କ ହୋଇ ୪୦ ।
ହକାର ଅକ୍ଷର ଯେ ବିମଳା ସଖୀ କହ ।
ଶ୍ରୀଦାମ ସଖା ରେକାର ଅକ୍ଷର ଅଟଇ । ୪୧ ।
କୃକାରକୁ ଶାରଦା ଯେ ସଖୀ ବୋଲି ଜାଣ ।
ସୁଦାମ ସଖା ଅଟନ୍ତି ଷ୍ଣକାର ଯେ ପୁଣ । ୪୨ ।
ଷ୍ଣକାରକୁ ମେଧା ସଖୀ ବୋଲିକରି କହ ।
ହେ ଯେ ଅକ୍ଷର ବସୁ ଦାମ ସଖା ହୋଇ । ୪୩ ।
କୃକାରକୁ ଲଳିତା ଯେ ସଖୀ ବୋଲି ଜାଣ ।
ମହାବଳ ସଖା ଏହୁ ଷଣ ଅଟେ ପୁଣ । ୪୪ ।
କୃକାରକୁ ବୃନ୍ଦ ସଖୀ ବୋଲିକରି କହ ।
ସୁବାହୁ ସଖା ବୋଲିଣ ଷଣ ଯେ ଅଟଇ । ୪୫ ।
କୃକାର ଭୃଙ୍ଗଳା ସଖୀ ବୋଲି କରି ଜାଣ ।
ଷଣ ଅକ୍ଷର ପାର୍ଥ ସଖା ଅଟନ୍ତି ଯେ ପୁଣି । ୪୬ ।
ହକ୍ଷର ହଂସିନୀ ଯେ ସଖୀ ବୋଲି କହ ।
ଦେବସଖା ବୋଲି ରେ ଯେ ଅକ୍ଷର ଅଟଇ । ୪୭ ।

---

୪୩—୨ ରେ ଭାବ ଅକ୍ଷର ଯେ ସୁଦାମ ହୋଇ (ଖ);
୪୪—୨ ମନ ଅଙ୍ଗେ (ଖ); ମନ ଅଟଇ (କ);
୪୫—୨ ମନ ସେ (କ, ଖ); ୪୭—୨ ମନଷର (ଖ, ଗ);

ହ ଯେ ଅକ୍ଷର ବୋଲି ନାରାୟଣ ସଖୀ ।
ରେକାର ସୁବଳ ସଖା ଏଣୁକରି ଲେଖି । ୪୮ ।
ହକାରକୁ କେଶୀସଖୀ ବୋଲିକରି ଜାଣ ।
ଅଚ୍ୟୁ ସଖା ବୋଲିଣ ରେକାରକୁ ଗୁଣ । ୪୯ ।
କ୍ର ଯେ ଅକ୍ଷର ପଦ୍ମସଖା ବୋଲି କହୁ ।
ଶ୍ରୀବତ୍ସ ସଖା ଯେ ମ ଅକ୍ଷର ଅଟଇ । ୫୦ ।
ହକାରକୁ ରମ୍ଭାସଖୀ ବୋଲି କରି ଜାଣ ।
ଅର୍ଜୁନ ସଖା ବୋଲିଣ ରେକାରକୁ ଗୁଣ । ୫୧ ।
ସୁଶୀଳା ସଖୀ ଯେ ରାଅ ଅକ୍ଷର ଅଟଇ ।
ମ ଯେ ଅକ୍ଷର ପ୍ରିୟ ସଖା ବୋଲି କହୁ । ୫୨ ।
ବାଣ୍ଡିମା ସଖୀ ବୋଲିଣ ରାଅକୁ ବିସ୍ତର ।
ଲବଙ୍ଗ ସଖା ବୋଲିଣ ମଅଁକୁ ସୁମର । ୫୩ ।
ରଙ୍ଗିଣୀ ସଖୀ ବୋଲିଣ ରାଅ ଯେ ଅଟଇ ।
ମହାବାହୁ ସଖା ବୋଲି ନାମ ଅଛୁ କହୁ । ୫୪ ।
ହକାରକୁ ପ୍ରିୟାସଖୀ ବୋଲିକରି ଜାଣ ।
ଶ୍ୟାମ ସଖା ବୋଲିକରି ରେକାରକୁ ପୁଣ । ୫୫ ।
ସ୍ୱଚ୍ଛ ସଖୀ ବୋଲିଣ ହକାରକୁ କହୁ ।
କୃଷ୍ଣସଖା ବୋଲିଣ ଯେ ରେକାର ଅଟଇ । ୫୬ ।
ଏମନ୍ତେ ବତିଶାକ୍ଷର ହରେକୃଷ୍ଣ ମନ୍ତ୍ର ।
ସ୍ଥିଷ୍ଟ୍ୟର ହୋଇବ ହେରୁ ଯନ୍ତ୍ର ମନ୍ତ୍ର ତନ୍ତ୍ର । ୫୭ ।
ଚଉଷଠି କୋଠା ଗୋଟି ଶଲଖି ଲେଖିବ ।
ଆଠଗୋଟି ଅକ୍ଷର ଯେ ପ୍ରଥମେ ଲେଖିବ । ୫୮ ।
ସଖୀସଖା ଯୁଗଳ ଯେ ଆଠ ବସଇବ ।
ପୁଣ ଆଠଧଣେ ଯେ ମନ୍ତ୍ରକୁ ବେଢ଼ିବ । ୫୯ ।

---

୫୯—୨ ବେଷ୍ଟିବ (କ), ୬୩—୨ ରଚିତ ଯେ କୁଣ୍ଡଳ ହଂସୀ (ଖ);

ପୁଣ ସଖୀସଖା ତହିଁ ପାଶରେ ବସାଇ ।
ପୁଣ ଆଠ ଅକ୍ଷର ଯେ ତହିଁ ତଳେ ଥୋଇ । ୬୦ ।
ପୁଣ ସଖୀ ସଖା ଆଠ ବସାଇବ ତଳ ।
ପୁଣ ଆଠ ଅକ୍ଷର ଯେ ଲେଖି ଭୂମିତଳ । ୬୧ ।
ପୁଣ ସେହୁ ସଖୀସଖା ଅଠ ବସାଇବ ।
ଚଉଷଠି ଆବରୁଣି ଲିଖା ଭକ୍ତ ହେବ । ୬୨ ।
କମଳା ସାରଦା ମେଧା ଲଳିତା ଯେ କହୁ ।
ଗୁରୁ ଯେ କୁନ୍ତଳା ହଂସୀ ନାଗପୁଣୀ କହୁ । ୬୩ ।
କେଶୀ ପଦ୍ମାଶୀଳାବନ୍ତୀ ରଙ୍ଗଣୀ ଯେ ପୁଣ ।
ପ୍ରିୟାସଖୀ ଶଙ୍କସ୍ତ ଯେ ସଖୀ ବୋଲି ଗଣ । ୬୪ ।
ଶ୍ରୀଦାମ ସୁଦାମ ବସୁଦାମ ମହାବଳ ।
ସୁବାହୁ ପାର୍ଥ ଦେବ ଯେ ଆବର ସୁବଳ । ୬୫ ।
ଶ୍ରୀବତ୍ସ ଅର୍ଜ୍ଜୁନ ପ୍ରିୟ ଲବଙ୍ଗ ଯେ କନ୍ଦୁ ।
ମହାବାହୁ ରାମ କୃଷ୍ଣସଖା ସର୍ବଧାମ୍ନି । ୬୬ ।
ଏମନ୍ତ ଦର୍ଶନେ ଏତେ ଫଳଗନ୍ଧ ପାଇ ।
ହରେ କୃଷ୍ଣ ରାମ ଭଜ ମନ ଚଉ ଦେଇ । ୬୭ ।
ମୋହନକୁଞ୍ଜରେ ଛନ୍ତି ଲଳିତା ଯେ ପୁଣ ।
ତାମ୍ବୁଳ ସେବାକରନ୍ତି ଶ୍ରୀକୃଷ୍ଣଙ୍କୁ ପୁଣ । ୬୮ ।
ଲଳିତକୁଞ୍ଜରେ ଯେ ବିଶାଖା ଛନ୍ତି ରହି ।
କର୍ପୂରସେବା କରନ୍ତି ଶ୍ରୀକୃଷ୍ଣଙ୍କୁ ଧ୍ୟାୟି । ୬୯ ।
ଚମ୍ପାଦେବୀ ଚମ୍ପକୁଞ୍ଜରେ ଯେ ଛନ୍ତି ପୁଣ ।
ବସ୍ତ୍ରସେବା ବଧୁମାନ ସେବା ଯୋଗାଇଣ । ୭୦ ।
ବସନ୍ତକୁଞ୍ଜରେ ରଙ୍ଗଦେବୀ ଛନ୍ତି ରହି ।
ନୃତ୍ୟଗୀତ ସୁରମାନ ଆଳାପ ଯେ ଗାଇ । ୭୧ ।
ସୁଦେବୀ ସୁଖକୁଞ୍ଜରେ ଅଛନ୍ତି ବସିଣ ।
ଜଳସେବା କରନ୍ତି ଯେ ମନ ହରଷେଣ । ୭୨ ।

ତୁଙ୍ଗବିଦ୍ୟା ଶ୍ୟାମକୁଞ୍ଜେ ଅଛନ୍ତି ସେ ରହି ।
ଚଉଷଠି ତାନ ସେ ଛତିଶ ରାଗ ଗାଇ । ୭୩ ।
ଅରୁଣକୁଞ୍ଜରେ ଇନ୍ଦୁରେଖା ରହି ପୁଣ ।।
ବାଦ୍ୟବିଧି କରନ୍ତି ସେ ମନ ହରଷେଣ । ୭୪ ।
ଶ୍ରୀକୃଷ୍ଣସେବାରେ ସଖୀ ସଖା ଛନ୍ତି ରହି ।
ମୂଢ଼ ଶିଷ୍ୟ ବୁଝିଲେ ସେ ମୁକତି ଲଭଇ । ୭୫ ।
ହକାର ଶକତି ବସେ ନ ସିକାରେ ପୁଣ ।
ରେକାର ଶବଦ ରଖ ବଦନେ ଗୁଣିଣ । ୭୬ ।
କୃକାରକୁ ଚକ୍ଷୁଦ୍ୱାରେ ରଖ ମନଦେଇ ।
ଷ୍ଣକାରକୁ ତାଳୁକା ସେ ମଧ୍ୟରେ ବସାଇ । ୭୭ ।
ଚକ୍ଷୁମଧ୍ୟେ ରାକାର ସେ ବସାଇଣ ପୁଣ ।
ମକାର ତାଳୁକାମଧ୍ୟେ ଅଛଇ ବସିଣ । ୭୮ ।
ଓଁ ନମ କୃଷ୍ଣ ରାମହରେ ବୋଲି ପୁଣ ।
ହରେ କୃଷ୍ଣ ରାମ ତିନ ଅଭେଦଟି ଜାଣ । ୭୯ ।
ଗୋପୀ ଅଙ୍ଗ ହରେ ବୋଲି ରାମ ଅଙ୍ଗ ରାଧା ।
କୃଷ୍ଣନାମ କୃଷ୍ଣ ହୋଇ ଏକ ସେ ନିବିଧା । ୮୦ ।
ଗୋପୀ ଭଜୁଛନ୍ତି କୃଷ୍ଣ ରାଧାରାଧା ପୁଣ ।
କୃଷ୍ଣ ଭଜୁଛନ୍ତି ରାଧାରାଧା ଗୋପୀଗଣ । ୮୧ ।
ରାଧାଅଙ୍ଗୁ ଗୋପୀମାନେ ହୁଅନ୍ତି ଜନମ ।
କୃଷ୍ଣ ଅଙ୍ଗୁ ତାହାର ଗୋପାଳ ସେହି ନାମ । ୮୨ ।
ଏଣୁକରି ରାଧାକୃଷ୍ଣ ଅର୍ଦ୍ଧ ଅର୍ଦ୍ଧ ହୋଏ ।
ଗୁରୁ ଶିଷ୍ୟ ଅଙ୍ଗ ହୋଇ ଭଗତ ହୃଦଯେ । ୮୩ ।
ଏଣୁକରି ଗୁରୁଶିଷ୍ୟ ଅନୁବ୍ରତେ ପୁଣ ।
ମନ୍ତ୍ର ସବୁ ଶିଖୁଥିବ ଗୁରୁଙ୍କ ପାଶେଣ । ୮୪ ।

---

୭୫—୨ ଭକତି ଲଭଇ (ଙ);

ବିନାଗୁରୁ ନ କହିଲେ ସଂଶୟ ନ ହରେ ।
ବିଦ୍ୟା ଶାସ୍ତ୍ର ପଢ଼ି ପଢ଼ି ଫୁଟିକରି ମରେ । ୮୫ ।
ଗୁରୁସେବା କରି ଯେବେ ବିଦ୍ୟା ପୁଣ ଘୋଷେ ।
ପୁରିଲ କୁମ୍ଭର ପ୍ରାୟେ ହୃଦେ ପରକାଶେ । ୮୬ ।
ବୃକ୍ଷରୁ ବାହାର ପୁଷ୍ପ ପରାୟେ ଅଟଇ ।
ମଲେଣ ସେ ଜନର ବାସନା ନ ଲୁଚଇ । ୮୭ ।
ଦେହ ମୁଖ ଅଟଇଟି ବୃକ୍ଷର ପରାୟେ ।
କୃଷ୍ଣଭକ୍ତି ବାସନା ପରାୟେ ରହିଥାଏ । ୮୮ ।
ଭଗତ ବାସନା ଜନ୍ମ ସଂସାରେ ରହିବ ।
ଗୋପପୁତ୍ର ଅନୁବ୍ରତେ କୃଷ୍ଣ ଭଜିଥିବ । ୮୯ ।
ହରେ କୃଷ୍ଣ ରାମ ଭଜ ଯତନେ ହୃଦେଣ ।
ନାମରୂପ ସଂସାରରେ ନାହିଁ ବଡ଼ ପୁଣ । ୯୦ ।
କୃଷ୍ଣରାଧେ କୃଷ୍ଣରାଧେ ନିରନ୍ତରେ ଭଜ ।
ସକଳ କଲୁଷ ଯାଉ ପାଦପଦ୍ମେ ମଜ୍ଜ । ୯୧ ।
ତ୍ରିକୂଟସନ୍ଧିରେ ଲୟେ କରିଣ ହେ ମନ ।
ମନକୁ ଅମନେ ଦେଇ ପାଦପଦ୍ମେ ଧ୍ୟାନ । ୯୨ ।
ରାଧିକା ଏ ଆନକୁ କରୁଥିବ ଲୟେ ।
ସୁହୃଦେ କହିଲୁ ଏ ଚରିଣ ଗୋପ ପୋଏ । ୯୩ ।
ଏ ଭବଜଳକୁ ଏହୁ ନାବ ଅଟେ ପୁଣ ।
ଗୁରୁଭକ୍ତିଗୀତା ଗୁଣ ପାଇବ କାରଣ । ୯୪ ।
ପାମର ଅଚ୍ୟୁତ ଗୁରୁଚରଣକୁ ଧ୍ୟାୟି ।
ଶ୍ରୀଗୌରଙ୍ଗପରିବାର ଶୁଣ ମନ ଦେଇ । ୯୫ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଚତୁଷ୍ଟତ୍ରିଂଶ ଛାନ୍ଦ ।

## ପଞ୍ଚଚତ୍ୱାରିଂଶତ୍ ଛାନ୍ଦ

ରାମଚନ୍ଦ୍ର ଦାସର ଏକ ସ୍ତୁତି ଯେନ ।
ସଂଶୟ ଲାଗିଲା ତନ୍ତ୍ର ବୁଝିବାର ସ୍ଥାନ ।୧
ହରେକୃଷ୍ଣ ରାମର ଯେ ଚକ୍ରଭେଦ ଗୂଢ଼ ।
ବୁଝିଲେ ଶିଷ୍ୟର ଭେଦ ଘୁଞ୍ଚିବ ଯେ ମୂଢ଼ ।୨
ହକାର ପଦ୍ମକୁ ଧରି ରହିଅଛୁ ପୁଣ ।
ରେକାର ମୂର୍ଦ୍ଧ ଠାରେ ବସିଅଛି ଶୁଣ ।୩
କୃକାର ଭୂଲଟୋପଟରେ ବିହାର କରଇ ।
ଷ୍ଣକର ଧାମକୁ ଯେ ଧରିକରି ରହୁ ।୪ ।
ରାକାର ହୃଦକୁ ଧରି ଅଛଇଟି ପୁଣ ।
ମକାର ଅଥର୍ବ ସଙ୍ଗେ ମିଶି ଅଛୁ ଜାଣ ।୫ ।
ଏମନ୍ତ ହୋଇଣ ବେଦେ ମନ୍ତ୍ର ଅଛୁ ବନ୍ଧୁ ।
ଶୁଣ ସପ୍ତ ଶୂନ୍ୟ ଜାଣ ବୈଷ୍ଣବ ଜାଣଇ ।୬ ।
ବେଦରେ ଗାୟତ୍ରୀମନ୍ତ୍ର ଅଛଇ ରହିଣ ।
ପର ରକ ୯ମ ବଦ ବୀଜ ଅ.ଠ ପୁଣ ।୭ ।
ପର ବିଷ୍ଣୁ ଯଜୁ ସଙ୍ଗେ ଅଛନ୍ତି ମିଶିଣ । ।
ରଜ ବ୍ରହ୍ମ ଋକ ଯେନ ଲୀଳା କରେ ପୁଣ ।୮
ଶମ୍ଭୁ ତେଜ ମହେଶ ଯେ ସାମ ସଙ୍ଗେ ରହି ।
ଏହି ସବୁ ଦେବଗଣ ମନ୍ତ୍ରୁ ଘରେ ପାଇ ।୯ ।
ଅର୍ଦ୍ଧମାତ୍ରା ବ୍ରହ୍ମ ବୋଲି ଧ୍ୟାନକର ତହିଁ ।
ଓଁ କାର ଯେ ଗୋପୀଙ୍କ ବୋଲିକରି କହୁ ।୧୦

---

୪—୨ ନ କାର (କ, ଖ);

ବନ୍ଦ ଅଟେ ଶ୍ରୀକୃଷ୍ଣ ଯେ ସନ୍ଥଜନ ଶୁଣ ।
ଏମନ୍ତ ଯେ ବେଢିଛନ୍ତି ସଖୀପ୍ରଧାଗଣ ।୧୧।
ରୂଢ ସଜୁ ଏ କେନ ଯେ ଏତ କଣ ଜାଣ ।
ଏଥଙ୍କ ସ୍ଥାନ ନୁହନ୍ତି ବେଗଳ ଯେ ପୁଣ ।୧୨।
ସ୍ଵର ଯେ ଦୂରୁଣେ ଆଠ ବୋଲିକଣ କହୁ ।
ଅଷ୍ଟାକ୍ଷର ବୀଜ ଯେ ଗାୟତ୍ରୀମନ୍ତ୍ର କହୁ ।୧୩।
ପୂର୍ବ ଯେ ପଶ୍ଚିମ ଦିଗ ଉତ୍ତର ଦକ୍ଷିଣ ।
ଅଗ୍ନି ଯେ ବାୟବ୍ୟ ବୋଲି ନୈଋତ ଐଶାନ୍ୟ ।୧୪।
ଏ ଅଷ୍ଟଦଳରେ ଅଷ୍ଟ ଅକ୍ଷର ବସଇ ।
ଏ ଅଷ୍ଟ ବନ୍ଧିଲେ ଯେ ଗୋଲକ ସ୍ଥାନ ପାଇ ।୧୫।
ଯ ବୋଲି ଯାହା କହୁ ସେ ଅଟେ ଲଳିତା ।
ପୂର୍ବଦଳ ଜଗଇ ସେ ଅଛନ୍ତି ବନିତା ।୧୬।
ର ବୋଲି ଯାହା କହୁ ବିଧୁମୁଖୀ ଜାଣ ।
ଦକ୍ଷିଣଦଳ ଜଗିଣ ରହିଛନ୍ତି ପୁଣ ।୧୭।
ର ବୋଲି ଯାହା କହୁ ଐଶାନ୍ୟ ଅଟଇ ।
ରଙ୍ଗିଣୀ ବୋଲିଣ ତାଙ୍କ ନାମ ପୁଣ କହୁ ।୧୮।
ଜ ବୋଲି ହରିପ୍ରିୟା ନାମ ଅଟେ ପୁଣ ।
ଅଗ୍ନି ଯେ କୋଣରେ ପୁଣ ଅଛନ୍ତି ରହିଣ ।୧୯।
ଶ ବୋଲି ଶଶିରେଖା ବସୁରଣ କର ।
ପଶ୍ଚିମଦଳରେ ତାଙ୍କ ଅଟଇ ବିହାର ।୨୦।
ଆଉର ଷ ଯେ ଶ୍ୟାମା ବୋଲି କରି କହୁ ।
ବାୟବ୍ୟଦଳରେ ପୁଣ ଅଛନ୍ତି ଯେ ରହୁ ।୨୧।
ବ ବୃନ୍ଦାବତୀ ଯେ ଉତ୍ତରେ ଛନ୍ତି ପୁଣ ।
ଦ ଦମୟନ୍ତୀ ଚନ୍ଦ୍ରେ ନୈଋତ ଦଳେଣ ।୨୨।
ଏ ଅଷ୍ଟକୁ ବେଢିଛନ୍ତି ଚବିଶ ଯେ ପୁଣ ।
ଚବିଶ ଅକ୍ଷର ନାମ ବୁଝି କରି ପୁଣ ।୨୩।

ଅକ୍ଷର ଗୋଟିକେ ତ୍ରିଗୁଣ ଅଛନ୍ତି ଗୋଟିଏ ।
ହେତୁରୂପରୁ ବୁଝାଇଲେ ସେବା ଶିଷ୍ୟ ପାଏ । ୨୪ ।
ଉତ୍ସବାନୁବନ୍ଦଣୀପ୍ରୋଇଣେ ।ଦେବ କହୁ ।
ସ୍ୱା ଧ୍ୱମସ୍ତ ଧ୍ୱପ୍ରୋସ୍ୱନପ୍ରବେୈଦସ୍ୟାତ୍ତ ଏହୁ । ୨୫ ।
ଏ ଚରଣ ବନ୍ଦଲେ ପାଇବ ହେତୁ ପୁଣ ।
ଗୁରୁ ବୁଝାଇଲେ ଶିଷ୍ୟ ସଂଶୟ ହରଣ । ୨୬ ।
ଏ ନାଗ୍ରକ କେତ୍କି ଛନ୍ତି ଆବର ବନ୍ଧଣ ।
ଛନ୍ଦଣ ଯୁବଣ୍ଡ ନାନା ବେଶରେ ସୁବେଶ । ୨୭ ।
ମଳବନ୍ଧ ପବନନ୍ଧି ବୋଲିଣ ଯେ ନାମ ।
ମେରୁଭେଦ ରସ ଦନ୍ଧି ବୋଲିଣ ଉତ୍ତମ । ୨୮ ।
ଏହୁ ପ୍ରାପ୍ତେ ଅହ୍ଜନଣ କରୁଥିବ ଲୟେ ।
ଏଣୁ ତାର ସିଦ୍ଧବାଣୀ ହୋଇବ ଯେ କସ୍ତେ । ୨୯ ।
ଏମନ୍ତ ହୋଇଣ ଚଉଷଠି ଛନ୍ଦ ଗୋଇ ।
ବେଦ ମନ୍ତ୍ର ବୁଝି ବ୍ରହ୍ମା ପୂଜାକରେ ତହିଁ । ୩୦ ।
ଭୁର୍ଭୁବସ୍ୱ ମନ୍ତ୍ର କରଣ ଭଜନ ।
ଜନ ତପ ସତ୍ୟ ଆପଜ୍ୟୋତି ଲଗା ଧ୍ୟାନ । ୩୧ ।
ରସୋଽମୃତ ବ୍ରହ୍ମଗୁରୁ ଆନନ୍ଦ ଆବୋଧ ।
ଭୂବୋସ୍ୱରେଁ ଦଯାକର ଏମନ୍ତ ଧୁମର । ୩୨ ।
କାମନା କରିବ ସିଦ୍ଧ ନାମ ମନ୍ତ୍ର ଜପି ।
କାମନାଗାସ୍ୱତ୍ରୀ ଅହ୍ଜନଶି ମନେ ସ୍ଥାପି । ୩୩ ।
ଶ୍ରୀରାଧିକାଯୈ ବିଦ୍ମହେ ପୁଷ୍ପବାଣାୟରେ ।
ଧୀମହି ତନ୍ନୋରାଧା ପ୍ରଚୋଦୟ ତରେ । ୩୪ ।

---

୨୭—୧ ବନ୍ଧଲେ (କ),
୩୨—୧ ବ୍ରହ୍ମଭୁ ସୋଽହଂହଂସକୁ ଆବୋଧ (ଖ),
୩୨—୨ ଭୁର୍ଭୁବ ସ୍ୱରେଁ ଦର ଏମନ୍ତ ଯେ କର (ଖ),
୩୪—୧ ଶ୍ରୀସ୍ୱଂ ରାଧିକାସ୍ୱ (କ,ଖ)

ଏ କାମଗାୟତ୍ରୀ ଜପ କଲେ ଭକ୍ତି ପାଇ ।
କ୍ଲୀଂ ଅର୍ଦ୍ଧ ସୂକ୍ଷ୍ମ ସାଧୁ ବୈଷ୍ଣବ ଭଜଇ । ୩୫ ।
ହରେ କୃଷ୍ଣ ରାମ ସେ ଅଜପା ଆଠାକ୍ଷର ।
ଗାୟତ୍ରୀ ଚବିଶାକ୍ଷର ବୁଝିବ ବିଚାର । ୩୬ ।
ଛନ୍ଦବନ୍ଧ ବ୍ରହ୍ମା ସେ ଗାୟତ୍ରୀମନ୍ତ୍ର ଶୁଣ ।
କାମ ସେ ଗାୟତ୍ରୀ ମିଶି ଏ ଛନ୍ଦରେ ପୁଣ । ୩୭ ।
ଚନ୍ଦନ କାଠି ଧରଣ ମନ୍ତ୍ରକୁ ଲେଖିବ ।
ବନ୍ଦନ ପୂଜା ଦେଇଣ ଶିଷ୍ୟକୁ କହିବ । ୩୮ ।
ଗାୟତ୍ରୀଛନ୍ଦକୁ କର ବନ୍ଦଣ ବନ୍ଦଣ ।
ଶିଷ୍ୟର ହୃଦକୁ ଧନ୍ଦ ଫିଟିବ ସନ୍ଦେଶ । ୩୯ ।
ବ୍ରହ୍ମଗାୟତ୍ରୀ କ ସେ ପାଞ୍ଚସ୍ୱର ଧରି ।
ଛଅସ୍ୱର ଧଇଲେ ଟଳଣ ହେବ ସରି । ୪୦ ।
ଓଁ କାରକୁ ବସାଇଣ ମନ୍ତ୍ରକୁ ଧରିବ ।
ଶିଷ୍ୟ ସେ ଦର୍ଶନକରି ମନବୋଧ ହେବ । ୪୧ ।
ପାଞ୍ଚସ୍ୱର ସେ ଧରିବ ଗାୟତ୍ରୀକାମକୁ ।
ଚବଣ ହେବ ପଚଶ କ୍ଲୀଂ ନେଇଠାକୁ । ୪୨ ।
ଉତ୍ତମ ବାର ସେ ଘଡ଼ି ଯୋଗ ବୁଝିକରି ।
ଗୁରୁତ୍ୱ କରି ଉତ୍ତମଶିଷ୍ୟକୁ ବିଚାରି । ୪୩ ।
ରବିବାରେ ନିଷେଧ ଅଟଇ ଦୀକ୍ଷା ପୁଣ ।
ଶନିବାରେ ନ କରିବ ଶିଷ୍ୟଦୀକ୍ଷାଗଣ । ୪୪ ।
ସୋମବାର ଦିନ ବନ୍ଧି ମନେ ହେତୁକର ।
ଶିଷ୍ୟଦୀକ୍ଷା ହେତୁ ଗୋଟି ମନରେ ବିଚାର । ୪୫ ।
ପ୍ରଭାତୁ ପ୍ରହରେ ସୋମବାରରେ ନ ଦେବ ।
ପ୍ରହରେ ଯେ ଦେଲେ ଶିଷ୍ୟ ମୂଢ଼ମତି ହେବ । ୪୬ ।
ପ୍ରହରେକ ଉତ୍ତରେଣ ଅଷ୍ଟଘଡି ଭଲ ।
ତାହେ ସୁଖୀ ଶିଷ୍ୟ ପୁଣ ହୁଅଇ ଅମୂଲ୍ୟ । ୪୭ ।

ଦ୍ୱାଦଶଘଡ଼ି ଉପରୁ ପ୍ରହରେ ଯେ ମନ୍ଦ ।
ଏଥିରେଣ ଦୀକ୍ଷା ଦେଲେ ଶିଷ୍ୟ ଜଡ଼ ଅନ୍ଧ । ୪୮ ।
ସୋମବାରେ ସନ୍ଧ୍ୟାକାଳେ ପ୍ରହରେ ଉତ୍ତମ ।
ଶିଷ୍ୟ ପ୍ରେମଭକତରେ ହୁଅଇ ଉଦ୍ୟମ । ୪୯ ।
ପ୍ରହର ଉପରେ ଛଡ଼ ଘଡ଼ି ମନ୍ଦ ହୋଇ ।
ଏଯୋଗରେ ଦୀକ୍ଷାଦେଲେ ମୂଢ଼ ବୁଦ୍ଧି ହୋଇ ।୫୦।
ଦଶଘଡ଼ି ଉପରେ ଯେ ଛଡ଼ଘଡ଼ି ଭଲ ।
ଏକାଳେ ଦୀକ୍ଷା ଯେବଲେ ମନ ସମତୁଲ ।୫୧।
ସପ୍ତଦବା ସୋମବାରେ ଏମନ୍ତ ବୁଝିବ ।
ଏହା ନ ଜାଣିଲେ ଗୁରୁ ଜ୍ଞାନ ହୀନ ହେବ ।୫୨।
ମଙ୍ଗଳବାରଦବାରେ ପ୍ରଶସ୍ତେ ନିଷେଧ ।
ଏ ଯୋଗେଣ ଦୀକ୍ଷାଦେଲେ ଦରିଦ୍ର ଯେ ଅନ୍ଧ ।୫୩।
ବେନଘଡ଼ି ଉପରେଣ ଭଲ ଆଠ ଘଡ଼ି ।
ଗୁରୁପାଦୁଁ ଶିଷ୍ୟମନ ନ ଯାଇ ଯେ ଛୁଡ଼ି ।୫୪।
ଦଶଘଡ଼ି ଉପରେଣ ଛଡ଼ ମନ୍ଦ ହୋଇ ।
ଶିଷ୍ୟକର୍ଣ୍ଣେ ଦୀକ୍ଷାଦେଲେ ଦୁଃଖ ଯୋଗ ଥାଇ । ୫୫ ।
ମଙ୍ଗଳସନ୍ଧ୍ୟାରେ ପୁଣ ଅଟଇ ନିଷେଧ ।
ଦୀକ୍ଷାଦେଲେ ଗୁରୁଅଙ୍ଗେ ପଡ଼ଇ ଯେ ବାଧ । ୫୬ ।
ପ୍ରହର ଉପରେ ଆଠଘଡ଼ି ଭଲ ହୋଇ ।
ଦୀକ୍ଷା ଦେଲେ ଶିଷ୍ୟକର୍ଣ୍ଣେ ଗୁରୁ ସୁଖୀ ହୋଇ । ୫୭ ।
ଦ୍ୱାଦଶଘଡ଼ି ଉପରେ ପ୍ରହରେ ଯେ ମନ୍ଦ ।
ଏ ଯୋଗେଣ ଦୀକ୍ଷାଦେଲେ ଶିଷ୍ୟଅଙ୍ଗେ ବାଧ । ୫୮ ।
ମଙ୍ଗଳବାରର ବିଧି ଅଟଇ ଏମନ୍ତ ।
ଗୁରୁଶିଷ୍ୟକଥା ବଡ଼ ପରମାଦ ମତ । ୫୯ ।

---

୫୩—୨ ଦରିଦ୍ର ଯେ ଅନ୍ଧ (ଖ);

ବୁଧବାରେ ବେଳଘଡ଼ି ପ୍ରହରେ ଉତ୍ତମ ।
ଭଜନ ଦୃଢ଼ ନିର୍ମଳ ହୋଏ ତାର ମନ । ୬୦ ।
ବେଳଘଡ଼ି ଉତ୍ତରେଣ ଛଅଘଡ଼ି ନାହିଁ ।
ଏ ଯୋଗେଣ ଦୀକ୍ଷା ଦେଲେ ଜଡମତି ହୋଇ । ୬୧ ।
ଦିବସ ଅର୍ଦ୍ଧଠାବରୁ ଆଠ ଘଡ଼ି ଭଲ ।
ଏ ଯୋଗରେ ଦୀକ୍ଷାଦେଲେ ସେବା କରେ ତୁଲ । ୬୨ ।
ବୁଧବାରେ ସନ୍ଧେ ଛଅଘଡ଼ି ସେ ନ ଦେବ ।
ଏମନ୍ତ କାଳେଣ ଦେଲେ ଶିଷ୍ୟ ନ ସେବିବ । ୬୩ ।
ଛଅଘଡ଼ି ଉତ୍ତରେଣ ଆଠ ଭଲ ହୋଇ ।
ଏ ଯୋଗେଣ ଦୀକ୍ଷା ଦେଲେ ମନ ଦୃଢ଼ ହୋଇ । ୬୪ ।
ଚଉଦ ଘଡ଼ି ଉତ୍ତରୁ ବେଳଘଡ଼ି ମନ୍ଦ ।
ବୁଧବାର ଦିବାନିଶି ଏମନ୍ତ ସେ ଛନ୍ଦ । ୬୫ ।
ଗୁରୁବାର ଦିବସରେ ଛ ଘଡ଼ି ନିଷେଧ ।
ଛଅଘଡ଼ି ଉତ୍ତରେ ସେ ଛଅଘଡ଼ି ଶୁଦ୍ଧ । ୬୬ ।
ଦ୍ୱାଦଶଘଡ଼ି ଉତ୍ତରୁ ଚାରିଘଡ଼ି ନାହିଁ ।
ସନ୍ଧ୍ୟା ଚାରିଘଡ଼ି ପୁଣି ନିଷେଧ ଅଟଇ । ୬୭ ।
ସନ୍ଧ୍ୟା ଚାରି ଉତ୍ତରେଣ ଆଠଘଡ଼ି ଭଲ ।
ଶିଷ୍ୟ ଦୀକ୍ଷା ଘେନିଲେ ସେ ହୁଅଇ ଅମୂଲ୍ୟ ୬୮ ।
ଦ୍ୱାଦଶ ଉତ୍ତରୁ ଚାରିଘଡ଼ି ସେ ନ ଦେବ ।
ଏହୁକାଳେ ଦୀକ୍ଷା ଦେଲେ ଗୁରୁ ଦୁଃଖୀ ହେବ । ୬୯ ।
ଶୁକରବାର ପ୍ରଭାତୁ ଛଅ ପିଛ ଘଡ଼ି ।
ଦୀକ୍ଷା ଦେଲେ ଗୁରୁପାଦେ ଶିଷ୍ୟ ଥାଇ ଜଡ଼ି । ୭୦ ।
ଛଅ ଉତୁରିଲେ ଛଅ ଘଡ଼ି ମନ୍ଦ ହୋଇ ।
ଏ ଯୋଗେ ଦୀକ୍ଷା ଘେନିଲେ ଦରିଦ୍ର ଲଭଇ । ୭୧ ।
ଦ୍ୱାଦଶ ଉତ୍ତରୁ ଦଶଘଡ଼ି ଭଲ ହୋଇ ।
ଏ ଯୋଗେଣ ଦୀକ୍ଷା ଦେଲେ ଶିଷ୍ୟ ସୁଖୀ ପାଇ ।୭୨ ।

ଦଣ୍ଡଘଣ୍ଟ ହସ୍ତରେଣ ଛତ୍ରଘଣ୍ଟ ମନ୍ଦ ।
ଛତ୍ର ହତୁଥିଲେ ଘଣ୍ଟଘଣ୍ଟ ଶୁଦ୍ଧ ହେବ । ୭୩ ।
ବାର ଯୋଗମାନଙ୍କରେ ଏମନ୍ତ ଅଛଇ ।
ଏ ଭେଦ ନ ଜାଣି ଯେବେ ଶିଷ୍ୟ କରି ଯାଇ । ୭୪ ।
ଉତ୍ତମ୍ଭଣ ବଥାମାନ ନୁବୁଙ୍କ୍ଷ ଦୁଅଇ ।
ଶିଷ୍ୟବୃତ୍ତି ସ୍ୱଭାବତ ମୂଢ଼ମତ ସେହୁ । ୭୫ ।
ଅନେକପ୍ରକାରେ ଗୁରୁ ଶିଷ୍ୟଂକୁ କହିଲେ ।
ଶିଷ୍ୟର ଭଗବତମତି ହୁଅଇ ଯେ ଭଲେ । ୭୬ ।
ଗୁରୁଶିଷ୍ୟ ଅଭେଦଟି ବେଗଳ ନୁହଇ ।
ନୀରକ୍ଷୀର ପ୍ରାୟେ ଯେବେ ମନ ମିଶି ଥାଇ । ୭୭ ।
ଚରଣ ସ୍ପର୍ଶିବ ଗୁରୁ ସୁହୃଦ ମନେଣ ।
ଫଳପୁଷ୍ପ ଯେ ମିଳିବ ସୁଖେ ଦେବ ପୁଣ । ୭୮ ।
ପ୍ରଭାତେଣ ଗୁରୁରୂପ ସ୍ମରିବ ଚିତ୍ତେ ।
ଗୁରୁଙ୍କୁ ଯେ ଭଜିଥିବ ହୃଦୟେ ଭରତେ । ୭୯ ।
ଗୁରୁଙ୍କୁ ଭଜିଲେ ଯେ ଶ୍ରୀକୃଷ୍ଣ ଭକ୍ତି ପାଇ ।
ଗୁରୁ ନ ସେବିଲେ ଯେ ଭଗବତ୍ସ୍ୱାନ ହୋଇ । ୮୦ ।
ଅଗତ କି ଗତି ପିତା ଗୁରୁ ଅଟେ ପୁଣ ।
ହରିନାମ ଗୁରୁ ପୁଣ ଦଅନ୍ତି ଶ୍ରବଣ । ୮୧ ।
ହରିର ନାମକୁ ପୁଣି ତୁଲ୍ୟ ନୁହେଁ କିଛୁ ।
ଏଣୁକରି ମୂଳବୃକ୍ଷ ଗୁରୁଙ୍କୁ ଲେଖିଛୁ । ୮୨ ।
ସଂସାରେ ଯେତେକ ଦ୍ରବ୍ୟ ଅଛଇଟି ପୁଣ ।
ନାମକୁ ଯେ ସମତୁଲ ନୁହନ୍ତିଟି ଜାଣ । ୮୩ ।
ପୂର୍ବଜନ୍ମ ଭାଗ୍ୟଥିଲେ ଗୁରୁସେବା କଲି ।
ନାମ ହୃଦେ ଜପିଲେ ସଂସାରେ ହେବ ଭଲ । ୮୪ ।
ସ୍ତ୍ରୀ ସ୍ୱ ବା ପୁରୁଷ ନର ଜନ୍ମ ହେବ ମସ୍ତ ।
କୃଷ୍ଣ ସେ ଭଜିବ ସର୍ବବର୍ଣ୍ଣେ ଶ୍ରେଷ୍ଠ ହୋଇ । ୮୫ ।

ଶ୍ୱପଚ ହୋଇଣ ଯେବେ କୃଷ୍ଣ ଆଶ୍ରେ କରେ ।
ସେ ଜନଙ୍କୁ ଦେଖିଲେ ସକଳ ପାପ ହରେ । ୮୬ ।
ଶତେସସ୍ର, ଶାଳଗ୍ରାମ ଦେଖିଲାର ଫଳ ।
ବାରକୋଟି ବିପ୍ର ଦରଶନେ ଅଟେ ତୁଲ । ୮୭ ।
ଶତେ ଶମ୍ଭୁ ଦରଶନ ପୁଣ୍ୟଫଳ ପାଇ ।
ନାମ ଆଶ୍ରେ କଲା ପ୍ରାଣୀ ବର୍ଣ୍ଣଶ୍ରେଷ୍ଠ ହୋଇ । ୮୮ ।
ସକଳ ବର୍ଣ୍ଣରୁ ସେ ତ ହୁଅନ୍ତି ବାହାର ।
ଅଚ୍ୟୁତ ସେ ଜାତିଗୋତ୍ର ଅଟଇ ତାହାର । ୮୯ ।
ଶ୍ରୀକୃଷ୍ଣର ପାଦପଦ୍ମ ଅଟଇ ତା ଧନ ।
ସକଳ ଭରସା କରିଥାନ୍ତି ପାଦେ ଥାନ । ୯୦ ।
ବାଡ଼ୀବୃତ୍ତି ଆଶା ସେହୁ ଚରଣଙ୍କୁ କରି ।
ଦୁଃଖ ସୁଖ ଜାଣନ୍ତି ସେ ପାଦପଦ୍ମ ଧରି । ୯୧ ।
ଅଚ୍ୟୁତ ଗୋତ୍ରରେ ତୁମ୍ଭେ ପଶିଲ ଶରଣ ।
ଆଶ୍ରେ ଏକା କରିଥିବ ଶ୍ରୀରଙ୍ଗାଚରଣ । ୯୨ ।
ରାମଚନ୍ଦ୍ର ଦାସଙ୍କର ସଙ୍ଗ ଆଶ୍ରେ କର ।
ଦ୍ୱାଦଶ ଗୋପାଳ ତୁମ୍ଭେ ଅଟ ଶ୍ରେଷ୍ଠସାର । ୯୩ ।
ମୁକୁନ୍ଦ ଅନନ୍ତ ବତ୍ସ ସୁଦାମ ଶୁଣିଲ ।
ମନ୍ତ୍ର ଯନ୍ତ୍ର ବୁଝିବାର ମନ ହେଲୁ ଭଲ । ୯୪ ।
ସଦ୍‌ଗୁରୁ ଆଶ୍ରେ କଲ ମନ୍ତ୍ର ଯନ୍ତ୍ର ପାଇଁ ।
ସଦ୍‌ଗୁରୁ ନ ସେବିଲେ ହେଉ ହେବ କାହିଁ । ୯୫ ।
ଛଦ୍ୟାବନ୍ତ ସତ୍ୟଚନ୍ଦ୍ରସ୍ତେ ଦୟା କରେ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ହେଉ ସମାଧି ସୁମରେ । ୯୬ ।
ଅବାଞ୍ଛ ବୋଲିବା ହେତୁ ଛାୟା ଦରଶନ ।
ପଞ୍ଚାକ୍ଷର ଅଷ୍ଟାକ୍ଷର କରନ୍ତି ଭଜନ । ୯୭ ।
ଦଶାକ୍ଷର ଷୋଡ଼ଶ ଯେ ଛଡ଼ାକ୍ଷର ଜପି ।
କୃଷ୍ଣମନ୍ତ୍ର ଠାକୁରାଣୀମନ୍ତ୍ର ହୃଦେ ସ୍ଥାପି । ୯୮ ।

ଚଇତନ୍ୟମନ୍ତ୍ର କାମଗାୟତ୍ରୀ ଭଜନ ।
ପଞ୍ଚନାମ ହୃଦୟରେ କରନ୍ତି ସାଧନ ।୯୯।
ଅଙ୍ଗନ୍ୟାସ କରନ୍ୟାସ ଷଡ଼ାଙ୍ଗ ଜପତ ।
ମାତୃକା ଯେ ଭୂତଶୁଦ୍ଧି ହୃଦେ କର ଜପ ।୧୦୦।
ଗୀତା ଭାଗବତ କାବ୍ୟ ପୁରାଣେ ବଖାଣି ।
ଓଁକାର ଅକ୍ଷର ଭେଦ ପାରନ୍ତି ଯେ ଜାଣି ।୧୦୧।
ଜଳାକାଶଭେଦେ ପଶିଥାନ୍ତି ଯେଉଁ ଜନ ।
ଏତେ ଗୁଣ ଯେ ଜାଣନ୍ତି ସେହୁ ଭକ୍ତଜନ ।୧୦୨।
ଏ ଜନ ସଙ୍ଗରେ କ୍ଷଣେ ଦଣ୍ଡେ ଯେବେ ବସି ।
ପାତକମାନେ ଯେ ହୃଦୁଁ ପଳାବନ୍ତି ଖସି ।୧୦୩।
ପୂର୍ବଜନ୍ମ ଭାଗ୍ୟ ଥିଲେ ଏ ଗୁରୁ ମିଳଇ ।
ପାକ ଘଟ ବୋଲିକର ଏ ଜନଙ୍କୁ କହୁ ।୧୦୪।
ଏହା ଯେ ନ ସାଧେ ସେହୁ କଞ୍ଚାମାଟି ଘଟ ।
ଭବ ମାୟା ମୋହ ଭ୍ରମ କରନ୍ତି ମୁରଟ ।୧୦୫।
ମୋହମାୟାବଳରେ ମୁଁ ବୁଡ଼ି ହେଲି ବଣା ।
ଏ ଜନପାଦକୁ ଧ୍ୟାନ ଅଚ୍ୟୁତ ଭଜନା ।୧୦୬।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ପଞ୍ଚତତ୍ତ୍ୱାଂଶଭେଦ ଭ୍ରମ ।



## ଷଟ୍‌ଚତ୍ୱାରିଂଶତ୍ ଛାନ୍ଦ

ଶୁଣ ହେ ବାଳକ ବତ୍ସ କହୁବା ବଚନ ।
ମୁକୁନ୍ଦ ଅନନ୍ତ ଧ୍ୟାସ ସୁଦାମ ହେ ଘେନ ।୧।
ପ୍ରେମମନ୍ତ୍ର ଭଜିଲେ ଶ୍ରୀକୃଷ୍ଣଭକ୍ତି ପାଇ ।
ଚନ୍ଦ୍ରାମଣି ସ୍ଥାନ ପୁଣ ସେ ଜନ ଲଭଇ ।୨।
କ୍ଷଣେ ଦଣ୍ଡେ ସେତୁ ମନ୍ତ୍ର ଜପି ଧ୍ୟାନ କର ।
ସଂସାରତାପର ପାପ ନ ଥିବ ଶରୀର ।୩।
ମୂଢ଼ମତ ଜନ ଆମ୍ଭେ ଅଜ୍ଞା ହେଉ ପୁଣ ।
ଶ୍ରୀଗୁରୁ ପରମଗୁରୁ ମୁଖରେ ପ୍ରମାଣ ।୪।
ଶ୍ରୀଗୁରୁ ପରମଗୁରୁ ଭଜନର ସାର ।
ଲୋଚନପଥରେ ଦରଶନ ନିରନ୍ତର ।୫।
ପୂର୍ବଜନ୍ମ ଭାଗ୍ୟ ଥିଲା ଦର୍ଶନ ଲଭିଲୁ ।
ଶ୍ରୀକୃଷ୍ଣ ଭଜନ ମନ୍ତ୍ର ଶ୍ରବଣେ ଶୁଣିଲୁ ।୬।
ମନ୍ତ୍ରଭେଦ ମନେ ଘେନ ହେତୁ ମନ ଦେଇ ।
ସବୁ ମନ୍ତ୍ର ବଧି ପୁଣ କେମନ୍ତ ଅଟଇ ।୭।
ବେଜ ପାଞ୍ଚ ଧରିବ ଯେ ଦଶ କୋଠି ହେବ ।
ପ୍ରେମମନ୍ତ୍ର ଗୋଟି ତଥି ମଧ୍ୟରେ ଲେଖିବ ।୮।
ରାଧା ରାଧା ଆଦ୍ୟାକ୍ଷର ପାଞ୍ଚ ପୁଣ ଧର ।
ରାଧା ରାଧା କୃଷ୍ଣ ବୋଲି ଏ ଦଶ ଅକ୍ଷର ।୯।
ଏ ସବୁ ଲେଖିଣ ବସ୍ତ୍ରପୂଜା ପୁଣ ଦେଇ ।
ଶିଷ୍ୟଙ୍କୁ କହିଲେ ଗୁରୁ ଉଗତ ଯେ ପାଇ ।୧୦।
ରାଧା ରାଧା ବୃନ୍ଦାକ୍ଷର ଅର୍ଦ୍ଧାଙ୍ଗେଣ ବନ୍ଦ ।
ରାଧା ରାଧା ବୃନ୍ଦାକ୍ଷର ଓଁକାରେଣ ଛନ୍ଦ ।୧୧।

---

୧୧—୧ ଅର୍ଦ୍ଧାଙ୍ଗେଣ ବନ୍ଧ (ଖ);

କୃଷ୍ଣ ବୋଲି ବେଦଶାସ୍ତ୍ରର ବାକ୍ୟରେ ବସଇ ।
ପ୍ରେମ ମନ୍ତ୍ର ସବୁ ତନ୍ତ୍ର ଏମନ୍ତ ଅଛଇ ।୧୨।
ଶିଷ୍ୟଙ୍କୁ ଉତ୍ତମ ଯୋଗେ ଏହୁ ମନ୍ତ୍ର ଦେବ ।
ଶୁକ୍ଳପକ୍ଷ ଯେ କୃଷ୍ଣପକ୍ଷ ବୁଝି ଥିବ ।୧୩।
କୃଷ୍ଣପକ୍ଷ ନିଷେଧର କଥାମାନ ଶୁଣ ।
ତୃତୀୟା ତିଥିରେ ମନ୍ଦଯୋଗ ହୋଏ ପୁଣ ।୧୪।
କୃଷ୍ଣପକ୍ଷ ଦଶମୀ ଯେ ତିଥିରେ ନ ଦେବ ।
ଏ ଯୋଗରେ ଦୀକ୍ଷା ଦେଲେ ଶିଷ୍ୟ ନ ସେବିବ ।୧୫।
କୃଷ୍ଣପକ୍ଷ ସପ୍ତମୀ ଦିବସରେ ଯେ ମନ୍ଦ ।
ଏହୁ କାଳେ ଦୀକ୍ଷା ଦେଲେ ମୃତ୍ୟୁମନ୍ତ୍ର ଛନ୍ଦ ।୧୬।
କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନରେ ନ ଦେବ ।
ଏ ଚାରିଦିନ ଏ ପକ୍ଷେ ନିଷେଧ କରିବ ।୧୭।
ଶୁକ୍ଳପକ୍ଷ ଚତୁର୍ଥୀ ତିଥିରେ ନ ଦେବ ।
ଏ ଯୋଗେଣ ଦୀକ୍ଷା ଦେଲେ ଅଙ୍କୁର ବୁଡ଼ିବ ।୧୮।
ନ ଦେବ ଶୁକ୍ଳ ଏକାଦଶୀ ତିଥିଠାରେ ।
ଦୀକ୍ଷା ଦେଲେ ଶିଷ୍ୟ ପୁଣ ସେବା ଯେ ନ କରେ ।୧୯।
ଦିବସେ ଶୁକ୍ଳପକ୍ଷେ ଅଷ୍ଟମୀ ନ ଦେବ ।
ଗୁରୁ ଶିଷ୍ୟ ଉଭୟ ଯେ ବହୁମୂଣ ଖାବ ।୨୦।
ପୂର୍ଣ୍ଣମୀ ଦିବସେ ପୁଣ ଦୀକ୍ଷା ଯେ ନ ଦେଇ ।
ଏହୁ ଅଷ୍ଟଦିନ ପୁଣ ନିଷେଧ ଅଛଇ ।୨୧।
ତୃତୀୟା ଦଶମୀ ଦିନ ଦିବସରେ ଦେବ ।
ସପ୍ତମୀ ଚତୁର୍ଦ୍ଦଶୀ ଯେ ରାତ୍ରେ ଭଲ ହେବ ।୨୨।
କୃଷ୍ଣପକ୍ଷ କଥା ପୁଣ ଏମନ୍ତ ଅଛଇ ।
ଗୋପସୁତ ଗୁରୁଦେବରୁ ବୁଝି ମନ ଦେଇ ।୨୩।
ଏକାଦଶୀ ଚତୁର୍ଥୀ ଯେ ଦିବସେ ଉତ୍ତମ ।
ଅଷ୍ଟମୀ ପୂର୍ଣ୍ଣମୀ ରାତ୍ରେ ଦେବ ସୁନେଆମ ।୨୪।

ଗୁରୁଙ୍କର ବାକ୍ୟ ପୁଣ ମନ୍ତ୍ର ଅଟଇ ।
ତୁମ୍ଭଙ୍କୁ କହିଲୁ ହେତୁ ଅନୁସରିବା ପାଇଁ ।୨୫।
କରଯୋଡ଼ି ଜଣାଉଛନ୍ତି ଗୁରୁଦେବ ପୁଣ ।
ଏହା ଜାଣି ସଂସାରେ ଅଛନ୍ତି ପ୍ରାଣୀଜନ ।୨୬।
ଶୁଣ ଆହେ ଗୋପସୁତ ଭଗତ ବତ୍ସର ।
କୋଟିକେ ଗୋଟିଏ ପୁଣ ଅଛନ୍ତି ସଂସାର ।୨୭।
ପଣ୍ଡିତ ପୁରୁଷ ଏକ ଏକ ଦିନା ଥାଏ ।
ସହସ୍ରେ ମୂରୁଖ ତାଙ୍କ ସମତୁଲ ନୋହେ ।୨୮।
ଏକ ସାର ଗୋଟିକରୁ ପଥର ଲେଖିଏ ।
ମୂଲ୍ୟ କଲେ ସେ ପୁଣ ଯେ କସତୁଲ ନୋହେ ।୨୯।
ମୁକୁତା ଗୋଟାକୁ ଗରଗଡ଼ ଯେ ଲେଖିଏ ।
ଲକ୍ଷ କଲେ ସେ ପୁଣ ଯେ କେଉଁ କାର୍ଯ୍ୟ ହୋଏ ।୩୦।
ହରିର ଯେ ସେଉଁ ଜନ ଦିନେ ମଧ୍ୟେ ଥାଇ ।
ତାହାର ସୁଫଳ ଜନ୍ମ ମୁଖେ କେବା କହୁ ।୩୧।
ତିନି ଭୁବନରେ ସାର ସେ ଜନ ଅଟଇ ।
ସେ ଜନ ଦର୍ଶନ କଲେ ଫଳ ଅନ୍ତ ନୋହି ।୩୨।
ହରିଭକ୍ତ ଜନ ଯଦି ପ୍ରତ୍ୟକ୍ଷ ଦର୍ଶନ ।
ସେ ଦିନର ପାତକ ଯେ ହୁଅଇ ଦହନ ।୩୩।
ମନ୍ତ୍ରଦୀକ୍ଷା ଗୁରୁ ଯଦି ପ୍ରତ୍ୟକ୍ଷ ଦର୍ଶନ ।
କୃଷ୍ଣ ଦରଶନୁ ପୁଣ୍ୟ ଅଧିକ ଯତନ ।୩୪।
ଦିବା ଅର୍କେ ପୁଣ ଯଦି ଦର୍ଶନଟି ପାଇ ।
ସେ ଦିନର ଫଳ ପୁଣ ଅନ୍ତ କରି ନୋହି ।୩୫।
ଗୁରୁଙ୍କ ଦର୍ଶନ ଯଦି ସନ୍ଧ୍ୟା କାଳେ ହୁଏ ।
କୋଟିସୂର୍ଯ୍ୟ କଳାର ଯେ ଫଳ ପୁଣି ପାଏ ।୩୬।
ଭଣାଅର୍କେ ଗୁରୁ ଯଦି ଦର୍ଶନଟି କରି ।
କୋଟି ସ୍ୱର୍ଣ୍ଣଦାନ ପୁଣ ନୋହେ ସମସରି ।୩୭।

ଗୁରୁମୁଖେ ଭୋଗ ଦେଲେ ଅନ୍ୟ କେବା କରେ ।
ଶତେ ଶମ୍ଭୁ ଶତେ ବିପ୍ର ପୁଣ୍ୟଫଳ ସରି ।୩୮।
ବସ୍ତ୍ର ଅଳଙ୍କାର ଯଦ ଗୁରୁଅଙ୍ଗେ ଦେଇ ।
ମୃତ୍ୟୁଅନ୍ତେ ଦେହ ହେଲେ ଦୁଖଯୋଗ ନୋହି ।୩୯।
କୃଷ୍ଣମନ୍ତ୍ର କୃଷ୍ଣରୂପୀ ପ୍ରାପ୍ତେ ମଣ ଚିତ୍ତ ।
କୃଷ୍ଣ ଗୁରୁ ବୈଷ୍ଣବ ତିନ ଏକ ମତ ।୪୦।
ମନ୍ତ୍ରଜପ ଗୁରୁସେବା ବୈଷ୍ଣବେ ବିଶ୍ୱାସ ।
ଜଭେ ଷଡ଼ ଇନ୍ଦ୍ରି ଜାତ ହୋଇଲେ ତ ଦାସ ।୪୧।
ଭେଖ ବନ୍ଧ ଷଡ଼ମୁଣ କଥା ଯେତ କରେ ।
ବୈଷ୍ଣବପଥକୁ ସେହୁ ଅଟନ୍ତି ବଇରୀ ।୪୨।
ଗୁରୁଧର୍ମ ଗୁଡ଼ାବନ୍ତ ଆପଣେ ଯେ ଜାଣେ ।
ଇହଲୋକେ ପରଲୋକେ ହୁଏ ଉପହାସ ।୪୩।
ଇହଲୋକ ଜନମାନେ କରନ୍ତି ତମାଳ ।
ପରଲୋକେ ଯମ ନେଇ ଦିଅଇ ଶାକ୍ତିଲ ।୪୪।
ଗୁରୁଆଜ୍ଞା ଏଣୁ କରି ମନେ ଧରିଥିବ ।
ପାମର ଅଚ୍ୟୁତ କହେ କୃଷ୍ଣ ହୃଦେ ଥିବ ।୪୫।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଷଟ୍‌ଚତ୍ୱାରିଂଶତି ଛାନ୍ଦ

———

# ସପ୍ତଚତ୍ୱାରିଂଶତ୍ ଛାନ୍ଦ

ଶୁଣ ହେ ଚନ୍ଦ୍ରଶ ଗୋପ ପଞ୍ଚନାମ କଥା ।
ପଞ୍ଚନାମ ମହାମନ୍ତ୍ର ଜପର ବ୍ୟବସ୍ଥା ।୧।
କୃଷ୍ଣ କୃଷ୍ଣ ଗୋବିନ୍ଦ ଯେ ସପ୍ତାକ୍ଷର କହି ।
ରାଧେ କୃଷ୍ଣ ଚରୂରରେ ପଞ୍ଚନାମ ହୋଇ ।୨।
ମଣ୍ଡଳ ଗୋଟିଏ ବେଢ଼ାଇବ ଯେ ଏତନ ।
ଦ୍ୱାଦଶେ ବୃଷ ଯେ ମଣ୍ଡଳ କରି ସ୍ଥାନ ।୩।
ଗୋବିନ୍ଦ ବୋଲିଣ ତିନି ଅକ୍ଷର ଉପର ।
କୃଷ୍ଣ କୃଷ୍ଣ କୃଷ୍ଣ ଛଡ଼ ଦଳଠାରେ ଧର ।୪।
ରାଧେ ବୋଲି ବେଦାକ୍ଷର ମଧ୍ୟରେ ବସିବ ।
ଯନ୍ତ୍ରଗୋଟି ବନ୍ଧିଲେ ଯେ ଶିଷ୍ୟ ହେତୁ ହେବ ।୫।
ଧେ କୁ ଓଁକାରେ ଦେଇ ରାଆକୁ ଅର୍ଦ୍ଧରେ ।
କୃଷ୍ଣ ଯେ ଗୋବିନ୍ଦ ନବ ଅକ୍ଷର ବନ୍ଧରେ ।୬।
ପଞ୍ଚାବଧି ଦେଇ ଯନ୍ତ୍ର ତତ୍ତ୍ୱ ବୁଝାଇବ ।
ମନ୍ତ୍ରମୁଖେ ଶିଖାଇଲେ ଶିଷ୍ୟ ବୋଧ ହେବ ।୭।
ପଞ୍ଚ ମହାପାତକ ଏ ନାମେ କ୍ଷୟ ହୋଇ ।
ଗୋବିନ୍ଦନାମେ ଗୋହତ୍ୟା ପାତକ ହରଇ ।୮।
ବ୍ରହ୍ମହତ୍ୟାପାତକ ଯେ କୃଷ୍ଣନାମେ ହରେ ।
କୃଷ୍ଣନାମ ସୁମରିଲେ ବିଷ୍ଣୁଲୋକୁ ତରେ ।୯।
କୃଷ୍ଣନାମ ସୁମରଣ ମାତୃଦ୍ରୋହ ହର ।
ରାଧେନାମ ଶୁଣିଣ ଯେ ଗୁରୁପାପୁଁ ତର ।୧୦।
ଯେତେ ପାପମାନ ଯେତେ ପ୍ରାଣୀ କରିଥାନ୍ତି ।
ସେ ଜନକୁ ଏ ମନ୍ତ୍ର ଯେ କୁଠାର ହୁଅନ୍ତି ।୧୧।

ହେତୁ କରି ଯେଉଁ ଜନ ପାପ କରୁଥାନ୍ତି ।
ଏ ମନ୍ତ୍ର ଜପିଲେ ପାପ ଗ୍ରହିବ ବୋଲନ୍ତି ।୧୨।
ଏଥିର ପ୍ରମାଣ ଗୁରୁ କହିବା ବିସ୍ତର ।
ଶ୍ରୀମୁଖୁଁ ଶୁଣିଲେ ମନ ହୋଇବାକ ସ୍ଥିର ।୧୩।
ଶୁଣ ହେ ଭଗବତ୍ଶିଷ୍ୟ ନରଜନ୍ମ କଥା ।
ଏ ଭବସଂସାର ବଡ଼ ଅଟଇଟି ବ୍ୟଥା ।୧୪।
ଗୁରୁଦେବ ମତେ ଯେବେ ପାପ କରିଥାଇ ।
ମନ୍ତ୍ର ଜପ କଲେ ସିନା ପାପ କ୍ଷୟ ହୋଇ ।୧୫।
ଜାଣି ଶୁଣି ପାପ କଲେ ନୋହଇ ଛେଦନ ।
ଶ୍ରୀକୃଷ୍ଣ ପୁରାଣେ ଏହୁ ଅଟଇ ପ୍ରମାଣ ।୧୬।
ହେତୁ କରି ଗୁରୁଠାରେ ପାପ ଯଦି କରେ ।
ଅବିଶ୍ୱାସ ହୋଇଲେ ସେ ପାତକ ନ ହରେ ।୧୭।
ଗୁରୁଙ୍କ ଠାବରେ ମିଥ୍ୟା ବଚନ ନ କହୁ ।
ଗୁରୁଙ୍କୁ ପୂଜିବ ପୁଣ ତନ ମନ ଦେଇ ।୧୮।
ଗୁରୁଙ୍କୁ ସେ ଲକ୍ଷ୍ୟ ଆଉ ସଂସାରରେ ନାହିଁ ।
ବଚନ କହିଲେ ଗତି ମୋକ୍ଷ ପୁଣ ହୋଇ ।୧୯।
ଯେଉଁ ଜନ ଗୁରୁସେବା କରେ ନିରନ୍ତର ।
କୋଟି କୋଟି ତୀର୍ଥଫଳ ସେ ଜନ ଠାବର । ୨୦ ।
ଗୁରୁମୁଖୁଁ ମନ୍ତ୍ର ଶୁଣି ଶିଷ୍ୟ ଭକ୍ତ ହୋଏ ।
ଲକ୍ଷ ଲକ୍ଷ ଧନ ଦ୍ରବିନାମେ ସରି ନୋହେ । ୨୧ ।
ଗୁରୁ କୃଷ୍ଣ ସୁମରିବ ଅନୁକୂଳ ହେଲେ ।
ଦର୍ଶନ ହୋଇବ ଥିବ ଯେତେ ଅମଙ୍ଗଳେ । ୨୨ ।
ଦିବାନିଶି କୃଷ୍ଣ ବୈଷ୍ଣବଙ୍କ ମାଦେ ଭଜ ।
ଜନମଟି ସୁଫଳ ହୋଇବ ତେବେ କାର୍ଯ୍ୟ । ୨୩ ।
ଗୁରୁ ବଇଷ୍ଣବ ସେବା ଯେ ଜନ ନ କଲା ।
ଜନମ ବିଅର୍ଥ ଧିକ ଧିକ ଜନ୍ମ ଗଲା । ୨୪ ।

ଅନନ୍ତ ଜନ୍ମରେ ସ୍ୱର୍ଗ ଭଢଥିଲେ ପୁଣ ।
ପଡ଼ଇ ବୃନ୍ଦରେ ଆସି ଗୁରୁଙ୍କ ଚରଣ । ୧୫ ।
କୋଟି କୋଟି ପୁରୁଷ ଯେ ଉଦ୍ଧରଣେ ଯାଇ ।
ଯେଉଁ କୁଳେ ବଇଷ୍ଣବ ଗୋଟିଏ ହୁଅଇ । ୧୬ ।
ଜଟା ଫଟା ଭେକଟାଳେ ସମସ୍ତେ ହେଁ ଦାସ ।
କୋଟିକେ ଗୋଟିଏ ସାର ଜନମନ ଶିଷ୍ୟ । ୧୭ ।
କୋଟିକେ ଗୋଟିଏ ସାର ଏକ ମନ୍ତ୍ର ପାଏ ।
ଖୋଜ ଭେଦ ସେବାକର ଶିଷ୍ୟ ଯେନପାଏ । ୧୮ ।
ଖୋଜ ଭେଦ ଗୁରୁମୁଖେ ମନ୍ତ୍ର ଶିଖେ ଶିଷ୍ୟ ।
ସେହୁ ବଇଷ୍ଣବଗଣେ ହୁଅଇ ସେ ଦାସ । ୧୯ ।
ଗୁରୁଙ୍କୁ ଯେ ନ ପୂଜଇ ଅଟାଙ୍ଗ ସେ ପୁଣ ।
ହେତୁ ଶିଷ୍ୟ ଗୁରୁଙ୍କର ରଖଇ ସେ ପ୍ରାଣ ।୨୦।
ଗୁରୁ ପାଦେ ହେତୁ କଲ ଚରଣ ହେ ଦାସ ।
ରାମ ଧର୍ମ୍ମ ମୁକୁନ୍ଦ ହେ ଅନ୍ତ ବିଶ୍ୱାସ ।୨୧।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ସପ୍ତଚତ୍ୱାରିଂଶତ୍ ଖଣ୍ଡ ।



## ଅଷ୍ଟଚତ୍ୱାରିଂଶତ୍ ଛାନ୍ଦ

ଚଦ୍ଦଶ ଗୋପାଳ ଶୁଣ ଦଶାକ୍ଷର ଗୁଣ ।
ଗୋପୀଜନ ବଲ୍ଲଭାୟ ସ୍ୱାହା ବୋଲି ପୁଣ । ୧ ।
କ୍ଲୀଁ ଅକ୍ଷର ସବୁ ମନ୍ତ୍ରଙ୍କର ବୀଜ ।
ଏ ଅକ୍ଷରୁ ଷଡ଼ଅଛୁ ଦଶାକ୍ଷର ବୃନ୍ଦ । ୨ ।
ଗୋପୀ ବୋଲି ଯାହା କହୁ ସେ ଅଟେ ଲକାର ।
ଜନ ନେନାକ୍ଷର ଯେ ବସଇ ଈକାର ର । ୩ ।
ବଲ୍ଲଭାୟ ବୃଣାକ୍ଷର କକାର ବସଇ ।
ନାଦ ବିନ୍ଦୁ ଉପରେ ଯେ ସ୍ୱାହା ପୁଣ ଏହୁ । ୪ ।
ଲକାରେ ଗୋପୀ ଦର୍ପଣ ଲକ୍ଷ୍ମୀ ଅଟେ ପୁଣ ।
ଈକାରେ ଯେ ଜନ ବସେ ପ୍ରେମଭକ୍ତିଗଣ । ୫ ।
ବଲ୍ଲଭାୟ କକାରରେ କୃଷ୍ଣ ବୋଲି କହୁ ।
ସ୍ୱାହା ଯେ ଅକ୍ଷର ଅର୍ଦ୍ଧମାତ୍ରା ତହିଁ ଲହୁ । ୬ ।
ସ୍ୱାହା ବିନ୍ଦୁ ବସଇ ଯେ କୃଷ୍ଣରୂପ ସେହୁ ।
ଏହୁ ଦଶ ଅକ୍ଷର ଯେ ଏକାକ୍ଷର ହୋଇ । ୭ ।
ଜଗନ୍ନାଥ ସ୍ୱରୂପ ଏ ଏକାକ୍ଷର କହୁ ।
ମନ୍ତ୍ରରୂପ ବାନ୍ଧିଲେ ଯେ ସେ ରୂପ ଦେଖଇ । ୮ ।
ଜନ ଯେ ଈକାର ପାଦ ଅଟଇଟି ପୁଣ ।
ଗୋପୀ ଯେ ଲକାର ସେହୁ ସ୍ୱରୂପଟି ଜାଣ । ୯ ।
ବଲ୍ଲଭାୟ କକାର ଯେ ମୁଖ ଯେ ଅଟଇ ।
ଗୋପୀ ବୋଲି ଯାହା କହୁ ଅଧର ଯେ ହୋଇ । ୧୦ ।

---

୫—୨ ପ୍ରେମଭକ୍ତି ପୁଣ (କ);

ଜନ ବୋଲି ଯାହା କହୁ ଅଟଇ ଲୋଚନ ।
ବକ୍ଷସ୍ଥ ନାସା ମୁଖମଣ୍ଡଳ ବୋଲିଣ ।' ୧।
ଜଗନ୍ନାଥ ରାଧାକୃଷ୍ଣ ବୋଲିଣଟି କହୁ ।
ଦଶାକ୍ଷର ବାନ୍ଧିଲେଟି ଜଗନ୍ନାଥ ପାଇ ।୨।
ଗୋପୀ ବୋଲି ଯାହା କହୁ ସେ କଣ୍ଠ ଅଟଇ ।
ଜନ ବୋଲି ଦୁଇଅକ୍ଷର ପିଠି ପୁଣ କହୁ ।୩।
ବକ୍ଷସ୍ଥ ବୋଲିଣ ଯେ କଟି ଅଟେ ପୁଣ ।
ଗୋପୀ ବୋଲି ଯାହା କହୁ ବାହୁ ଅଟେ ଜାଣ ।୪।
ଜନ ଯେ ଶରୀର ପୁଣ ବୋଲି କରି କହୁ ।
ବକ୍ଷସ୍ଥ ଶିର ପୁଣ ଅଟଇଟି ସେହୁ ।୫।
ପଞ୍ଚମୂର୍ତ୍ତି ଏକ ଅଟେ ସାଧୁ ଜାଣେ ପୁଣ ।
ସଦଗୁରୁ ସେବିଥିଲେ ଜାଣଇ ପ୍ରମାଣ ।୬।
ପାଦବେନି ଜନ ଦୁଇ ଅକ୍ଷର ଅଟଇ ।
ବକ୍ଷସ୍ଥ ବୋଲିଣ ଯେ କଟି ବୋଲି କହୁ ।୭।
ଗୋପୀ ବୋଲି ଯାହା କହୁ ଅଟଇ ଶରୀର ।
ବାହୁ ବେନି ଅଟଇ ଯେ ଗୋପୀ ବେନାକ୍ଷର ।୮।
ଜନ ବେନି ଅକ୍ଷର ଯେ ପିଠି ପୁଣ କହୁ ।
ଗୋପୀ ବେନି ଅକ୍ଷର ଯେ କଣ୍ଠ ପୁଣ ହୋଇ ।୯।
ବକ୍ଷସ୍ଥ ମୁଖନାସା ଅଟଇଟି ଜାଣ ।
ଜନ ବେନି ଅକ୍ଷର ଯେ ଲୋଚନ ଶ୍ରବଣ ।୧୦।
ବକ୍ଷସ୍ଥ ଶିର ପୁଣ ବୋଲି କରି କହୁ ।
ମନ୍ତ୍ରକୁ ସ୍ୱରୂପ କର ଦରଶନ ଧ୍ୟାୟୁ ।୧୧।
ଏଣୁକରି ଶ୍ରୀକୃଷ୍ଣର ରୂପ ଧ୍ୟାନ କର ।
କ୍ଲୀଂକାର ମନ୍ତ୍ର ବୀଜ ଭିତରେ ସାର ।୧୨।

---

୧୨—୧ ବକ୍ଷୁସ୍ଥଳ (ଖ);

ଚରଣ ଗୋପାଳ ତୁମ୍ଭେ ସୁହୃଦେ ସ୍ମର ।
ଧାନ ଅର୍ଜ୍ଜୁନର ସଖା ସଙ୍ଗରେ ବିହାର ।୨୩।
ଏହୁ ଗୁରୁଭକ୍ତିଗୀତା ଭଗତର ହିତ ।
ସମ୍ପୂର୍ଣ୍ଣ କର ପଢ଼ିଲେ ଭଗତ ପ୍ରାପତ ।୨୪।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ଅଷ୍ଟଚତ୍ୱାରିଂଶତ୍ ଛାନ୍ଦ ।



## ଊନପଞ୍ଚାଶତ୍ ଛାନ୍ଦ

ମୁକୁନ୍ଦ ଅନନ୍ତ ସ୍ତୁତ ଶୁଣିମା ଗୋସାଇଁ ।
ଶିଂଘାଧୂନ୍ନ ମହିମା ସେ କେମନ୍ତ ଅଟଇ ।୧।
ଶୁଣ ହେ ଗୋପର ସୁତ ଭଗତର ହିତ ।
ଏହୁ ଶିଂଘା ବିଖ୍ୟାତ ସେ କରିବ ଜଗତ ।୨।
ଘର ଘର ଧରିବ ସେ ମନ୍ତ୍ରକୁ ବିସ୍ତରି ।
ମନ୍ତ୍ରକୁ ଆପିବ ତହିଁ ଅକ୍ଷରକୁ ଧରି ।୩।
ପୁଣ ଘର ଧରିଲେ ସେ ହୋଇବାକ ବାର ।
ଓଁ ନମୋ ଶ୍ରୀ ବୋଲି ଘର ଦେଇ ଅକ୍ଷର ।୪।
ବ ଶଙ୍କର ବୋଲି ପୁଣ ପୁଣ ଘର ଧର ।
ନମାମ୍ୟହଂ ବୋଲିଣ ସେ ପୁଣ ଘର କର ।୫।
ଏମନ୍ତେଣ ମନ୍ତ୍ର ଲେଖି ଯନ୍ତ୍ର ଗୋଟି କରି ।
ଶିଷ୍ୟଙ୍କୁ ବସାଇ ପୂଜା ବସନ ବିସ୍ତରି ।୬।

| | | | |
|---|---|---|---|
| ଓଁ | ନ | ମୋ | ଶ୍ରୀ |
| ବ | ଶ | ଙ୍କ | ର |
| ନ | ମା | ମ୍ୟ | ହଂ |



ଶିଂଘା

ହସ୍ତରେ ଦେଇଣ ଶିଂଘା ମହିମା କହିବ ।
ତେବେ ସେ ଚହ୍ନିଣ ଶିଙ୍ଘା କଣ୍ଠରେ ବାନ୍ଧିବ । ୭ ।
ଗୁରୁ ଯନ୍ତ୍ର ମନ୍ତ୍ର ଯନ୍ତ୍ର ନ ଜାଣିଣ ବାନ୍ଧେ ।
ଶଏ ଜନ୍ମ ଯାଏ ନର୍କ କୁଣ୍ଡେ ବୁଡ଼ିଥାଇ । ୮ ।
ମନ୍ତ୍ର ଗୁରୁଶିକ୍ଷା କରି ଶିଂଘାନାଦ ବାଇ ।
ଯମ କାଳଦଣ୍ଡଭୟ ତାକୁ ନ ଲାଗଇ । ୯ ।
ଆଦ ଯେ ଅନନ୍ତ ଯୁଗକାଳେ ବ୍ରହ୍ମା ପୁଣ ।
ସୃଷ୍ଟି କରି ବସିଲେ ଯେ ଅନନ୍ତ କ୍ଷେପେଣ । ୧୦ ।
କୁଣ୍ଡବଢ଼ି କୋଳେ ଯୋଇ ନାମ ଗୁଣୁଥିଲେ ।
ଏମନ୍ତ ସମୟେ ଯାଇଁ କପିଳା ମିଳିଲେ । ୧୧ ।
ବ୍ରହ୍ମାଙ୍କର କୁଣ୍ଡ ବଢ଼ି ଖାଇଲା ସେ ଯାଇଁ ।
ବ୍ରହ୍ମାହସ୍ତ ପଡ଼ିଲା କପିଲା ଶିଂଘ ଠାଇଁ । ୧୨ ।
କପିଳାର ଶିଂଘଗୋଟି ପଡ଼ିଲାକ ତଳ ।
ଦେଖି କରି ବ୍ରହ୍ମା ବଡ଼ ହୋଇଲେ ବିକଳ । ୧୩ ।
ମନଦୁଃଖ କରି ବ୍ରହ୍ମା ଶିବଠାକୁ ଗଲେ ।
ଏହୁ ବଡ଼ମୁଣ କଥା ବୋଲିଣ କହିଲେ । ୧୪ ।
ମନକୁ ଶଙ୍କର ଚିନ୍ତା ନ କର ହେ ପୁଣ ।
ଶବଦ ଯତନ କରି କରିବାକ ଜାଣ । ୧୫ ।
ବ୍ରହ୍ମା ଶିବ ବିଶ୍ବଗଣ ଶିଂଘା ବଜାଇଲେ ।
ଅଗରୁ କାଟି ଖଣ୍ଡିଏ କ୍ଷୁଦ୍ର ଶିଂଘା କଲେ । ୧୬ ।
ପ୍ରଥମଖଣ୍ଡ ସେ ବଡ଼ ସୁସ୍ବର ଶୁଭଇ ।
ପଛର ଖଣ୍ଡି ସେ ଶିବ ନ ପାରିଲେ ବାଇ । ୧୭ ।
ବେନି ଶିଂଘା ଘେନିଣ ସେ ଶିବ ଚାଲିଗଲେ ।
ବଇକୁଣ୍ଠପୁରେ ବିଷ୍ଣୁ ଅଗ୍ରତେ ମିଳିଲେ । ୧୮ ।
ଏହୁ ଧ୍ୱନି ଗୋଟି ବଡ଼ ଅଟଇ କଠୋର ।
ଆର ଧ୍ୱନି ଗୋଟି ବଡ଼ ଅଟଇ ସୁନ୍ଦର । ୧୯ ।

ସୁସ୍ୱର ଶବଦଗୋଟି ଶିବ ଯେ ରଖିଲେ
କଠୋର ଶବଦଗୋଟି ବିଷ୍ଣୁ ରଖିଥିଲେ । ୨୦ ।
ଗୋଲୋକରେ ଗୋପାଳଙ୍କ ହସ୍ତରେଣ ଦେଲେ
ଯତନ କରି ରଖିବ ବୋଲିଣ ବୋଇଲେ । ୨୧ ।
ଆଦ୍ୟ ଯେ ଅନନ୍ତ ସତ୍ୟ ତ୍ରେତ୍ୟାର ଶେଷେ ।
ଏହୁ ଶିଂଘା ଧ୍ୱନି ହେବ ଦ୍ୱାପର ପ୍ରବେଶେ । ୨୨ ।
ଯୁଗଭୋଗ ହୋଇଣ ଯେ ଦ୍ୱାପର ପ୍ରବେଶ ।
ଗୋପପୁରେ ଜନମିଲେ ଶ୍ରୀକୃଷ୍ଣର ଅଂଶ । ୨୩ ।
ଗୋପରେ ସୁଦାମ ଯୁଥେ ଶିଂଘାଧ୍ୱନି ବହେ ।
ଗୋପ ପୋଏ ବଜାଇଲେ ଶ୍ରୀକୃଷ୍ଣ ଆଜ୍ଞାଏ । ୨୪ ।
ପୃଥିବୀ ଆନନ୍ଦ ହୋଏ ଶିଂଘାଧ୍ୱନି ଶୁଣି ।
ଏ ଧ୍ୱନି ଶୁଣିଲେ କାଳ ଭୟ କରେ ପୁଣି । ୨୫ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହୁଅନ୍ତି ଆନନ୍ଦ ।
ଶ୍ରବଣେ ଶୁଣିଲେ ପାପ ନ ରହଇ କନ୍ଦ । ୨୬ ।
ହବା ପାଣ୍ଡଘଣ୍ଟାରେ ଶିଂଘା ବାଯେ ଯେହୁ ।
ସେ ଜନର ପୁଣ୍ୟ ପୁଣ ମୁଖେ କେବା କହୁ । ୨୭ ।
ଦେଳ ଅବସାନକାଳେ ଧ୍ୱନି ଯେ କରଇ ।
ସକଳ ପାତକମାନ ଧ୍ୱଂସକରି ଯାଇ । ୨୮ ।
ଗୋପର ଚାରଣା ତୁମ୍ଭେ କଳିରେ ଭକତ ।
ଜନ୍ମେ ଜନ୍ମେ ତୁମ୍ଭେ ଅଷ୍ଟ ସଖା ସଙ୍ଗୀ ଭକ୍ତ । ୨୯ ।
ଶିଂଘା ଅଧିକାର ଯେ ମୁକୁନ୍ଦ ହସ୍ତେ ରହେ ।
ରାମଚନ୍ଦ୍ର ଦେଲେ ଟେକ ଅଚ୍ୟୁତ ଆଜ୍ଞାଏ । ୩୦ ।

ଇତି ଶ୍ରୀଗୁରୁଭକ୍ତଗୀତା କଥନେ ନାମ ଊନପଞ୍ଚାଶତ୍ ଗ୍ରନ୍ଥ ।



# ପଞ୍ଚାଶତ୍ ଛାନ୍ଦ

ମୁକୁନ୍ଦ ଅନନ୍ତ ଯେ ବାଲକ ତନ କହ୍ନୁ ।
ଶଙ୍ଖର ମହିମା ଗୋଟି କେମନ୍ତ ଅଟଇ । ୧ ।
ଶୁଣ ହେ ଶ୍ରୀବାସ ଦାସ ଶଙ୍ଖର ବିସ୍ତର ।
ସତ୍ୟଯୁଗେ ଶଙ୍ଖାସୁର ଥିଲେ ଏ ପୃଥ୍ୱୀର । ୨ ।
ହରି ନେଲା ବ୍ରହ୍ମାର ଯେ ବେଦପୋଥି ପୁଣ ।
ବ୍ରହ୍ମା ସ୍ତୁତି କଲେ ପୁଣ ଅତି ଆର୍ତ୍ତେଣ । ୩ ।
ବ୍ରହ୍ମା ସ୍ତୁତି କରନ୍ତେଣ ମୀନ ରୂପ ହୋଇ ।
ଶଙ୍ଖାସୁର ମାଇଲେ ଯେ ସିନ୍ଧୁରେ ବୁଡ଼ାଇ । ୪ ।
ଦେବତାଙ୍କୁ ଦୁଃଖ ଦେଇ ପୃଥ୍ୱୀ ନ ସହିଲା ।
ଚକ୍ରେଣ ଛେଦିଲେ ଶଙ୍ଖା ମଣ୍ଡଳ ପଡ଼ିଲା । ୫ ।
ଶଙ୍ଖ ବଜାଇଲେ ହରି ଶୁଙ୍କଚକ୍ର ହୋଇ ।
ବଇକୁଣ୍ଠପୁରେ ବିଷ୍ଣୁ ରଖିଲେକ ନେଇ । ୬ ।
ସେ ଅସୁର ଅଂଶ ଯେତେ ଥିଲେକ ପୃଥ୍ୱୀରେ ।
ସମସ୍ତେହେଁ ନାଶ ଗଲେ ବିଷ୍ଣୁର ଚକ୍ରରେ । ୭ ।
ଗୋଲୋକଟନ କିଛୁ ଦିନ ରହିଲା ସେ ପୁଣ ।
ଦ୍ୱାପର ଯୁଗରେ ଗୋପେ କଲେକ ଭ୍ରମଣ । ୮ ।
ଦାମ ସଖା ଯୂଥ ସଙ୍ଗେ ଶବଦ ଆନନ୍ଦ ।
ମଙ୍ଗଳ ଆନନ୍ଦ ଧ୍ୱନି ଗୋପରେ ଯେ ବନ୍ଦ । ୯ ।
ଅତି ଯେ ଧବଳ ଦେଖି ଶରଧା ମନରେ ।
ଧଇଲେକ ବିଷ୍ଣୁ ପୁଣ ଶ୍ରୀବାମ ଯେ କରେ । ୧୦ ।
ପଞ୍ଚସ୍ୱର କରଣ ଯେ ବଜାଇଲେ ଧ୍ୱନି ।
ବିଷ୍ଣୁ ଦେଲେ ଗୋପ ପୋଏ କରେ ଥିବ ଯେଣି । ୧୧ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ପୂଜା ନ ଜାଣିଣ ନାହି ।
ଓଡ଼ନ କନ୍ଧ ଲୋଚନ ଯେ ଅନ୍ଧ ତାର ହୋଇ । ୧୨ ।

---

୨—୧୨, ଶଙ୍ଖର ମହିମା……………ଥିଲେ ପ୍ରଭୁ ସୀମା (କ);

ମନ୍ତ୍ର ଜାଣି ଯେଉଁ ପ୍ରାଣୀ ଶଙ୍ଖଧ୍ୱନି କରେ ।
ଅବଶ୍ରେଣ ସୁଖୀ ମଲେ ମିଳେ କୃଷ୍ଣ ପୁରେ । ୧୩ ।
ଧନ ତରୁ ଧରଣ ଯେ କୋଠି ବସାଇବ ।
ତେର ଗୋଟି ଅକ୍ଷର ଯେ ତହିଁରେ ଲେଖିବ । ୧୪ ।
ଓଁ ଅକ୍ଷର ଆଦ୍ୟ ଉପରେ ମିଶାଇ ।
ଜୟ ଜୟ ଜଗନ୍ନାଥ ନମାମ୍ୟହଂ କହି । ୧୫ ।
ଜୟ ଜୟ ଚତୁଃକ୍ଷର ଜଗନ୍ନାଥ ରୂପ ।
ନମାମ୍ୟହଂ ଗୁଣ ଓଁ ମନ୍ତ୍ରରେ ସୁମର । ୧୬ ।
ଏ ମନ୍ତ୍ର ଯନ୍ତ୍ର ଲେଖିଣ ବସ୍ତ୍ର ଏକ ଦେଇ ।
ପୂଜାବିଧି ଦେଇଣ ଯେ ମନ୍ତ୍ରକୁ ଶିଖାଇ । ୧୭ ।
ଫୁଲ ପାନ ଚନ୍ଦନ ବସନ ଭିଆଇବ ।
ମକର ଭୋଜ କର ବିବିଧ ନାନା ଦ୍ରବ୍ୟ । ୧୮ ।
ଅଚ୍ୟୁତ ଆଜ୍ଞା ଏ ରାମଚନ୍ଦ୍ର ଦାସ ଯେନ ।
ରାମଚନ୍ଦ୍ର ଦେଲେ ହନୁମାନ ହସ୍ତେ ପୁଣ । ୧୯ ।
ହନୁମାନ ଅନନ୍ତ ଅଟେ ଶଙ୍ଖେ ଅଧିକାରୀ ।
ଏ ଶଙ୍ଖର ଶବଦ ଯେ ଅଟୁଟ ବିସ୍ତାରି । ୨୦ ।

ଶଙ୍ଖ



ପ୍ରତ୍ୟେକେଣ ଶଙ୍ଖଧ୍ୱନି ଶୁଣିଲେକ ପୁଣ ।
ଗୋହତ୍ୟା ପାତକ ଦୋଷ ହୁଅଇ ହରଣ । ୨୧ ।
ସନ୍ଧ୍ୟାକାଳେ ଯେଉଁ ଜନ ଶଙ୍ଖ ଧ୍ୱନି ଶୁଣି ।
ଡାକମାନେ ଥାନରୁ ଯେ ପଳାଇ ଯାନ୍ତି ପୁଣି । ୨୨ ।
ଆନନ୍ଦ ମଙ୍ଗଳ ଅଟେ ଏହୁ ପୁଣ ଧ୍ୱନି ।
ଦେବସ୍ଥାନେ ସନ୍ଥଜନମାନେ ଥାନ୍ତି ଯେଣି । ୨୩ ।
ଅନ୍ୟସ୍ଥାନେ ଏ ଧ୍ୱନିକି ନ କର ପ୍ରକାଶ ।
ଜଗ୍ର ଅପମୃତ୍ୟୁ ଏ ଧ୍ୱନିରେ ହୋଏ ନାଶ । ୨୪ ।
ଶଙ୍ଖ ବିଷ୍ଣୁଙ୍କୁ ଯେ ବର ମାଗିଲଇ ।
ଦେବତାର୍ଥେ ସନ୍ଥହସ୍ତେ ମସ୍ତକ ମୋ ରହୁ । ୨୫ ।
ଦେବତାର୍ଥେ ସନ୍ଥହସ୍ତେ କିଛୁ ଯୋଗ ଥିବ ।
ଏଣୁ ଭକ୍ତ ପୂଜାବିଧି ଶଙ୍ଖଠାରେ ଦେବ । ୨୬ ।
ଯୋଗବିଧି ବେଳେଣ ବାଳକ ବଜାଇବ ।
ଅଚ୍ୟୁତ ବଚନ ବାର ଗୋପାଳ ପାଳିବ । ୨୭ ।
ଗୁରୁଦେବରୁ କ୍ରମନ୍ତ୍ରେଣ ଏହୁ ଗୀତା ପାଠ ।
ଭକତ ଜନମାନଙ୍କ ଅଟଇ ଏ ବୋଠ । ୨୮ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ପଞ୍ଚାଶତ୍ ଗ୍ରନ୍ଥ ।

—*—

# ଏକପଞ୍ଚାଶତ୍ ଛାନ୍ଦ

ଗୋବିନ୍ଦ ଦାସର ସୁତ ଯେନମା ଗୋସାଇଁ ।
ମୂରଲୀର ଜନ୍ମ ପୁଣ କହିବା ବୁଝାଇ । ୧ ।
ଶୁଣ ହୋ ଗୋବିନ୍ଦ ବସ୍ର ଆନନ୍ଦ ସୁଦାମ ।
ମୂରଲୀ ମହିମା ହୃଦେ ବାନ୍ଧବ ଉତ୍ତମ ' ୨ ।
ଅବଲେଖ ସତ୍ୟଯୁଗ ଅଟଇ ପ୍ରମାଣ ।
ବ୍ରହ୍ମା ତପ କରୁଥିଲେ ସେ ପୁରେଣ୍ଟ ପୁଣ । ୩ ।
ମେଦାନାମେ ଦଇତ ଗୋଟାଏ ଜନ୍ମିଥିଲା ।
ବ୍ରହ୍ମା ତପ କରୁଥିଲେ ସେଠାରେ ମିଳିଲା । ୪ ।
ବ୍ରହ୍ମାର କିଦଣ୍ଡୀ ଦୈତ୍ୟ ଖଣ୍ଡି ଲାକ ତହିଁ ।
ଖଣ୍ଡି ପକାଇଲା ଅଧକୋପକର ହୋଇ । ୫ ।
ପିତାମହ ଶାପ ଦେଲେ ବେଣୁ ବୃକ୍ଷ ହେବ ।
ବ୍ରହ୍ମା ଶାପ ଗୋଟା ପୁଣ କେ ଆନ କରିବ । ୬ ।
ବୃକ୍ଷ ସେ ଗୋଟାଏ ହେଲା ଏ ମର୍ତ୍ତ୍ୟମଣ୍ଡଳ ।
ବିସ୍ମର କରନ୍ତି ବ୍ରହ୍ମା ହୃଦପଦ୍ମକମଳ । ୭ ।
ସେ ବୃକ୍ଷ ଗୋଟିକ ଯେ କାଟିଲେ ହସ୍ତରେଣ ।
ଛଡ଼ଗୋଟି ଧନୁ ସେ ନିର୍ମାଣିଲେକ ପୁଣ । ୮ ।
ତହିର ଉପର ଖଣ୍ଡି ବେଣୁ କଲେ ନେଇ ।
ଆର ପଦ ମୁଖର ସଙ୍ଗୀତା ଯେ ଭିଆଇ । ୯ ।
ଆବର ପବେକ କଲେ ମୂରଲୀ ଯେ ପୁଣ ।
ତହିଁ ଅଗ ଖଣ୍ଡି ନାକ ବଂଶୀ ଭିଆଣ । ୧୦ ।
ପତର କାହାଲୀ ଅଗେ ତହିଁ ପଦ ଦେଇ ।
ବେଣୁବୃକ୍ଷ ଗୋଟିକୁ ସେ ଏତେ ବାଧ କହି । ୧୧ ।

---

୨—୨ ବାନ୍ଧବ (କ);

ପ୍ରଥମ ପବ ଖଣ୍ଡିକ ଦୁଇ ସ୍ତର କର ।
ଅଜଗ ପିନାକ ଦୁଇ ନାମ ତହିଁ କର । ୧୨ ।
କୋଦଣ୍ଡ ଗାଣ୍ଡିବ ବୋଲି ଆଉ ପବ କଲେ ।
ଆଉ ପବ ସ୍ୱପ ଯେ ବୈଷ୍ଣବା ଧନୁ ହେଲେ । ୧୩ ।
ଅଜଗ ପିନାକ କୋଦଣ୍ଡ ଗାଣ୍ଡିବ ସ୍ୱପ ।
ବେଣୁ ଯେ ସଙ୍ଗୀତା ବେଂଶୀ ନାଦ ବଇଁଶୀକ । ୧୪ ।
ବୈକୁଣ୍ଠ ଭୁବନେ ବ୍ରହ୍ମା ରଖିଲେ ଯତନେ ।
କେହି ରଖି ନ ପାରଲେ ତାହାଙ୍କୁ ଯେ ଆନେ । ୧୫ ।
କହୁଦନ ରହିଲେ ଯେ ଗୁପୁତ ସ୍ତବେଣ ।
ଲୀଳା କରିବାକୁ କୃଷ୍ଣ କଲେକ ଭିଆଣ । ୧୬ ।
ସ୍ୱପ ଧନୁ ଗୋଟିକ ଯେ ଇନ୍ଦ୍ର ଆରାଧିଲେ ।
ବୈଷ୍ଣବ ଧନୁକୁ ପର୍ଶୁରାମ ହାତେ ଦେଲେ । ୧୭ ।
କୋଦଣ୍ଡ ଧନୁକୁ ରାମଚନ୍ଦ୍ର ହାତେ ନେଇ ।
ପିନାକ ଧନୁକୁ ନାରାୟଣ ଥିଲେ ବନ୍ଧି । ୧୮ ।
ଅଜଗ ଧନୁକୁ ଶିବ ବନ୍ଧିଲେ ହସ୍ତେଣ ।
ଗାଣ୍ଡୀମ ଧନୁ ଅର୍ଜୁନ ବନ୍ଧିଥିଲେ ପୁଣ । ୧୯ ।
ମୁଖର ସଙ୍ଗୀତା ଗୋପୀମାନେ ବଜାଇଲେ ।
ବଇଁଶୀ ଗୋଟିକ କୃଷ୍ଣହସ୍ତେ ବ୍ରହ୍ମା ଦେଲେ । ୨୦ ।
ନାଦର ବଇଁଶୀ ଗୋପକୃଷ୍ଣହସ୍ତେ ଦେଇ ।
ପତର କାହାଳୀ ବଂଶୀ ସାନ୍ଦକ ବଜାଇ । ୨୧ ।
ଏମନ୍ତ ହୋଇଣ ବଂଶୀ ହୋଇଲା ଭିଆଣ ।
ଏଥିର ମହିମା ବଡ଼ ଗୁପତଟି ଜାଣ । ୨୨ ।
ଏ ବେଣୁ ମନ୍ତ୍ର ନ ଜାଣି ବଜାନ୍ତି ଯେ ଜନ ।
ଚଉଦ କଲପ ନର୍କ ଗଡ଼ରେ ଜନମ । ୨୩ ।
ମନ୍ତ୍ର ଜାଣି ଶିଷ୍ୟ ଯେବେ ମୁରଲୀ ବଜାଇ ।
ଜାବଜ୍ଜେଣ ସୁଖୀ ମଲେ କୃଷ୍ଣପାଦ ପାଇ । ୨୪ ।

ଯନ୍ତ୍ର ଯେ ଗୋଟିଏ ଆଣି ମନ୍ତ୍ରକୁ ଲେଖିବ ।
ବସନ ଗୋଟିଏ ଦେବ ଯୋଗ ବଧି ହେବ । ୨୫ ।
ମୁରଲୀ ବେଣୁ ସଙ୍ଗୀତ ଶିଷ୍ୟକୁ ଯେ ଦେବ ।
ଏହୁ ବଧି କଲେଣ ଯେ ଶିଷ୍ୟ ହେଉ ଦେବ । ୨୬ ।
ହି ବଧି କରଣ ପାଞ୍ଚ ସ୍ୱର ଭଣାଇବ ।
ମୁରଲୀର ମନ୍ତ୍ରଗୋଟି ତହିଁରେ ଲେଖିବ । ୨୭ ।
ଓଁ ରାଧାଶ୍ୟାମ ରାଧା ସପ୍ତାକ୍ଷର ଧର ।
ଶ୍ୟାମ ଶ୍ୟାମ ରାଧେ ରାଧେ ମନ୍ତ୍ରକୁ ସୁମର । ୨୮ ।
ଶ୍ୟାମ ବୋଲି ରାଧାମୁଖେ ବଜାନ୍ତି ସଙ୍ଗୀତା ।
ଶ୍ୟାମ ରାଧେ ବୋଲଣ ଯେ ବଂଶୀରେ ଫୁଙ୍କି ତା । ୨୯ ।
ରାଧେ ଶ୍ୟାମ ବୋଲଣ ଯେ ତ୍ରୈଲୋକକୃଷ୍ଣ ବାଇ ।
ଶ୍ୟାମରାଧେ ବୋଲଣ ଯେ ସାତ୍ତ୍ୱିକ ଫୁଙ୍କଇ । ୩୦ ।

## ବଂଶୀ

| | | |
|---|---|---|
| ଓଁ | ରା | ଧା |
| ଶ୍ୟା | ମ | ରା |
| ଧା | ଶ୍ୟା | ମ |
| ଶ୍ୟା | ମ | ରା |
| ଧେ | ରା | ଧେ |

ଗୋପରେ ବଇଁଶୀ ଧ୍ୱନି କଲେ ଗୋପସୁତ ।
ଜନମ ଜନମେ ଅଟ ଗୋଲୋକ ଭଗତ । ୩୧ ।

ଏ ଗୋପକୁଳକୁ ତୁମ୍ଭେ ଏ ଭେଦ କହିବ ।
ତୁମ୍ଭେ ଗୁରୁରୂପ ହୋଇ ପଥ ଭିଆଇବ । ୩୨
ଗୋଲୋକ ଗୋପମହିମା କଲିରେ ହକତ ।
ଶୁଣ ହେ ସ୍ୱହାସ ଦାସ ଦ୍ୱାଦଶ ଭଗତ । ୩୩ ।
ସଙ୍ଗୀତାର ଅଧିକାଷ୍ଠ ମୁକୁନ୍ଦ ଅଟଇ ।
ମୁରଲୀର ମହିମା ତ ଗୋବିନ୍ଦ ରଖଇ । ୩୪ ।
ନାକର ବଇଁଶୀ ରଖ ଅନନ୍ତ ହସ୍ତର ।
ପତର କାହାଳୀ ବସ୍ତ୍ର ଥିବ ତୋ ସଙ୍ଗର । ୩୫ ।
ଦୀନ ଅଚ୍ୟୁତର କଥା ହୃଦେ ଧଣିଥିବ ।
ଏ ଗୋପକୁଳକୁ ତାର କଥା ରହିଥିବ । ୩୬ ।
ବେଣୁର ମହିମା ରଖ ବସ୍ତ୍ର ତୋ ହସ୍ତର ।
ଗୁପ୍ତେ କହିବ ଶିଷ୍ୟ ଭଗତି ଠାବର । ୩୭ ।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ଏକପଞ୍ଚାଶତ୍ ଗ୍ରନ୍ଥ

— ※ —

# ଦ୍ୱିପଞ୍ଚାଶତ୍ ଛାନ୍ଦ

ଶୁଣ ହେ ଯାଦବ ଦାସ ଗୁଞ୍ଜରୀ ବିସ୍ତର ।
ମେଦାଦୈତ୍ୟ ନାଶ ଗଲା ବ୍ରହ୍ମାର ଉଦର । ୧ ।
ମେଦାଦୈତ୍ୟ ଅସ୍ଥି ଗୋଟି ଗୁଞ୍ଜରୀ ଜନ୍ମିଲା ।
ସୃଷ୍ଟିକାଳେ ଅଗ୍ନି ଶିଖା ପ୍ରାୟେକ ଦଶିଲା । ୨ ।
ସେ ଗୁଞ୍ଜରୀ ପକ୍ଷି ପୁଣ ପଡ଼ିଲା ଭୂମିର ।
ଶରଧା କରଣ ବ୍ରହ୍ମା ଧଇଲେ ହସ୍ତର । ୩ ।
ସେହୁ ମାଳଗୋଟି କୃଷ୍ଣ ହସ୍ତେ ଦେଲେ ନେଇ ।
କପାଳେ ଖଞ୍ଜିଲେ କୃଷ୍ଣ ଚୂଳ ଯେ ବନାଇ । ୪ ।
ଦାମ ଯେ ସୁଦାମ ଗୋପ ଗୋପାଳଙ୍କ ସାର ।
ତାଙ୍କୁ ଆଜ୍ଞା ଦେଲେ ଖଞ୍ଜ ଚୂଳ ଯେ ଉପର । ୫ ।
ଗୋପୀଙ୍କ ବଲ୍ଲଭ ଦେଲେ ଗୋପାଳଙ୍କ ଶିର ।
ଗୁଞ୍ଜରୀ ମହିମା ପୁଣ ଏମନ୍ତ ପ୍ରକାର । ୬ ।
ବେଦ ସପ୍ତ ଧରଣ ଯେ ମନ୍ତ୍ରକୁ ଲେଖିବ ।
ଯନ୍ତ୍ର ଗୋଟି ଆଣି ଚନ୍ଦ୍ର ପୂଜା ବାଧ୍ୟ ଦେବ । ୭ ।
ଗୁଞ୍ଜରୀ ଯେ ଗୋପୀଜନ ସପ୍ତାକ୍ଷର କହ୍ନ ।
ବଲ୍ଲଭାୟ ନମ ଓଁ ମନ୍ତ୍ର ଅଟେ ଏହୁ । ୮ ।

## ଗୁଞ୍ଜରୀ

| | | | | | | |
|---|---|---|---|---|---|---|
| ଓଁ | ଗୁ | ଞ୍ଜ | ରୀ | ଗୋ | ପୀ | ଜ |
| ନ | ବ | ଲ୍ଲ | ଭା | ୟ | ନ | ମଃ |

ମନ୍ତ୍ର ନ ଜାଣିଣ ଯେହୁ ଗୁଞ୍ଜରି ବନ୍ଧନ୍ତି ।
ତେର ଜନ୍ମ ସେହୁ ପ୍ରାଣୀ ନର୍କ ଗତ ହୋନ୍ତି । ୯ ।
ମନ୍ତ୍ର ଜାଣି ଗୁଞ୍ଜରି ବନ୍ଧନ୍ତି ଯେତେ ନର ।
ଜୀବ ଅନ୍ତେ ପଶନ୍ତି ଯେ ଶ୍ରୀକୃଷ୍ଣର ପୁର । ୧୦ ।
ଯନ୍ତ୍ର ଲେଖି ମନ୍ତ୍ର ସ୍ଥାପି ଶିଷ୍ୟ ଶିରେ ଦେବ ।
ତେବେ ସିନା ଶିଷ୍ୟ ହୃଦେ ଭକତି ହୋଇବ । ୧୧ ।
ଚୂଳ ବନାଇବ ଯେ ଗୁଞ୍ଜରି ଚନ୍ଦ୍ରକାରେ ।
ଗୋପାଳ କୁଳ ଭାରତ ଓଡ଼ିଶା ଦେଶରେ । ୧୨ ।
ଗୁଞ୍ଜରି ବନ୍ଧିବ ପୁଣ ଗନ୍ଧାସ ବେଳେଣ ।
ପୂଜା କରୁଥିବ ତାଙ୍କୁ ସ୍ନାହ୍ୱାନ ସାଧଣେ । ୧୩ ।
ଶୁଚିବନ୍ତ ହୋଇ କରି ଗୁଞ୍ଜରି ବନ୍ଧିବ ।
ଦ୍ୱାଦଶ ଗୋପାଳ ଶୁଣ ଗୁଞ୍ଜରିର ଭାବ । ୧୪ ।
ଗୁଞ୍ଜରି ବନ୍ଧିଲେ ଜୀବହତ୍ୟା ପାପଶୁନ୍ୟ ।
ଗୁଞ୍ଜରି ବନ୍ଧିଲେ ଯେ ବିପତ୍ତି ଅଙ୍ଗୁ ଯାଏ । ୧୫ ।
ଗୁଞ୍ଜରି ଦର୍ଶନ ଯେହୁ ଜନ ନିତ୍ୟ କରେ ।
ଯମ କାଳଭୟ ତାଙ୍କୁ ଦେଖି କଣ ଡରେ । ୧୬ ।
ଗୋବିନ୍ଦ ପବନ ଯେ ଗୁଞ୍ଜରି ଅଧିକାର ।
ଅଚ୍ୟୁତ ରାମ ପବନ ଗୁପତ ବିଚାର । ୧୭ ।
ଗୁରୁଭକ୍ତିଗୀତା ତୁମ୍ଭ ହିତରେ ଲେଖିଲୁ ।
ଭଗତକୁଳଙ୍କୁ ଏହୁ ଧନ ରଖିଗଲୁ । ୧୮ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଦ୍ୱିପଞ୍ଚାଶତ୍ ଗ୍ରନ୍ଥ ।

*— X —*

# ତ୍ରିପଞ୍ଚାଶତ୍ ଛାନ୍ଦ

ଶୁଣ ହେ ହନୁଆନ ଦାସ ଗୁଞ୍ଜର ମହିମା ।
ଅନାଦି ପୁରୁଷ ଲୀଳା କି ଦେବା ଉପମା । ୧ ।
ଅନାଦି ପୁରୁଷ ଯେ ଆପଣା ହୃଦ ଗୁହିଁ ।
ନୟନରୁ ଲୋତକ ସେ ପଡ଼ିଲାକ ବହି । ୨ ।
ଅର୍କବର୍ଣ୍ଣ ହୋଇ ଲୁହ ପଡ଼ିଲାକ ତଳ ।
ତହୁଁ ଜାତ ହୋଇଲା ଯେ ଗୁଞ୍ଜ ବୋଲି ଫଳ । ୩ ।
ଶିର ତାର କଳାବର୍ଣ୍ଣ ଦେହ ରଙ୍ଗା ଦିଶି ।
ଏମନ୍ତ ହୋଇଣ ଲତା ଗୋଟିଏ ପ୍ରକାଶି । ୪ ।
ଦେହ ଯେ ଧବଳ ଶିର ଶ୍ୟାମଳ ଦିଶଇ ।
ବାମନୟନରୁ ଏହୁ ଫଳି ଜାତ ହୋଇ । ୫ ।
ସର୍ବାଙ୍ଗ ଧବଳ ଦିଶେ ଏକଗୋଟି ହୋଇ ।
ଆରଗୋଟି ଫଳ ପୁଣ ଏମନ୍ତ ଦିଶଇ । ୬ ।
ସର୍ବାଙ୍ଗେ ଦିଶଇ କଳା ଏକ ଫଳ ତହିଁ ।
ସ୍ୱର୍ଣ୍ଣବର୍ଣ୍ଣ ଗୁଞ୍ଜ ଦିଶେ ବୃକ୍ଷେ ଫଳି ଥାଇ । ୭ ।
ସେହୁ ଲତାଗୋଟି କିଛୁ ଦିନରେ ସେ ହେଲା ।
ଥାବରମାନଙ୍କେ ସେହୁ ବିଖ୍ୟାତ ହୋଇଲା । ୮ ।
ଆଦି ସେ ଅନନ୍ତ ସତ୍ୟ ଚୈତନ୍ୟର ଶେଷେ ।
ଗୋଲୋକର ପୋଏ ଜାତ ଗୋପପୁର ଅଂଶେ । ୯ ।
ଧବଳ ମାଳକୁ ଚୂଳମୂଳରେ ଖଞ୍ଜିଲେ ।
ତଥିର ଉପରେ ରଙ୍ଗମାଳ ପୁଣ ଦେଲେ । ୧୦ ।
ତଥିର ଉପରେ କଳା ମାଳିକ ଖଞ୍ଜିଣ ।
ତଥିପରେ ଗଛର ସେ ମାଳ ବେଢ଼ାଇଣ । ୧୧ ।

ସମସ୍ତ ଗୋପାଳ ଯୋଏ ଶିର କଣ୍ଠେ ବନ୍ଧ ।
ଗୁଞ୍ଜର ରୂପକୁ ବେଶ ସୁନ୍ଦର ଦିଶଇ । ୧୨ ।
ମନ୍ତ୍ର ଜାଣି ଗୁଞ୍ଜମାଳ ବନ୍ଧନ୍ତି ଦେହରେ ।
ଯମଦଣ୍ଡ କାଳମାନ ନ ଲାଗଇ ତାରେ । ୧୩ ।
ନ ଜାଣିଣ ଗୁଞ୍ଜମନ୍ତ୍ର ଦେହରେ ବନ୍ଧଇ ।
ନର୍କେ କୀଟ ସାତ ଜନ୍ମ ଯାଏ ସେହୁ ହୋଇ ।୧୪ ।
ସପ୍ତାକ୍ଷର ଲେଖିଣ ଯନ୍ତ୍ରକୁ ବସାଇବ ।
ସପ୍ତକୋଠି ବସାଇଣ ପୂଜାବଧି ଦେବ । ୧୫ ।
ମନ୍ତ୍ର ଯନ୍ତ୍ର ପୂଜା ଦେଇ ଶିଷ୍ୟ ଅଙ୍ଗେ ଦେବ ।
ତେବେ ସେ ଶିଷ୍ୟ ଚହ୍ନିଣ ସେ ଗୁଞ୍ଜ ବନ୍ଧିବ । ୧୬ ।
ଓଁ କୃଷ୍ଣ ଗୁରୁଭ୍ୟଂନମ ମନ୍ତ୍ର ଏହୁ ହୋଇ ।
ଗୁଞ୍ଜମାଳ ବନ୍ଧିବ ଯେ ମୁଖେ ଏହା କହି । ୧୭ ।
ତଇଲ କୁଙ୍କୁମ ବେଳ ନ ଯୋଡ଼ିବ ଦେହେ ।
ତଇଲ କୁଙ୍କୁମେ ତାର ଜ୍ୟୋତି ନାଶ ହୁଏ । ୧୮ ।
ଅଶଉଚ କାଳରେ ଯେ ଅଙ୍ଗରେ ନ ଥିବ ।
ରାତ୍ରାପ ବେଳରେ ଏହୁ ମାଳ ଯେ ଖଞ୍ଜିବ । ୧୯ ।

## ଗୁଞ୍ଜମାଳ

| | | | | | | |
|---|---|---|---|---|---|---|
| ଓଁ | କୃ | ଷ୍ଣ | ଗୁ | ଭ୍ୟଂ | ନ | ମ |

ସତ ସତ ଅଙ୍ଗରେ ଯେ ଏମାଳ ଲମ୍ବାଇ ।
ସେ ଜନକୁ ଏହି ମାଳ ବର ପୁଣ ଦେଇ । ୨୦ ।

---

୧୨—୧ ବନ୍ଧନ୍ତି ହୃଦୟରେ (ଖ), ୧୭—୧ କୃଷ୍ଣାୟ ପଢ଼ିବାକୁ ହେବ;

ରାଧା ବୃହିଁ ଏକ ହେଲେ ଶ୍ରୀକୃଷ୍ଣ ଚୂଳରେ ।
ଧବଳ ଅଙ୍ଗକୁ ଛାର ରଖିଲେ ଅଙ୍ଗରେ । ୨୧ ।
ଏଣୁକରି ରାଧାକୃଷ୍ଣ ଅଙ୍ଗକୁ ସୁନ୍ଦର ।
ଗୋପପୁଅମାନ ଏହା ବହିଲେ ହୃଦର । ୨୨ ।
ଗୁପ୍ତ ଅଧିକାରୀ ଅଟେ ଯାଦବ ଉତ୍ଥାନ ।
ଅଚ୍ୟୁତର ବଚନ ହେବ ଯେବେ ବାର ଜଣ । ୨୩ ।
ରାମଚନ୍ଦ୍ର ସୁଦସ୍ଥାରେ ଅଚ୍ୟୁତ କରୁଣା ।
ଗୋ'ପ ନାଚ ଗୋପକଥା ତୁମ୍ଭଙ୍କୁ କି ବଣା । ୨୪ ।
କଳିଜନ ଭଗତ ନିମନ୍ତେ ଏତୁ ପାଠ ।
ବୁଝିଲ ଶିଷ୍ୟଙ୍କୁ ଏତୁ ଅଟେ ବଡ଼ ମିଠ । ୨୫ ।
ନ ବୁଝିଲ ଶିଷ୍ୟଙ୍କୁ ଏ ବିମୁଖ ଲାଗଇ ।
ପଣ ଯେ ଗୁରୁଆ ଶିଷ୍ୟ ପାଇବଟି କାହିଁ । ୨୬ ।
ବାର ଯେ ବରଷ ବାରଦିନ ଖଟିଥିବ ।
ଏ ଗ୍ରନ୍ଥର ଭେଦ ଅବା ସେ କିଛି ପାଇବ । ୨୭ ।
ମୁକୁନ୍ଦ ଯାଦବ ସେବା ରାମର ଚରଣ ।
ରାମ ସେବା କରଅଛୁ ଅଚ୍ୟୁତ ଚରଣ । ୨୮ ।
ଅଚ୍ୟୁତ ଦାସକୁ କଲେ ଶ୍ରୀକୃଷ୍ଣ କରୁଣା ।
ନେମ୍ବାଳ ଉତ୍ତର ପାଶେ ଗ୍ରାମଃ ତଳକଣା । ୨୯ ।
ସେହୁ ଗ୍ରାମେ କୃଷ୍ଣ ମୋତେ କଲେକ କଟାକ୍ଷ ।
ଗୁରୁଭକ୍ତିଗୀତା ମୁହିଁ କହିଲି ପ୍ରତ୍ୟକ୍ଷ । ୩୦ ।
କୋଟିକରେ ଗୋଟିକକୁ ଏ ପାଠ କହିବ ।
ଅଶରଧା ଅଭକ୍ତକୁ ଏ ଭେଦ ନ ଦେବ । ୩୧ ।
ଧନ ଲୋଭ ବଡ଼ପଣେ ଏ ଗ୍ରନ୍ଥ ଯେ କହେ ।
ଅପ୍ରମାଦେଣ ବିପତ୍ତି ତାହାକୁ ଯେ ହୋଏ । ୩୨ ।
ଇତି ଶ୍ରୀଗୁରୁଭକ୍ତିଗୀତା କଥନେ ନାମ ଦ୍ୱିପଞ୍ଚାଶତ୍ତମ ଛନ୍ଦ ।

# ଚତୁଃପଞ୍ଚାଶତ୍ ଛାନ୍ଦ

ପବନ ଦାସ କରଯୋଡ଼ି । ପୁଚ୍ଛଇ ଗୁମ୍ଫ ପାଦେ ପଡ଼ି ।୧।
ମୟୁର ପକ୍ଷୀ କାହୁଁ ଜାତ । ଶ୍ରୀଗୁରୁ ପରମ ଗୁରୁ ତ ॥
ଶୁଣ ସୁତର ସୁତ ଚଣ୍ଡ । ହେତୁଥାନ ମୁକୁନ୍ଦ ଅନନ୍ତ ॥
ଆଦ ଅନନ୍ତ ଯୁଗ ଯେବେ । ବ୍ରହ୍ମାଙ୍କ ସର୍ଜନାର ସେବେ ॥
ନୟନୁ ଲୋତକ ଖସିଲା । ମୟୁର ପକ୍ଷୀ ସେ ହୋଇଲା ॥
ଆଦ ଅନନ୍ତ ସତ୍ୟ କଲ୍ପ । ତ୍ରେତୟା ଯୁଗ ଶେଷ ହେଲ ॥
ଦ୍ୱାପର ହୋଇଲା ପ୍ରବେଶ । ଜନମ ହେଲେ କୃଷ୍ଣ ଅଂଶ ॥
ବତ୍ସା ରଖିଣ ବନେ ଗଲେ । ସେ ପକ୍ଷୀ ବନସ୍ତେ ଦେଖିଲେ ॥
ଯତନ କରି ତାହା ଆଣି । ଦାମ ସୁଦାମ ସଖାପୁଣି ॥
ସୁବାହୁ ସୁବଳ ଶ୍ରୀବତ୍ସ । ସଖା ସମୂହ ଗୋପ ମୋକ୍ଷ ।୧୦।
କୃଷ୍ଣର ଚୁଳରେ ଖଞ୍ଜିଲେ । ବିବିଧ ପୁଷ୍ପ ଚଢ଼ି ଦେଲେ ॥
ଅଳକାବଳି କେ ବନାଇ । କୃଷ୍ଣର ଲଲାଟେ ଖଞ୍ଜଇ ॥
କେ ପୁଣ ବନାନ୍ତି ତଗସ । ଧଇଲେ ଶ୍ରୀକୃଷ୍ଣର ପାଶ ॥
କେ ପୁଣି ବିଚଣା ବନାଇ । କୃଷ୍ଣଙ୍କୁ ପବନ ଢ଼ାଳଇ ॥
ପଙ୍ଖା କରନ୍ତି କେ ଯତନ । ଦୂରରୁ ଦଅନ୍ତି ପବନ ।୧୫।
କେ ପୁଣ ଛଟ କମ କରି । କୃଷ୍ଣର ଗ୍ରୀମୁରେଣ ଧରି ॥
କେ ପକ୍ଷୀ ମୂଳ ଏକ କରି । ବେଢ଼ାକୁ ବେଢ଼ ପଛ କରି ॥
ଅଲମ୍ବ ଛଟ କେ ବନାଇ । କୃଷ୍ଣଗ୍ରୀମୁରେ ଉଚ୍ଚ ହୋଇ ॥
ବଇଁଶୀ ମାନେ କେ ଲମ୍ବାଇ । ସମସ୍ତେ ବେଢ଼ିଣ ବଜାଇ ॥
କେ ଶିଙ୍ଗା ମାନଙ୍କେ ଲମ୍ବାନ୍ତି । କେ ବାହୁମୂଳେ ଖଞ୍ଜି ଥାନ୍ତି ।୨୦।
କେ ରେଜୁ ଶିରରେ ବାନ୍ଧିଣ । ନାନା ବିନୋଦ ବେଶ ପୁଣ ॥
କେ କ୍ଷୁଦ୍ର ତଗସ କରନ୍ତି । କୃଷ୍ଣ ଗ୍ରୀମୁରେ ଧରି ଥାନ୍ତି ॥
ଏ ପକ୍ଷୀ ମହିମା ଅପାର । କୃଷ୍ଣର ଅଙ୍ଗରୁ ବାହାର ।୨୩।

ନହୁଡ଼ ଅଗରେ ବାନ୍ଧଣ । କେ ପୁଣ ଧରନ୍ତୁ ପାଶେଣ ॥
ମୟୂର ମୂଠା ହସ୍ତେ ଧର । ଆନନ୍ଦେ ନୃତ୍ୟ ଗୀତ କର ।୨୫।
ଶ୍ୟାମ ଶ୍ୟାମ ଯେ ବୋଲି କହ । ଚିତ୍ରକ ପକ୍ଷୀ ନମଃ କର ॥
ଓଁ ମିଶ୍ରିଣ ବାରକ୍ଷର । ମନ୍ତ୍ରକୁ ସୁମର ମନର ॥
ମଣ୍ଡଳ ଗୋଟିଏ ବେଢ଼ାଇ । ଅଳତେ ବାରଣ୍ନ୍ୟ ଥୋଇ ॥
ମନ୍ତ୍ରକୁ ଚହିଁରେ ଲେଖିବ । କୃଷ୍ଣ ଅକ୍ଷର ମଧ୍ୟେ ଥିବ ॥
ମୟୂର ପକ୍ଷୀକି ରଖିବ । ବସ୍ତ୍ରଗୋଟିଏ ଯତ୍ନେ ଦେବ ।୩୦।
ତାମ୍ବୁଲ ଚନ୍ଦନ ଯେ ଫୁଲ । ପୂଜା କରିବ ଯେ ଅମୂଲ୍ୟ ॥




ତଗ୍ରସ ଚୂଳ ଆଦ ଯେତେ । ଶିଷ୍ୟକୁ ଟେକି ଦେବ ହସ୍ତେ ॥
ମନ୍ତ୍ର ଯନ୍ତ୍ର ଯେ ତନ୍ତ୍ର କହୁ । ଶିଷ୍ୟ ବନ୍ଧିବ ହେତୁ ହୋଇ ॥
ଏ ଭେଦ ନ ଜାଣି ବନ୍ଧିବ । ହେଲ ସେ କର ପକାଇବ ॥
ମନ୍ତ୍ର ନ ଜାଣି ଯେଉଁ ପ୍ରାଣୀ । ଚନ୍ଦ୍ରକା ଚୂଳ ବନ୍ଧେ ପୁଣି ।୩୫।
ଶଏ ଜନମ ନର୍କେ ଜାତ । ଯେ ନର ନ ଜାଣି ବନ୍ଧେ ତ ॥
ମନ୍ତ୍ର ଜାଣିଣ ଯେ ବନ୍ଧଇ । ଯମରଦଣ୍ଡ ତାକୁ ନାହିଁ ॥
ମତ୍ସ୍ୟ ମାଂସ୍ୟ ଭୋଗ କର । କୁଙ୍କୁମ ପରସ୍ତି ଶ୍ରୀ ହର ॥

ଯେ ନର ଏ ପକ୍ଷୀ ବନ୍ଦନ୍ତି । ଦଇତ୍ୟ ଦାନବ ଜନ୍ମ ପାନ୍ତି ॥
ତରସ ଅଧିକାର ପୁଣ । ମୁକୁନ୍ଦ ଦାସର ପ୍ରମାଣ ।୪୦।
ଚୁଲର ଅଧିକାର ପୁଣ । ଦାସ ଯେ ଅଟନ୍ତି ପବନ ॥
ପଙ୍ଖାର ଅଧିକାର ଯେତେ । ଅନନ୍ତ ରଖ ତୁମ୍ଭ ଚିତ୍ତେ ॥
ଆଲମ୍ବ ଛତ୍ର ଅଧିକାର । ହୁଡ଼ଆନ ଦାସର ବସ୍ତୁର ॥
ମୟୂର ଦଉଡ଼ି ବନ୍ଧଣ । ଯାଦବ ଅଧିକାର ପୁଣ ॥
ବିଚଣା ଅଧିକାର ପୁଣ । ବାଳକ ଦାସର ପ୍ରମାଣ ।୪୫।
ବଇଁଶୀ ଅଧିକାର ଯେତେ । ଗୋବିନ୍ଦ ଦାସର ପୁରତେ ॥
ଛତର ଅଧିକାର ମାନ । ବସ୍ତ୍ର ଘେନଣ ଧ୍ରୁବ ଛନ ॥
ଅଳକାବଳି ଯେତେ କମ । ଏ ସବ ଦାସ ଯେ ସୁଦାମ ॥
ସ୍ୱାତ ତରସମାନଙ୍କର । ଆନନ୍ଦ ଅଟ ଅଧିକାର ॥
ହସ୍ତ ମୁଠାରେ ସବ ଯେତେ । ବୃନ୍ଦାଦାସ ହେ ରଖ ଚିତ୍ତେ ।୫୦।
ଟାସ୍ୱାର ଅଧିକାର ମାନ । ମଧୁଦାସ ହେ ଘେନ ମନ ॥
ପୂର୍ବ ଜନମ ଗୋପପୁର । ଥିଲେ ଯେ ଶ୍ରୀକୃଷ୍ଣ ସଙ୍ଗର ॥
ଗଉର ଚନ୍ଦ୍ର ସଙ୍ଗେ ଜାତ । କୀର୍ତ୍ତନ ସବରେ ହୁନ୍ତ ॥
ଓଡ଼ିଶା ଦେଶରେ ସ୍ୱବାସ । ପ୍ରକାଶ କର ଗୋପ ଅଂଶ ॥
ତୁମ୍ଭଙ୍କୁ ଦେଖିଣ ଶିଖିବେ । ପାଷଣ୍ଡ ଜନ ସେ ଶୁଣିବେ ।୫୫।
ଓଡ଼ିଆ ଗୀତ ବୃନ୍ଦାବନ । କ୍ଷେମଟା ଭାନ ମାନ ଘେନ ॥
ଓଡ଼ିଶା ଗୋପାଳ ଶିଖିବେ । ତୁମ୍ଭଙ୍କୁ ଗୁରୁ ପୂଜା ଦେବେ ॥
ତୁମ୍ଭେ ଯେ ସ୍ୱମପାଦେ ସେବ । ସ୍ୱମ ତ ଅଚ୍ୟୁତ ପୂଜିବ ।୫୮।

ଇତି ଶ୍ରୀଗୁରୁଭକ୍ତଗୀତାକଥନେ ନାମ ଚତୁଃପଞ୍ଚାଶତ୍ ଛାନ୍ଦ ।

# ପଞ୍ଚପଞ୍ଚାଶତ୍ ଛାନ୍ଦ

ବାଳକ ଗୋବିନ୍ଦ ଦାସର । ମନର ସଂଶୟ ଯେ ହର ।୧।
ଟୋପି ଜନମ ମନ୍ତ୍ର ଯେତେ । ଗୁରୁଙ୍କ ବଚନ ପରତେ ॥
ଶୁଣ ହେ ବାରଟିଆ ଦାସ । ସନ୍ନ୍ୟାସ ଦାସ ହେ ହରଷ ॥
ଚନ୍ଦ୍ର ଠାବରୁ ଲୁଅ ଜାତ । ଭୂମିରେ ପଡ଼ିଲା ସେହୁ ତ ॥
ବୃକ୍ଷ ଗୋଟିଏ ଜନମିଲା । ତହିଁରୁ ପୁଷ୍ପ ଉପୁଜିଲା ।୫।
ସେ ପୁଷ୍ପ ଦେବଧର୍ମ୍ମ ସୃଷ୍ଟି । ହରଷ ଚତ୍ତେ ତାକୁ ନେଇ ॥
ବରଣ୍ଟ ନାରାୟଣ ପୁଣ । ସେ ଟୋପି କଲେକ ନିର୍ମ୍ମାଣ ॥
ଚନ୍ଦ୍ର ଠାବରୁ ଏକଢାଳ । ପଡ଼ିଲା ବୃକ୍ଷର ଯେ ତଳ ॥
କୁଷ୍ମାଣ୍ଡ ବୋଲି ଏକଜାତ । ଅମଳ ବସ୍ତୁ ଏ ସମ୍ଭୂତ ॥
ଧର୍ମ୍ମ ବରଣ୍ଟ ନାରାୟଣ । ଟୋପି ଯେ ଅମଳାଣ ପୁଣ ।୧୦।
ପାଟ ଯେ ଟୋପି ଏଣୁ ହୋଏ । ସୁତେ ଶୁକଳ ଟୋପି କହେ ॥
ନେଲୀ ପୁଆମ ଆକୁଆଣୀ । ଲିପି ହଳଦୀ ଢ଼ାଉ ପୁଣି ।୧୨।
ପ୍ରଥମେ ଗଜ ବୋଲି କଲେ । ଆଗ ସମ୍ମୁଖକୁ ଢ଼ାଳିଲେ ॥
କର୍ଣ୍ଣକୁ ସ୍ଥାନ ଯେ ରଖିଣ । ଉପରେ ଫୁଲ ଯେ ନିର୍ମ୍ମାଣ ॥
ଦୁଗାଏ ଭଗବତ କଲେ । କର୍ଣ୍ଣକୁ ଘୋଡ଼ାଇ ରଖିଲେ ।୧୫।
ଭୃଗାଏ ମଣ୍ଡଳ କରଣ । ଟୋପି ଗୋଟିଏ ନିର୍ମ୍ମାଣିଣ ॥
ତ୍ରିକୋଣ ପ୍ରାଏ ଶଙ୍ଖ କରି । କଣ୍ଠକୁ ପଡ଼ିଲା ବିସ୍ତାର ॥
ଉପରେ ସୁଦ ନାନା ବର୍ଣ୍ଣ । ଛନ୍ଦଣ ରଖିଲେ ଯତନ ॥
ଖରକ୍ତ ଟୋପି ବନାଇଲେ । ଏ ସୂର ଯତନେ ରଖିଲେ ॥
ଖରଣ୍ଟ ବକ୍ଷ ଶିରେ ନେଇ । ଗଜ ଯେ ବେନ ଖୋଞ୍ଚି ଦେଇ ।୨୦।

---

୧୨—୧ ପୁଆମ ଅଚ୍ଛୁ (କ) ;
୧୨—୨ ଠାଉ ପୁଣି (ଖ, କ) !

ମଣ୍ଡଳ ଟୋପି ଶିବ ଶିର । ବ୍ରହ୍ମା ଯେ ଦେଇ ଯୋଡ଼େ କର ।୨୧।
ବରକ୍ତ ଟୋପି ବ୍ରହ୍ମାଶିର । ରଖିଲେ ଆପଣା ଠାବର ॥
ଦେବଗଣଙ୍କ ଠାରେ ପୁଣ । ଭଗବତ ଟୋପି ରଖିଣ ॥
ଏ ଗୁରୁ ଭେଖକୁ ଅନାଇ । ବହୁତ ଭେକ ଜାତ ହୋଇ ॥
ସତ୍ୟ ତ୍ରେତୟା ବେଦ ଯୁଗ । ଦ୍ୱାପର ଯୁଗ ଗଲେ ଶେଷ ।୨୫।
କଳିଯୁଗର ଶେଷ ପାଇଁ । ଗ୍ରମାନନ୍ଦ ଯେ ଜାତ ହୋଇ ॥
ବୃନ୍ଦାବନେ ନମାନନ୍ଦ ଜାତ । ବିଷ୍ଣୁ ଶ୍ୟାମ ଯେ ତୃତୀୟେ ତ ॥
ମାଧ୍ୱାଗ୍ୟର୍ଯ୍ୟ ଯେ ଚତୁର୍ଥେଣ । ଏ ଗୁରୁ ଜନମ ମଧ୍ୟେଣ ॥
ବରକ୍ତ ଟୋପି ଗ୍ରମାନନ୍ଦ । ଶିରରେ ବହିଲେ ଆନନ୍ଦ ॥
ଗଜ ଯେ ବେନ ଟୋପି ଜାଣ । ନମାନନ୍ଦ ଯେ ମସ୍ତକେଣ । ୩୦ ।
ମଣ୍ଡଳ ଟୋପି ବିଷ୍ଣୁ ଶ୍ୟାମ । ଶିରରେ ବହୁଣ ଉତ୍ତମ ॥
ମାଧ୍ୱାଗ୍ୟର୍ଯ୍ୟ ଯେ ଭଗବତ । ଏ ଟୋପି ବହିଲେ ଶିରେତ ॥
ଏମନ୍ତ କହନ୍ତି ଅନ୍ତେ । ତାଙ୍କର ଶିଷ୍ୟ ଯେ ପୃଛନ୍ତେ ॥
ଏ ଭେଦ ତାହାକୁ କହୁଣ । ଭେକ ଯେ ଦେଲେ ତାକୁ ପୁଣ ॥
ଏମନ୍ତ ବୈଷ୍ଣବ ପ୍ରକାଶ । ଶୁଣ ହେ ତୁମ୍ଭେ ବାରଦାସ ।୩୫।
ଗୋପାଳ କୁଳ ଶିଷ୍ୟ କର । ଶୁଣ ହେ ତହିଁର ବିସ୍ତର ॥
ଘନ୍ତରେ ମନ୍ତ୍ରକୁ ଲେଖିବ । ବସ୍ତ୍ର ଯେ ପୁଜା ବିଧି ଦେବ ॥
ନମାନନ୍ଦଙ୍କ ସୁମରଣ । ଗଜେନ୍ଦ୍ର ଟୋପି ଯେ ରଖିଣ ॥
ମନ୍ତ୍ର ପଢ଼ିଣ ଶିରେ ଦେବ । ଶିଷ୍ୟର ଉଚନ୍ତ ହୋଇବ ॥
ମନ୍ତ୍ର ନ ଜାଣି ଭେକ ବନ୍ଧ । ତନ ଜନମ ଗଣ୍ଡ ହୋଇ ।୪୦।
ମନ୍ତ୍ର ଜାଣିଣ ଟୋପି ବନ୍ଧେ । ଦୁସ୍ତର ତା ଅଙ୍ଗେ ନ ଥାଏ ॥
ଅମଳାଏଣ ଟୋପି ପୁଣ । ବହନ୍ତି ଭଗତର ଗଣ ॥
କଳିଯୁଗରେ ଟୋପି ବଡ଼ । ଦେଖିଲେ ତରିବେ ସେ ମୂଢ଼ ॥
ପଣ୍ଡିତ ସନ୍ନ୍ୟାସ ଜାଣନ୍ତି । କଳିର ଜନ ଦେଖି ଗତ ॥

---

୨୧—୨ ବ୍ରହ୍ମା ଯୋଡ଼ିଣ ବେନକର (କ) ;

ଅଷ୍ଟ ତାଳକ ଚଉତନା । ଏ ଗଜ ବେଢର ଲକ୍ଷଣ ।୪୯।
ପାଞ୍ଚ ପାଞ୍ଚ ଯେ ବେଢ କର । ଉପରେ ତ୍ରିଗୁଣ ଯେ ଧର ॥
ଓଁ ହର ବ୍ରହ୍ମା ବୋଲି ପୁଣ । ବସନାୟ ଯେ ସୁମରଣ ॥
ନମ ଯେ ତ୍ରିକୋଣେ ବସାଇ । ଉପରେ ଅକ୍ଷର ନ ଥୋଇ ॥
ଏଗାର ଅକ୍ଷର ସୁମର । ଏ ଝୋପି ମନ୍ତ୍ରର ବିସ୍ତର ॥

ଝୋ ମଃ ପି

| | | | | |
|---|---|---|---|---|
| ଓଁ | ହ | ର | ବ୍ର | ହ୍ମା |
| ବ | ସ | ନା | ୟ | ନ |

ଝୋପିର ଅଧିକାର ମାନ । ମୁକୁନ୍ଦ ହସ୍ତରେ ପ୍ରମାଣ ।୫୦।
ଏ ଚଉତୁନା ଅଧିକାର । ଅନନ୍ତ ଦାସ ତୋ ଠାବର ॥
ଗୋପ ଗୋପାଳ ଭେଖ ଏହି । କୃଷ୍ଣଙ୍କୁ ବ୍ରହ୍ମା ପୂଜନ୍ତି ॥
କୃଷ୍ଣର ଅଂଶ ଗୋପ ଯୋଏ । ଝୋପି ଚଉତୁନା ଶିରେ ଶୋହେ ॥
ଏଣୁଟି ତୁମ୍ଭେ ସାର ହେଲ । ଝୋପି ଚଉତୁନାକୁ ବହିଲ ॥
ଅନନ୍ତ ଗୋପାଳ ବନ୍ଧଣ । ଗୋପରେ ଯେତେ ଶାଖାଗଣ ।୫୧।
ନନ୍ଦର ବଂଶେ ତୁମ୍ଭେ ଜାତ । ଗୋପାଳ କୁଳରେ ମୁଁ ଖ୍ୟାତ ॥
ମଣ୍ଡ ଯନ୍ତ୍ରର କଥାମାନ । ଶୁଣିଲ ଧନ୍ୟ ହୋ ଜୀବନ ॥
ଏଣୁଟି ତୁମ୍ଭେ ସାର ହେଲ । ଗ୍ରହ୍ମାସ ଲୀଳାରେ ମଜ୍ଜିଲ ॥
ନାମ କୀର୍ତ୍ତନେ ଦିନ ହର । ଜନମ ସ୍ୱର୍ଗ ଯେ ତାହାର ॥
ଯେ ଶିଷ୍ୟ ଗୁରୁ ସେବା କରେ । ତା ଭାଗ୍ୟ ଅନ୍ତ କେବା କରେ ।୬୦।
ମଣ୍ଡ ଯେ ଗୁରୁକୁ ପଚ୍ଚାର । ବୀଜ ସେ ବୋଲିଣ ବିସ୍ତର ।୬୧।

---

୪୯-୧—ଅଷ୍ଟ ତାଳକ ଚଉତୁନା (ଖ);
୬୧-୨—ବୋଲିଣ ଆଦୋର (କ);

ଗୁରୁଙ୍କୁ ମନ୍ତ୍ର ନ ପୁଚ୍ଛଇ । ଅଗାଢ଼ ସେ ଶିଷ୍ୟ ଅଟଇ ॥
ଗୁରୁଙ୍କୁ ପୂଜା କରି ତାର । ମନ୍ତ୍ର ଯନ୍ତ୍ରରେ ତତପର ॥
ଜ୍ୟୋତ ସମାଧି ସ୍ଥିତ୍ୟା ଶିଖେ । ତା ପୁଣ୍ୟ କେବା କହୁ ମୁଖେ ॥
ଜ୍ୟୋତିରାନନ୍ଦ ଆତ୍ରେ ପୁଣ । ଦବା ନଶିରେ ଷଣେ ଷଣ ।୬୫
ତେବେ ତ ଜନମ ସୁଫଳ । ଏ ବାକ୍ୟ କେଷ୍ଟ ତ ସେ ଫଳ ॥
ଗୋପାଳ ରୂପକୁ ଭଜଣ । ଅଚ୍ୟୁତ ମାଗଇ ଶରଣ ।୬୬।

ଇତି ଶ୍ରୀଗୁରୁଭକ୍ତଗୀତା ଜଥନେ ନାମ ପଞ୍ଚପଞ୍ଚାଶତ୍ ଛନ୍ଦ



# ଷଟ୍ ପଞ୍ଚାଶତ୍ ଛାନ୍ଦ

ହନୁଆନ ପବନର କଥା । ଗୁରୁ ଫେଡବା ମନୁ ବ୍ୟଥା ।୧।
କାଛଟା କ ରୂପେ ଭଆଣ । ଏ କଥା ଶୁଣିମା ଶ୍ରବଣ ।।
ସ୍ୱାସ ଦାସରେହେଁ ବଡ଼ । ଏକଥା ଅଟେ ବଡ଼ ଗୁଢ଼ ।।
ଅନନ୍ତ ବାସୁକି ପାତାଳ । ଧରଣ ନାମକୁ ମଣ୍ଡଳ ।।
ଅଣ୍ଡାରେ ନାଗ ଏକ ବାନ୍ଧ । କୌପୁନି ପାତାମ୍ବର ପିନ୍ଧ ।୫।
ଅନ୍ଧ ଗୋଟାଏ ଅଣ୍ଡାରେଣ । ନେହା ଯେ କୌପୁନି ପିନ୍ଧଣ ।।
ଶିବ ଏମନ୍ତ ପିନ୍ଧଛନ୍ତି । ନାମକୁ ଧ୍ୟାନ ଯେ କରନ୍ତି ।।
ନାଗ ପ୍ରାସ୍ୱେକ ସୂକ୍ଷ ଡୋର । ବିଷ୍ଣୁ ଯେ ଅଣ୍ଡାରେ ପ୍ରହର ।।
ସୂକ୍ଷରେ ବସନ ପିନ୍ଧଣ । ନିବନ୍ଧି କଲେକ ଭଆଣ ।।
ଓଳ ଦେବଙ୍କୁ ବ୍ରହ୍ମା ଦେଇ । ପିନ୍ଧାଇ ପୂଜା ଯେ କରାଇ ।୧୦।
ଅର୍ଦ୍ଧବନ୍ଧ ଯେ କଉପୁନି । ବାସୁକି ଅଛନ୍ତି ଯେ ଘେନି ।।
କୌପୁନି ନାଗବନ୍ଧ ପୁଣ । ଶିବ ଯେ ବନ୍ଧଛନ୍ତି ଜାଣ ।।
ବୀରବନ୍ଧ ଯେ କୌପୁନି । ବିଷ୍ଣୁ ଅଛନ୍ତି ତାହା ଘେନି ।।
ସୂକ୍ଷରେ ଆଡ଼ ବନ୍ଧ ପୁଣ । ସୂକ୍ଷରେ କୌପୁନି କରଣ ।
ବ୍ରହ୍ମା ଯେ ପିନ୍ଧିଲେ କଟୀର । ଏ ଗୁଣ ବ୍ରହ୍ମା ଭଆଣର ।୧୫।
ସତ୍ୟ ଯୁଗର ମୁନିମାନେ । ଏ ଭେକ ବନ୍ଧିଲେ ଯତନେ ।।
ତ୍ରେତୟା ଯୁଗେ ବାନରେଣ । ଏ ଭେକ ବନ୍ଧିଲେ ଯତନ ।।
ଦ୍ୱାପରେ ଗୋପର ଗୋପାଳେ । ଏ ଭେକ ବନ୍ଧିଲେ ମଣ୍ଡଳେ ।।
କଳିରେ ଗୁରୁ ବଇଷ୍ଣବ । ବନ୍ଧିଲେ ଆନନ୍ଦ ଯେ ଭାବ ।।
ରାମାନନ୍ଦ ଯେ ନିମାନନ୍ଦ । ବିଷ୍ଣୁ ଶ୍ୟାମ ଯେ ମାଧ୍ୱାଚାର୍ଯ୍ୟ ।୨୦।
ମୁନି ଯେ ବନ୍ଦ ନବର୍ତ୍ତିନ୍ତ । ହନୁମାନ ଯେ ଅଟେ ଯତି ।୨୧।

---

୨୧-୧ —ବନ୍ଦ ବନ୍ଧ ତନ୍ତ୍ର (ଖ);

ଗୋପାଳ ନପୁଂସକ ବେଶ । ବୈରାଗୀ ରୂପ ସେ ଗୋସାଇଁ ॥
ବନ୍ଧନ୍ତୀ ନଦୀ ବନ୍ଧ ଦେଲେ । ବୈରାଗୀ ଏଣୁ ବୋଲାଇଲେ ॥
ଏ ରୂପ ସର୍ବ ଦାସ୍ଯ ଜାତ । ବୈରାଗୀ ବସ୍ତୁତ ବସ୍ତୁତ ॥
ଜଟା ସେ ଶିରରେ ବନ୍ଧଣ । ନାରାୟଣ ସେ ସୁମରଣ । ୨୫ ।
ଫଳ ସେ ମୂଳକୁ ଭକ୍ଷିଲେ । ଶ୍ରୀରାମ ନାମ ସୁମରିଲେ ॥
ଦ୍ୱାପରେ କ୍ଷୀର ସେ ଭକ୍ଷିଣ । ବୃନ୍ଦାବନରେ ଜପେ ପୁଣ ॥
କଳରେ ଅନ୍ନ ଭୋଗ କରି । ନାମ ସେ ମୁଖରେ ସୁମରି ॥
ଜଳ ସେ ଭୋଗ ସତ୍ୟେ କଲେ । ନାଗ ସେ ପଥ ବୋଲାଇଲେ ॥
ତ୍ରେତୟା ବନସ୍ତେ ଭ୍ରମଣ । ଦିଗାମ୍ବର ସେ ନାମ ପୁଣ ।୩୦।
ଦ୍ୱାପରେ ନୃତ୍ୟ ଗୀତ କଲେ । ଦାସ ସେ ପଥ ଭିଆଇଲେ ॥
କଳରେ ବସି ଏକଠାରେ । ବୈରାଗ ନାମ ଏ ସଂସାରେ ॥
ରାମାନନ୍ଦ ସେ ନିମାନନ୍ଦ । ଚଉଦ ଶହ ବଣୀ ବନ୍ଧ ।୩୩।
ତେରଶ ଶହ ସେ ବରଷ । ବସିଲେ ନିମାନନ୍ଦ ଦେଶ ॥
ବାରଶ ବରଷ ବସିଣ । କୃଷ୍ଣ ଶ୍ୟାମ ସେ ନାମ ଗୁଣ ।୩୫।
ମାଧବ ଆଚାର୍ଯ୍ୟ ବସିଲେ । ଏଗାର ଶହ ଧନ ନେଲେ ॥
ବୃନ୍ଦେ ସେ ଗୋପୀମାନେ ବସି । ନାମ ଶୁଣିଲେ ହବା ଖୁସି ॥
ଜଳ ସେ ଜାଲ ଧରୁ ପୁଣି । ତ୍ରେତୟା ବସି ନାମ ଗୁଣି ॥
ସତ୍ୟର ମୁନି ବନେ ବସି । ନାମ ଗୁଣିଲେ ଅହର୍ନିଶି ॥
କଳରେ ଚୈତନ୍ୟ ଠାକୁର । ବସିଲେ କ୍ଷେତ୍ର ଦକ୍ଷିଣର ।୪୦।
ଚଉଦ ବରଷ ବସିଲେ । ଯତନେ ନାମକୁ ଭଜିଲେ ॥
ପୂର୍ବର ବସ୍ତୁର ହେ ଶୁଣ । ଏ ରୂପେ ଯୁଗର ଭିଆଣ ॥
ପିଛବ ତୋର କହଧୁନ । ନାମ ଭଜବ ହୋଇ ଗୁନ ॥
ପରମ ପଦ ଏ ଅଟଇ । ବସିଣ ନ ପାରନ୍ତି କେହି ॥
ବଢ଼ କା ଉଦ୍ଧବ ବସିଲେ । ନାମକ ହୃଦରେ ଗୁଣିଲେ ।୪୫।
ଗରୁଡ଼ ବସିଣ ଯତନେ । ନାମକୁ ଭଜିଲେ ଅମନେ ॥

---

୩୩—ବଣୀ ବନ୍ଧ (କ);

ରାମଙ୍କେ ନାମ ଭଜିବାକୁ । କୌପୁନ ଭେଖ ଶୋଭା ତାଙ୍କୁ ॥
ଶୁଣ ପବନ ଦାସ ସୁତ । ଗୋପାଳ କୁଳର ଏମନ୍ତ ।୪୮।
ନାଗ ପ୍ରାପ୍ତେକ ସୂତ୍ର ଡୋର । ଗୋଟିଏ କରିବ ସୁନ୍ଦର ॥
ଦଶ ଆଙ୍ଗୁଳ କଉପୁନ । ଯତନ କରିଣ ଯେ ଘେନ ।୫୦।
ଦୁସର ଅଣ୍ଟାରେଣ ଦେବ । ତଳକୁ ଖଣ୍ଡିଏ ଲମ୍ବିବ ॥
ନାଭି ତଳରେ ଲୁଚିଇବ । ପିଛୁ ଭାଗକୁ ଦିଶୁଥିବ ॥
ଏ ଭାବେ ଡୋର କଉପୁନ । ଯତନ କରିଣ ଯେ ଘେନ ॥
ରାମାନନ୍ଦ ଯେ ବଇଷ୍ଣବ । ଏମନ୍ତ କୌପୁନ ପିନ୍ଧିବ ॥
ନାଗ ପ୍ରାପ୍ତେକ ଡୋର କରି । ଅଣ୍ଟାରେ ଫେରି ଏକସରି ।୫୫।
ଲେଙ୍ଗୁଟି ନାମଟି ଏଦ୍ୱାର । ଆଗକୁ ପଡ଼ିଥିବ ଫେର ॥
ରାମାନନ୍ଦ ଯେ ଏଦ୍ୱା ବନ୍ଧୁ । ପଛର ଭାଗ ନ ଦିଶଇ ॥
ନାଗବନ୍ଧ ଯେ କଉପୁନ । ଏମନ୍ତ ଭଗତଙ୍କୁ ଚିହ୍ନି ॥
ଏକ ଯେ ନାଗ ଡୋର ପୁଣ । ଛନ ସରି ଯେ ଅଣ୍ଟାରେଣ ॥
ଆଠ ଆଙ୍ଗୁଳ କଉପୁନ । ଲୁଚିବ ଆଗ ପଛ ଦେନ ।୬୦।
ବଷ୍ଣୁ ଶ୍ୟାମ ଯେ ବଇଷ୍ଣବ । ଏମନ୍ତ କୌପୁନ ପିନ୍ଧିବ ॥
ଛଅ ଆଙ୍ଗୁଳି ରାମାନନ୍ଦ । ଲେଙ୍ଗୁଟି ପିନ୍ଧିଣ ଆନନ୍ଦ ॥
ସ୍ୱର ଆଙ୍ଗୁଳି କଉପୁନ । ଅଣ୍ଟାରେ ବାନ୍ଧିଥିବ ଘେନ ॥
କୌପୁନ ଷୋଳ ଆଙ୍ଗୁଳିର । ଆଗକୁ ପଡ଼ିବ ଯେ ଫେର ॥
ପିଛୁ ଭାଗରେ ଲୁଚି ଥିବ । ମାଧ୍ୱଆଗ୍ନେୟି ଏହୁ ଭାବ ।୬୫।
ବ୍ରହ୍ମ ବନ୍ଧ ଯେ କଉପୁନ । ଏ ସ୍ୱର ଚଧି ଛନ୍ଦ ଘେନ ॥
ବାହୁଡ଼ ତ୍ରିଗୁଣ ବଳିଣ । ଡୋର ଯେ ଗୋଟିଏ ଖଞ୍ଜିଣ ॥
ନବ ଆଙ୍ଗୁଳି କଉପୁନ । ଆଗକୁ ପଡ଼ିବ ଯେ ଘେନ ॥
ପଛ ଭାଗ ଯେ ନ ଲୁଚିବ । ଏମନ୍ତ କାଛଟାର ଭାବ ॥
କାଛଟା କଟୀ ସୂତା କହୁ । ଭଗତ ଜନ ଲକ୍ଷ୍ମ ଏହୁ ।୭୦।
କାଛଟା ଗୋପାଳ ବନ୍ଧଣ । ଗୋମାତା ସେବା କରି ପୁଣ ॥

---

୬୮-୧—ପବନ ଦାସ ଚରିତ (ଖ)

ହ ଶବଦ ନିରନ୍ତର । ଧ୍ୟାଇଲେ ନରକେ ମୁକତ ॥
ଅରଣ୍ୟେ ଭୁଲି ନିରନ୍ତର । ବୈରାଗ୍ୟ ଭଜନ ତାଙ୍କର ॥
ସମସ୍ତ ଜାଣି ରତ କଲେ । କ୍ଷୀର ସେ ଅଧାର ଭକ୍ଷିଲେ ॥
ହନୁ ମଠଙ୍କ ଆଗ୍ରେ କର । ନାଗା ଅଟନ୍ତି ଶ୍ରେଷ୍ଠ ସର ।୭୫।
ଗରୁଡ଼ ମଠ ସୁମରଣ । ଗୋପାଳ ଏଣୁ ସାର ପୁଣ ॥
ବ୍ରହ୍ମ କୌପୁନ ସନ୍ନ୍ୟାସୀ । ସିଦ୍ଧଣ ହଂସ ଦୀକ୍ଷା ଘୋଷି ॥
ବୀର କୌପୁନ ରାମାନନ୍ଦ । ଗୋପାଳ ମନ୍ତ୍ର ବସି ଛନ୍ଦ ॥
ନାଗ କୌପୁନ ପଦ୍ମଶଣ । ରାମ ତାରକ ସୁମରଣ ॥
ଅଦ୍ଧ କୌପୁନ ସିଦ୍ଧ ମୁନି । ନାରାୟଣ ଯେ ମନ୍ତ୍ର ଘେନି ।୮୦।
କାଛଟା ଗୋପାଳ ସିଦ୍ଧଣ । ହରି ଶବଦ ଘୋଷି ପୁଣ ॥
ଶୁଣ ପବନ ଦାସ ଚନ୍ଦ୍ର । ଗୋପାଳ କୁଳର ମନ୍ତ୍ରେନ୍ଦ୍ର ॥
କାଛଟା ବୀର କହୁପୁନ । ଗୋପାଳ ସୁଅଙ୍କୁ ସେ ଘେନ ॥
ଯନ୍ତ୍ରରେ ମନ୍ତ୍ରକୁ ଲେଖିବ । ଏ ଭେଦ ତାହାଙ୍କୁ କହିବ ॥
ଶିଷ୍ୟଙ୍କୁ ଭେଖ ଦେବ ପୁଣ । ପୂଜା ର ବନ୍ଧ ଯେ କରଣ ।୮୫।
ମନ୍ତ୍ର କହିବା ଏବେ ଶୁଣ । ପନ୍ଦର ଅକ୍ଷର ପ୍ରମାଣ ॥
ଅଦ୍ଧ ବନ୍ଧ ଯେ ନାଗ ବନ୍ଧ । ବୀର ନାମ ଯେ ବୋଲି ବନ୍ଧ ॥
ଜିପଣ କରଣ ଲେଖିବ । ମନ୍ତ୍ରକୁ ଛନ୍ଦି ବସାଇବ ॥
ମନ୍ତ୍ର ନ ଜାଣି ଯେ ସିଦ୍ଧଇ । ସେ ପ୍ରାଣୀ ବଜ୍ରାଘାତ ହୋଇ ॥
ସାତ ଜନମ ଅପମୃତ୍ୟୁ । ଏଥିରେ ଅଛୁ ଏତେ ହେତୁ ।୯୦।
ଯେ ମନ୍ତ୍ର ଜାଣିଣ ସିଦ୍ଧଇ । ଯମର ଦଣ୍ଡ ତାକୁ ନାହିଁ ॥
ଆବର କୋଡ଼ିଏ ଅକ୍ଷର । ଏ ମନ୍ତ୍ର ଛନ୍ଦର ବିସ୍ତର ॥
ଓଁ ଶ୍ରୀ ଅନନ୍ତ ସୁମର । ନମାମ୍ୟହଂ ଯେ ନିରନ୍ତର ॥
ଓଁ ଶ୍ରୀ ବଜ୍ର କାଛଟିକ । ଶ୍ରୀ ଓଁ ନମ ବୋଲି ଏଥିକ ।୯୪।
ଅଦ୍ଧ ବନ୍ଧ ଯେ ନାଗ ବନ୍ଧ । ବୀର ବନ୍ଧ ଯେ ନାମ ଛନ୍ଦ ।୯୫।
ବଜ୍ର କାଛଟି ଏଣୁ କହୁ । ଅଣ୍ଟାରେ ଲେହ ଯେ ଖଞ୍ଜଇ ।୯୬।

---

୯୪—୨ ଶ୍ରୀ ଓଁ ନାମ (କ), ୯୬—୨ ଲେହ୍ନ ସେ ଧନ୍ଧଇ (ଖ);

ଭାନ୍ତର ଶିକୁଳ ଖଞ୍ଜାଇ । ଅନନ୍ତ କାଳୁଛି ସେ କନ୍ଧ ॥
ଅନନ୍ତ ବଜ୍ର ବନ୍ଧ ବନ୍ଧ । ଅନ୍ଧ ନାଗ ସେ ବନ୍ଧ ହୋଇ ॥
ବୀର ବନ୍ଧ ସେ ବ୍ରହ୍ମ ବନ୍ଧ । ମୁଦ୍ର ବନ୍ଧ ସେ ଗୋପବନ୍ଧ ॥
ହୁଣ ଶବଦ ମୁଖେ ସ୍ମର । ଅନନ୍ତ ବନ୍ଧ ଗୋପ ଧର ।୧୦୦।
ବଜ୍ର ବନ୍ଧକୁ ବନ୍ଧ ପୁଣ । ସ୍ୱନାପ ହଂସ ପାଖା ପୁଣ ॥

ପ | | | | ଉ
---|---|---|---|---

| | | | | |
|---|---|---|---|---|
| ଓଁ | ଶ୍ରୀ | ଅ | ନ | ନ୍ତ |
| ନ | ମା | ସ୍ୟ | ହ୍ରଂ | ଓଁ |
| ଶ୍ରୀ | ବ | ଜ୍ର | କା | ଛେ |
| ଟି | ଶ୍ରୀ | ଓଁ | ନ | ମ |
| ଓଁ | ଅ | ନ୍ଧ | ବ | ନ୍ଧ |
| ନା | ଗ | ବ | ନ୍ଧ | ବୀ |
| ର | ବ | ନ୍ଧ | ନ | ମ |

ଦ ପୂ

ଅନ୍ଧ ବନ୍ଧକୁ ଅନ୍ଧ ପୁଣ । ମୁଦ୍ର ସେ କଲେକ ଧାରଣ ॥
ନାଗବନ୍ଧକୁ ସୁମରଣ । ଯୋଗୀଏ କଲେକ ଧାରଣ ॥
ବୀରବନ୍ଧକୁ ସୁମରଣ । ଦାସ ଆବୋର ଦାସଗଣ ॥
ବ୍ରହ୍ମବନ୍ଧକୁ ଆଗ୍ରେ କର । ବ୍ରାହ୍ମଣମାନେ ତପ ଧର ।୧୦୫।
ମୁଦ୍ରବନ୍ଧକୁ ଆଗ୍ରେ କଲେ । ସଂସାରେ ଜନ ଆରାଧିଲେ ॥
କାଛଟା ବୀର କଉପୁନି । ଦାର ଗୋପାଳ ଥିବ ଘେନି ॥

ବସ୍ତ୍ର ଯେ ପରଣ ହୋଇବ । ଶୁଚବନ୍ତ ହେ ଅଙ୍ଗ ଥିବ ॥
ସ୍ନାହାନ ଶହେଚକୁ ଭଲ । ସଂସାର ଜନ ହୋଇବେ ବୁଝ ॥
ବୈଷ୍ଣବ ଭେଗ ଶୋଭା ପାଇ । ସଂସାରୀ ଦେଖିଣ ପୂଜଇ ।୧୧୦।
ବୈରାଗ ଭେଖକୁ ବନ୍ଧଣ । ପର ସ୍ତ୍ରିଙ୍କ ଯେ ରମଣ ॥
ଦାରା ଯେମନ୍ତ ଆଚୋରଇ । ବୈରାଗ ଧର୍ମ ନାଶ ଯାଇ ॥
ଦାରା ଯେମନ୍ତ ନ କହିବ । ଚନ୍ଦ୍ରମା ପ୍ରାୟ ବରଜିବ ॥
ପର ସ୍ତ୍ରିରେ ଚକ୍ଷୁ ନାହିଁ । ସୂର୍ଯ୍ୟର ପ୍ରାୟ ତେଜ ହୋଇ ॥
ସ୍ତ୍ରିୟ ଜନରେ ଯେବେ ଆଶ । ପଦ୍ମ ଶିଶିରେ ଯେସନ୍ତେ ନାଶ ।୧୧୫।
ଡୋର ଯେ କୌପୁନ ପିନ୍ଧିବ । କୁଟୀ ଖଣ୍ଡିକେ ବସିଥିବ ॥
ନାମକୁ ଅମନେ ଭଜିବ । ନିର୍ଦ୍ଦେ ଏକଲେ ରହିବ ।୧୧୭।
ମାଲରେ କୃଷ୍ଣ କଥା ଭଜ । ଗଙ୍ଗା ଅଷ୍ଟମାନ ପୂଜ ॥
ଏ ଦିନ ପାଞ୍ଚ ସାତ ଯେନ । ମୌଛବ କରିବାର ଦନ ॥
ବୈରାଗ ଜନର ଏ ଭଲ । ଏହା ନ କଲେ ନାଶ ଗଲ ।୧୨୦।
ବୈରାଗ ହୋଇ ଧନ ରଖି । ତାହାକୁ ମୂର୍ଖ ବୋଲି ଲେଖି ॥
ବୈରାଗ ଭେଖେ ମିଛ କହି । ତାଙ୍କୁ ଦେଖିଲେ ପାପ ହୋଇ ॥
ବୈରାଗ ହୋଇଣ ବୁଲଇ । ପେଟରେ କଲ୍ୟାଣ ନ ଯାଇ ॥
ବାରେକ ମନ ବୋଧ ପାଇ । ବୁଲିବ ବାରେ ପୃଥ୍ବୀ ଏହି ॥
ମନର ଭ୍ରମଣଟି ତୀର୍ଥ । ବସିଲେ ରହେ ଭକ୍ତିପଥ ।୧୨୫।
ହସ୍ତରେ ଦୟା କରୁଥିବ । କୃଷ୍ଣର କଥା ମୁଖେ ଥିବ ॥
ଅଦୃଷ୍ଟି ମଧ୍ୟେ ନାମ ଧରି । ଏ ମାୟା-ଜନ୍ତୁ ତେବେ ତରି ॥
ଏହା ନ କରି ଆନ କରେ । ଜନ୍ମ ବ୍ୟର୍ଥ ବୋଲି ତାରେ ॥
କୌପୁନ ଅଧିକାରୀ ପୁଣ । ପବନ ଦାସର ପ୍ରମାଣ ॥
କାଛଟା ଅଧିକାରମାନ । ଅଟ ଯେ ଦାସ ହେ ହତ୍ଥାନ ।୧୩୦।
ଶ୍ରୀକୃଷ୍ଣ କରୁଣା ଯେ କଲେ । ଏ ଗ୍ରନ୍ଥ ଲେଖିଲଇ ଭଲେ ॥

---

୧୧୭—ଅମନେ ରଞ୍ଜିବ (କ)

ଆମ୍ଭର ମୁଖଁ ତୁମ୍ଭେ ଶୁଣି । ଏଥିର ଭେଦ ତୁମ୍ଭେ ଜାଣି ॥
ତୁମ୍ଭର ମୁଖରୁ ଶୁଣିବେ । ଗୋପାଳକୁଳ ସେ ଜାଣିବେ ॥
ତୁମ୍ଭଙ୍କ ସଙ୍ଗି ହେବେ ଦାସ । ତୁମ୍ଭେ ଯେ ପ୍ରଥମେ ପ୍ରକାଶ ॥
ଏଣୁ ଗୋପାଳ କୁଳ ସାର । ଆଦ୍ୟର ଭେଖ ତୋ ହସ୍ତର ।୧୦୫।
ଦୀନ ଅଚ୍ୟୁତ ପଦେ ସାର । ସହ୍ରାସ ଦାସ ତୁମ୍ଭେ ବାର ॥

ଇତି ଶ୍ରୀଗୁରୁଭକ୍ତି ଗୀତା କଥନେ ନାମ ଷଟ୍‌ପଞ୍ଚାଶତ୍ ଛନ୍ଦ ।



## ସପ୍ତପଞ୍ଚାଶ ଛାନ୍ଦ

ଅନନ୍ତ ବସ୍ତୁ ମୁକୁନ୍ଦ ଅନାଦି ଯେଜନମା ।
ପଇତାର ଜନମ ଯେ କେମନ୍ତ ମହିମା । ୧ ।
ଶୁଣ ହେ ସୁବୁଦ୍ଧି ଦାସ ପଇତା ବିସ୍ତର ।
ପଇତା ବହିଲେ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ୨ ।
ଶିଅ ଧରି ବିଷ୍ଣୁ ପୁଣ ସର୍ଜନା କରିଣ ।
ପ୍ରଥମେଣ ମଙ୍ଗଳ ଯେ ଗ୍ରହ ସୁମରଣ । ୩ ।
ବୃହସ୍ପତି ସୁମରିଣ ଦୁତୀୟ ଶିଅରେ ।
ଶନୈଶ୍ଚର ରାହୁ ବୋଲି ପୁଣ ତୃତୀୟରେ । ୪ ।
ଶୁକ୍ର କେତୁ ଧର୍ମ ସଙ୍ଗେ ପଞ୍ଚଗ୍ରହ ପୁଣ ।
ନବଗ୍ରହ ନାମ ଧରି ସର୍ଜନା କରିଣ । ୫ ।
ରୁଦ୍ରହସ୍ତେ ବିଷ୍ଣୁ ପୁଣ ଦେଲେକ ଯତନେ ।
ଦକ୍ଷିଣ ବଳିଲେ ରୁଦ୍ର ବିସ୍ମରଣ ମନେ । ୬ ।
ସତାଇଶ ହାତ କରି ଲମ୍ବ ଯେ ଧଇଲେ ।
ହାତକରେ ନକ୍ଷତ୍ର ଗୋଟିଏ ବସାଇଲେ । ୭ ।
ରୁଦ୍ରପୁଣ ବ୍ରହ୍ମାର ହସ୍ତରେ ଦେଲେ ନେଇ ।
ତିନିଖଣ୍ଡ କଲ ବ୍ରହ୍ମା ମନରେ ପଶାଇ । ୮ ।
ତିନିସୂତ୍ର ନବ ଯେ ନକ୍ଷତ୍ର ସଙ୍ଗ କଲ ।
ଶ୍ରୀଭଗବନ୍ତେ ନକ୍ଷତ୍ର ଗୋଟିଏ ଗଣ୍ଠି ଦେଲ । ୯ ।
ସମସ୍ତନ୍ତ ସମ ଯେ ନକ୍ଷତ୍ର ବିସ୍ତରଣ ।
ତିନିସୂତ୍ର ନବ ଯେ ନକ୍ଷତ୍ର ସୁମରଣ । ୧୦ ।
ଦୁତୀୟ ପଇତା ଗଣ୍ଠି ଏମନ୍ତେଣ ଦେଇ ।
ଦୁଇ ଗୋଟି ପଇତା ଯେ ରଖିଲେ ବନାଇ । ୧୧ ।

---

—୨ ମଙ୍ଗଳ ସପ୍ତକୁ ସୁମରଣ (ଖ);

ପୁଣି ଉନଗ୍ରହେ ନକ୍ଷତ୍ର ନବ ଧରଣ ।
ମନ୍ଦ ଯୋଗମାନଙ୍କରେ ଗଣ୍ଡି ଦେଲେ ପୁଣ । ୧୨ ।
ନବଗ୍ରହ ସତାଇଶ (୧) ନକ୍ଷତ୍ର ସୁନ୍ଦର ।
ବ୍ରହ୍ମା ପାଶ୍ୱ ପଇତା ଯେ କଲେ ନବ ସୂତ୍ର । ୧୩ ।
କାଳ ଯେ ବେଳରେ କାଳ ପଇତା ଧରଣ ।
ରୁଦ୍ରର ହସ୍ତରେ ବ୍ରହ୍ମା ଦେଲେ ନେଇ ପୁଣ । ୧୪ ।
ଶୁଭ ଯେ ନକ୍ଷତ୍ର ଶୁଭ ଗ୍ରହମାନ ଘେନ ।
ବିଷ୍ଣୁ କର୍ଣ୍ଣେ ଦେଇ ବ୍ରହ୍ମା କଲେକ ଦଇନ । ୧୫ ।
ସମ ଯେ ନକ୍ଷତ୍ର ସମ ଗ୍ରହ ବିଚ୍ଛରଣ ।
ବାମ କର୍ଣ୍ଣେ ବ୍ରହ୍ମା ପୁଣ ପଇତା ରଖିଣ । ୧୬ ।
ଦକ୍ଷିଣ କର୍ଣ୍ଣରେ ବିଷ୍ଣୁ ରଖିଲେ ଯତନେ ।
ମସ୍ତକ ଜଟାରେ ଶିବ ଘେନିଲେ ବନ୍ଧନେ । ୧୭ ।
ପିଣ୍ଡ ଦେବ ବନ୍ଧିଲେ ଯେ ବିଚିତ୍ର ମନର ।
ତାଙ୍କର ଆଜ୍ଞାରେ ଯେ ବନ୍ଧିଲେ ସର୍ବନର । ୧୮ ।
ବ୍ରାହ୍ମଣ ଜ୍ୟୋତିଷ ବ୍ରହ୍ମ ପଇତା ବନ୍ଧିଲେ ।
ସମତା ଦୃଷ୍ଟିରେ ସର୍ବ କର୍ମମାନ କଲେ । ୧୯ ।
ସ୍ନାଣ କାଷ୍ଠ ଦୂର୍ଗା ଆଶ୍ରେ ଯେତେ ଜନ ମସ୍ତ ।
ଶିବ ଉପାସକ ଜନ ଅଛନ୍ତି ଯେ ବନ୍ଧ । ୨୦ ।
ବିଷ୍ଣୁଗଣ ମଙ୍ଗଳ ଯେ ପଇତା ବନ୍ଧିଲେ ।
ପଇତା ବନ୍ଧନ ଅମଙ୍ଗଳ ନାଶ କଲେ । ୨୧ ।
ଶୁଣ ହେ ଗୁହାସ ଦାସ ପୂର୍ବର ବିବୃତ ।
ଗୁରୁମୁଖୁଁ ଶୁଣିଲେ ସଂଶୟ ହୁଏ ଦୂର । ୨୨ ।
ଓଁ ନମୋ ଗ୍ରହ ଭୁଆଂ ନମ ବୋଲି କହ ।
ବ୍ରହ୍ମ ଋଷି (୨) ପିତାମହ ମନ୍ତ୍ର ଅଟେ ଏହୁ । ୨୩ ।

---

୧୩ (୧) ବସଇସ ।
୨୩ (୨) ବ୍ରହ୍ମଦତ୍ତ (ଘ),

ଅଷ୍ଟ ଛତ୍ର କରଣ ଯେ ମନ୍ତ୍ରକୁ ଲେଖିବ ।
ପୂଜାବିଧି କରଣ ପ୍ରଥମେ ଶିରସ୍ତ୍ରେ ବନ୍ଦନ । ୨୪ ।

| | | | | | |
|---|---|---|---|---|---|
| ଓଁ | ନ | ମୋ | ଗ୍ର | ହ | ରୁ |
| ଭ୍ୟଂ | ସ୍ୱୋ | ନ | ମ | ବ୍ର. | ହ୍ମ |
| ଅ | ଗ୍ନି | ପେ | ତା | ମ | ହ |

ପୂଜାବିଧି ମନ୍ତ୍ର ଯନ୍ତ୍ର ନ ଜାଣି ବନ୍ଧାଇ ।
ବହୁତ ଯେ କଷ୍ଟ ତାଙ୍କୁ ଦଇବ ଦିଅଇ । ୨୫ ।
ମନ୍ତ୍ର ପଢ଼ି ପଇତା ଦିଅଇ ଯେଉଁ ନର ।
ସେ ଜନ ଜୀବନ୍ତେ ଯାଏ ବିଷ୍ଣୁ ଭୁବନର । ୨୬ ।
ପଇତା ବନ୍ଧିଲା ପ୍ରାଣୀ ଦେଖିଲେ ଲୋଚନ ।
ଅମଙ୍ଗଳମାନ ତାର ହୁଅଇ ମୋଚନ । ୨୭ ।
ପଇତା ବନ୍ଧିଲା ଜନ ବହୁତ ଦେଖିଲେ ।
ଅମଙ୍ଗଳ ଗ୍ରହମାନ ନାଶ ଯାନ୍ତି ଭଲେ । ୨୮ ।
ପଇତା ଦେଖି ମଙ୍ଗଳ କାର୍ଯ୍ୟ କରଯାଇ ।
ଡାହାଣ ଭାଗେ ଦେଖିଲେ ସର୍ବ ସିଦ୍ଧି ପାଇ । ୨୯ ।
ଦକ୍ଷିଣ କନ୍ଧରେ ଥିଲେ ସର୍ବଦା ମଙ୍ଗଳ ।
ବାମଭାଗେ ଥିଲେଣ ଯେ ସମ ହୁଏ ଫଳ । ୩୦ ।
ସ୍ନାନଧ୍ୟାନ କାଳେ ବ୍ରାହ୍ମଣ ଦକ୍ଷିଣେ ରଖାଇ ।
ସମଭାବ ନମନ୍ତ୍ରେଣ ବାମ ଭାଗେ ଥାଇ । ୩୧ ।
ଜାଳବେଳ ମାନଙ୍କରେ କଣ୍ଠରେ ରଖାଇ ।
ନିବନ୍ଧ ନ କଲେ ପ୍ରାଣୀ ଅପଠଣ ପାଇ । ୩୨ ।
ମଳମୂତ୍ର ତ୍ୟାଗ କାଳେ ଶିରରେ ରଖିବ ।
ବେନି ଥର କରି କର୍ଣ୍ଣ ଭାଗରେ ଥୋଇବ । ୩୩ ।

ପରିଶ୍ରମ ଭୋଜନ ବେଳେଣ ବାମ କନ୍ଧ ।
ଯେଉଁ ଜନ ରଖଇ ସେ ଲଭଇ ଆନନ୍ଦ । ୩୪ ।
ସ୍ନାହାନ ଭଜନକାଳେ ଦକ୍ଷିଣେ ରଖିବ ।
ଯାହାକୁ କଲ୍ୟାଣ ଦେବ କଲ୍ୟାଣ କାଟିବ । ୩୫ ।
ଏ ବିଧି ନ କରି ଯେବେ ମହଗର୍ବେ ବହି ।
ଶରୀରେ କେଲଣ ବ୍ୟାଧି ଜନମ ହୁଅଇ । ୩୬ ।
ଏଣୁ କରି ବିଷ୍ଣୁର ଯେ ପଇତା ବହିବ ।
ପଇତା ମହିମା ଗୋପାଳକୁ ବୁଝାଇବ । ୩୭ ।
ପଇତାର ଅଧିକାରୀ ମୁକୁନ୍ଦ ଅନନ୍ତ ।
ଭଗତ ଦେଖି କହିଲୁ ଅତି ଏ ଗୁପତ । ୩୮ ।
ସୁଜ୍ଞ ବିପ୍ର ମୁଖ୍ୟ ନଉଠଷ ଏହା ଜାଣେ ।
ସୁବୁଦ୍ଧି ବୈଷ୍ଣବ ମାନେ ଜାଣନ୍ତି ପ୍ରମାଣେ । ୩୯ ।
ଦେଖା ଶିଖା ବିପ୍ର ଜଉଠଷ ଯେ ନ ଜାଣି ।
ବିଦ୍ୟାବନ୍ତ ଗୁରୁଶିକ୍ଷା ବିପ୍ରମାନେ ଜାଣି ।୩୦।
ଶାସ୍ତ୍ର ଶୁଦ୍ଧଗୁରୁ ସେବା ବୈଷ୍ଣବ ଜାଣନ୍ତି ।
ଦେଖା ଶିଖା ବଇଷ୍ଣବ ମିଛେ ବହୁଥାନ୍ତି । ୪୧ ।
ଗୁଡ଼ରୁ ମଧୁର ଯେସନ୍ତେ ଜିହ୍ୱା ଜାଣି ପୁଣ ।
ଚକ୍ଷୁ ଯେନ ଜାଣିଲେ ସେ ସୁଖ ପାଇ ପୁଣ । ୪୨ ।
ନ ଜାଣି ପଇତା ପୁଣ ଯେ ନର ବହଇ ।
ବଳଦ ପାଳ ବହୁଣ ପାଳ ପୁଣ ଖାଇ । ୪୩ ।
ଗୁରୁଭକ୍ତ ଗୀତା ପଢ଼ି ପାଇବ କାରଣ ।
ଅଚ୍ୟୁତ ବଚନ ପାଳିଥିବ ବାର ଜଣ । ୪୪ ।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ସପ୍ତପଞ୍ଚାଶତ୍ ଛାନ୍ଦ ।

⁂★⁂

## ଅଷ୍ଟପଞ୍ଚାଶତ୍ ଛାନ୍ଦ

ବାଳକ ଦାସର ସ୍ତୁତି ଯେଣମା ଗୋସାଇଁ ।
କ୍ଲୀଁ କାର ଉତ୍ପତ୍ତିକ କହିବା ବୁଝାଇ । ୧ ।
ଜଗତର ସ୍ୱବଗୋଷ୍ଠି ଯେନ ହେ ମନର ।
କଳଇଁ ଅକ୍ଷରେ ଅଛୁ ବାହୁକ ବସ୍ତର । ୨ ।
ଅନୁଣିଆ ଦାସମାନେ ଏ ଭେଦ ଜାଣନ୍ତି ।
ଗୁରୁ ମୁଖେ ପସୁଶଣ ଘଣ୍ଟେ ହୁଅନ୍ତି । ୩ ।
ଳ କାରକୁ ଗୋଳକ ଯେ ବୋଲି ଭଣ କହି ।
ଯ କାରକୁ ନିତ୍ୟ ପୁଣ ବୋଲିଣ ଅଛଇ । ୪ ।
ଅର୍ଦ୍ଧମାତ୍ରା ପରେ ବିନ୍ଦୁ ମହା ନିତ୍ୟ ଜାଣ ।
ଏଣୁକର କ୍ଲୀଁ କାର ଅକ୍ଷର ଗୁଣିଣ । ୫ ।
ଲକାରକୁ ଲକ୍ଷ୍ୟ କର ଗୋପାଳ ଭଜନ ।
ଯ କାର ହୃଦେ ଧରି ଗୋପୀଙ୍କର ସ୍ଥାନ । ୬ ।
କ କାରୁ କପିଳା ଯେ ଜନମ ହୋଇଲେ ।
ଅନୁଣିଆମାନ ତାହା ଠାବରୁ ଝରିଲେ । ୭ ।
ସେ କପିଳା ଆରାଧନା ଗୋପାଳ ଯେ କଲେ ।
ତାହାର ଅଙ୍ଗରୁ କ୍ଷୀରମାନ ଜାତ ହେଲେ । ୮ ।
ଗୋପୀମାନେ ଦଧି ଯେ ପାକ ବନାଇଲେ ।
ଗୋଲକ ନଗରେ ନାନା ଦଧି ଢିଆଇଲେ । ୯ ।
ଗୋଲକର ଛତ୍ରଦଳେ ଛତ୍ର ସଖୀ ରହି ।
ତିଶ ଦଳେ ତନ ସଖୀ ସେବାରେ ଅଛଇ । ୧୦ ।
ନାଦ ସୁଧା ବିନ୍ଦୁ କୃଷ୍ଣ ମହା ନିତ୍ୟ ସ୍ଥଳ ।
ଏମନ୍ତ ହୋଇଣ ନିତ୍ୟ ଗୋଲକ ମଣ୍ଡଳ । ୧୧ ।

---

୧୦-୧—ଗୋଲକରେ ଛତ ଛତ୍ରସଖୀ ଅଛନ୍ତି ଯେ ରହି (କ);

ଏଣୁକରି ଏହି ମନ୍ତ୍ର ଗୁରୁଙ୍କୁ ପଚ୍ଛରି ।
ଅନୁଗିଆ ବନାଇବ ଶୁଚବନ୍ତ କରି । ୧୨ ।
ରହିବାସ ମଣ୍ଡଳେ ଶ୍ୱେତ ଦାସ ମିଶାଇବ ।
ଖାଳି କାଠ ବାଜ ସ୍ଥାପି ପୂଜାବିଧି ଦେବ । ୧୩ ।
ତେବେତ ରନ୍ଧନ ପାକ ତା ହସ୍ତେ ପ୍ରମାଣ ।
ଏହା ନ ଜାଣିଲ ହସ୍ତେ ଭ୍ରଷ୍ଟନ୍ତ ଯେ ପୁଣ । ୧୪ ।
ଅଣ ଉପଦେଶୀ ଜନ ଅଟଇଟି ସେହି ।
ରଜ ସ୍ତ୍ରି ସ୍ପର୍ଶରୁ ଯେ ସ୍ନାନ ଅଟଇଟି ଦେଖ । ୧୫ ।
ଶ୍ୱାନ ହାଣ୍ଡି ଶ୍ୱପଚରୁ ସ୍ନାନ ଅଟେ ସେହି ।
ଏଣୁକରି ସେ ଜନଙ୍କୁ ମନ୍ତ୍ରଦୀକ୍ଷା ଦେଇ । ୧୬ ।
ଶ୍ରୀ ଗୋପାଳ ମହାମନ୍ତ୍ର ମନ୍ତ୍ରରାଜ ଦେବ ।
ହରେ କୃଷ୍ଣ ମହାମନ୍ତ୍ର ଭେଦ ବୁଝାଇବ । ୧୭ ।
ଠାକୁରାଣୀ ମନ୍ତ୍ର ମହାମନ୍ତ୍ର ବୁଝାଇଣ ।
ବୈଷ୍ଣବ ଦାସରେ ରୁନ୍ଦେ ଅଧିକାରୀ ପୁଣ । ୧୮ ।
ଏହା ନ ଶିକ୍ଷିଣ ଯେତ ବୈଷ୍ଣବ କହନ୍ତି ।
ଅଷ୍ଟଲୋକପାଳ ଧର୍ମଦଣ୍ଡ ତାଙ୍କୁ ଦିଅନ୍ତି । ୧୯ ।
ଯମ ଯେ ଧରମ ଚନ୍ଦ୍ର, ବରୁଣ କୁବେର ।
ଜଳ ଅଗ୍ନି ପବନ ଅଟନ୍ତି ଆଠ ସାର । ୨୦ ।
ଯମଦଣ୍ଡ ଅଗ୍ନି ଭସ୍ମ ସେ ଜନଙ୍କୁ ହୋଇ ।
ଅନୁଗିଆ ଦଣ୍ଡ ପୁଣ ମୋଚନ ନୁହଇ । ୨୧ ।
ଦଶପାଳମାନେ ତାଙ୍କୁ ଯଶ ନ ଦିଅନ୍ତି ।
ଦଶ ଦିଗେ ସେ ଜନ ଯେ ଅପଯଶ ପାନ୍ତି । ୨୨ ।
ପୂରୁବ ପଶ୍ଚିମ ପୁଣ ଉତ୍ତର ଦକ୍ଷିଣ ।
ଅଗ୍ନି ବାୟବ୍ୟ ଈଶାନ ନୈଋତ ଚାରି କୋଣ । ୨୩ ।
ଅନନ୍ତ ଦିଗ ଯେ ବ୍ରହ୍ମ ଦିଗ ଦଶ ଏହି ।
ମଧ୍ୟ ଭୂମି ଅନନ୍ତ ଯେ ବେଦ ପୁଣ କହି । ୨୪ ।

ଅନନ୍ତ ଦେଶ ସନ୍ନିଧେ ବ୍ରହ୍ମଦେଶ ପୁଣ ।
ବ୍ରହ୍ମା ପୁଣ କର୍ମ ବିଧି କରନ୍ତି ଭିଆଣ । ୧୫ ।
ଶୁଚିବନ୍ତ ହୋଇ ମନ୍ତ୍ର ପୂଜା ବିଧି କଲେ ।
ଗୋପାଳ ମନ୍ତ୍ର ବିଧିରେ କୃଷ୍ଣଙ୍କୁ ପୂଜିଲେ । ୧୬ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ଅଙ୍ଗ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଚନ୍ଦ୍ର ସୂର୍ଯ୍ୟ ଆଦି । ୧୭ ।
ଏ ଦେଶରେ ସାର ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ସନକାଦି କରଣ ଯେ ମୁନି ଅହଂକାର । ୧୮ ।
ବିଷ୍ଣୁ ପୂଜା କୃଷ୍ଣ ଭକ୍ତ ହୋଇଣ ତରିଲେ ।
ନର ଜନମାନଙ୍କୁ ଯେ ଧର୍ମ ବତାଇଲେ । ୧୯ ।
ମନ୍ତ୍ର ଦୀକ୍ଷା ଶୁଚିବନ୍ତ ଗୁରୁ ସେବା କରେ ।
ମଲେଣ ସେ ଜନମଇ ଶ୍ରୀକୃଷ୍ଣର ପୁରେ । ୨୦ ।
ଅଶୁଚି ଯେ ମନ୍ତ୍ର ଶୂନ୍ୟ ପଶୁ ଅସୈଜନ ।
ଶାଗୁଣା ଯୋନିରେ ମଲେ ଜନ୍ମ ହୋଏ ସ୍ଥାନ । ୨୧ ।
ବିଲୁଆ କୁକୁର କାଉ ଜନମ ଲଭନ୍ତି ।
ମୂଢ଼ ଜନମାନେ ପୁଣ ଏହୁ ପଥେ ଯାନ୍ତି । ୨୨ ।
ଭଲ ମନ୍ଦ ଦୁଇ ପଥ ଅଛି ଏ ସଂସାର ।
ପାପ ପୁଣ୍ୟ ଦୁଇରେ ଯେ ଆତଯାତ ନର । ୨୩ ।
ହେରୁ ଅଣହେରୁ ପୁଣ ଦୁଇ ଗୋଟି ଥାନ୍ତି ।
ପକ୍ୱଫଳ ଭୋଗୁ ଯେ ଏକା ବୃକ୍ଷେଁ ହୋନ୍ତି । ୨୪ ।
ଶ୍ରୀକୃଷ୍ଣର ଲୀଳା ଅଟେ ଏମନ୍ତ ଭିଆଣ ।
କେହୁ ଯେ ପାଚିଲ କେହୁ ଝଡ଼ି ପଡ଼େ ପୁଣ । ୨୫ ।
ଶ୍ରୀକୃଷ୍ଣ ଭଜନ ଗୁରୁ ସେବା ଯେ କରଇ ।
ପକ୍ୱଫଳ ହୋଇଣ ସେ ସେ ଜନକୁ କହି । ୨୬ ।
ନାମ ନ ଜପନ୍ତି ଗୁରୁସେବା ଯେ ନ କରେ ।
ସେ ଜନ ଯେ ନ ତପନ୍ତି ବୈଷ୍ଣବ ମୁଖରେ । ୨୭ ।

ଝଡ଼ଲର ଫଳ ପୁଣ ସେ ଜନ ଅଟଇ ।
ଭଗତ ସବ ଦେଖିଣ ଗୃହସ୍ଥଙ୍କୁ ତ କହୁ । ୩୮ ।
ପକ୍ୱଫଳ ହୋଇଲେ ଯେ ଗୁରୁ ସେବା କର ।
ଧାନ ଅଚ୍ୟୁତର କଥା ହୃଦେ ଥିବ ଧର ।୩୯।
ଏଣୁ ଗୁରୁଭକ୍ତି ଗୀତା ଶିଷ୍ୟଙ୍କୁ କହିବ ।
ଅଗ୍ରଜ ଅଭଗତଙ୍କୁ ଗୁପ୍ତ କରିବ ।୪୦।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଅଷ୍ଟପଞ୍ଚାଶତ୍ ଛନ୍ଦ ।



## ଊନଷଷ୍ଠି ଛାନ୍ଦ

ମୁକୁନ୍ଦ ଅନନ୍ତ ସ୍ତୁତି ଘେନମା ଗୋସାଇଁ ।
କେଉଁ ଗୋପୀ କେଉଁ ନାମ କହିବା ବୁଝାଇ ।୧।
କେଉଁ ଗୋପୀ କେଉଁ ସେବା କରନ୍ତି ଭିଆଣ ।
ଏ କଥା ଶ୍ରୀମୁଖେ ଗୁରୁ କହିବା ପ୍ରମାଣ ।୨।
ପ୍ରଥମେ ଷୋଳ ସଖୀ ଅଟନ୍ତି ଯେ ସାର ।
ସାଧୁଜନମାନେ ସେବ ଏହାଙ୍କ ପାଶର ।୩।
ଲଳିତା ଭଦ୍ରା ଯେ ପଦ୍ମା ଶ୍ୟାମଳା ଯେ କହି ।
ଶୈବ୍ୟା ବୃଷି ହରି ପ୍ରିୟା ଶ୍ରୀମତୀ ଯେ ତହିଁ ।୪।
ବିଶାଖା ଶଶୀ ଯେ ରେଖା ଚନ୍ଦ୍ରରେଖା ପୁଣ ।
ଚନ୍ଦ୍ରାବଳୀ ଶୁଚରୁଚି କୃଷ୍ଣାବଳୀ ଶୁଣ ।୫।
ହରିପ୍ରିୟା ଶ୍ରିୟା ସଙ୍ଗେ ମଦନ ସୁନ୍ଦରୀ ।
ଷୋଳ ସଖୀ ଏମନ୍ତେଣ ସେବା ବିଧିକରି ।୬।
ଆବର ଯେ ଚଉଷଠି ସେବା ବିଧି ତହିଁ ।
ଭଗତ ସବରେ ବିଧି ଶୁଣ ମନ ଦେଇ ।୭।
ଅଙ୍ଗନା ସର୍ବାଙ୍ଗୀ ମୋହ୍ନା ରଙ୍ଗଣୀ ଯେ ତହିଁ ।
ରତ୍ନପୁଷ୍ପା ସୁଛନ୍ଦ୍ୟା ତ ମାଳତୀ ଯେ ଥାଇ ।୮।
ମାଧବ ସୁବର୍ଣ୍ଣବର୍ଣ୍ଣା ସୁବର୍ଣ୍ଣାଙ୍ଗୀ ପୁଣ ।
କେତକୀ କାମଦାୟିନୀ ଅଛନ୍ତି ସଙ୍ଗେଣ ।୯।
ସୁବର୍ଣ୍ଣାକ୍ଷୀ ମୃଦୁଳାକ୍ଷୀ ନାମଯୋଗୀ ତହିଁ ।
ମନୋହରା ରତ୍ନକେଳୀ ଏମନ୍ତ ଅଛଇ ।୧୦।
ରତିକେଳୀ ସୁଧନା ଯେ ଶ୍ରୀ ଶ୍ରୁଭା ଅଛଇ ।
ରଞ୍ଜନୀ ପଦ୍ମିନୀ ଶଙ୍ଖିନୀ ସୁଲକ୍ଷ୍ମୀ ଯେ ଗୋଠ ।୧୧।
କମଳା ଚଞ୍ଚଳା ତହିଁ ଚପଳା ଯେ ଦେବୀ ।
ରସାଳୀ ରସମାଧୁର୍ଯ୍ୟ ସଙ୍ଗତେ ନାଗରୀ ।୧୨।

ବିଦ୍ୟାଙ୍ଗୀ ଗୁରୁଣ୍ଡି ପୁଣ ଚନ୍ଦନୀ ମାଳତୀ ।
ସୌଗନ୍ଧିକା ସୁବେଣୀ ଯେ ପ୍ରବଳାକୁ ଘେନ ।୧୩।
କମଳୀ ସୁବାଣୀ ରସବାଦନୀ ଯେ ପୁଣ ।
ସୁମେଧା ରମ୍ଭା ଯେ ପଦ୍ମା ଅଛନ୍ତି ସଙ୍ଗେଣ ।୧୪।
ସୁବୃନ୍ଦା ଲବଙ୍ଗା ଯେ ତିଲକା ଅଛଇ ।
ତାର ଯେ କୌମୁଦୀ ସର୍ବବିଦ୍ୟା ପୁଣ ତହିଁ ।୧୫।
ରତ୍ନମେଖୀ ସୁମେଖୀ ଯେ ମଙ୍ଗଳା ସଙ୍ଗେଣ ।
ଚନ୍ଦ୍ରିକା ମଲ୍ଲିକା ସଙ୍ଗେ ଚମ୍ପକା ଘେନଣ ।୧୬।
କଦମ୍ବା ପଦ୍ମରଙ୍ଗିଣୀ ଚମ୍ପକା ଯେ ତହିଁ ।
ରତ୍ନିକା ସ୍ୱାହା କର୍ଣ୍ଣିକା କୁମୁଦନୀ ଗୋଇ ।୧୭।
ଚନ୍ଦ୍ରକମ୍ବା ମୃଗାକ୍ଷୀ ଯେ ସର୍ବ ଗୋପୀଗଣ ।
ହୃତ୍କଣ୍ଠା ରସମଞ୍ଜରୀ ଚଉଷଠି ପୁଣ ।୧୮।
ଯେଉଁ ଗୋପୀ ଯେଉଁ ସେବା ହେତୁ ମନେ ଘେନ ।
ଭଗତ ଜନମାନଙ୍କ ସେବା ଯେଉଁ ଜନ ।୧୯।
ଅଞ୍ଜନା କଜ୍ଜଳ ସେବା ବିଧି ପୁଣ କରେ ।
ସର୍ବଜ୍ଞା ସୁନ୍ଦରୀ ଗନ୍ଧ ସେବା ବିଧି ଧରେ ।୨୦।
ମୋହନା ଭ୍ରମର ସେବା କରନ୍ତି ଯେ ପୁଣ ।
ରଙ୍ଗିଣୀ ପାଟବସ୍ତ୍ର ଯେ ସେବା ସେ କରଣ ।୨୧।
ରତ୍ନପ୍ରଷ୍ଠା ତାମ୍ବୁଳ ଯେ ସେବା ବିଧି କରେ ।
ସୁବିଦ୍ୟା ଦ୍ରବ୍ୟ ଦର୍ଶନ କରନ୍ତି ହୃଦରେ ।୨୨।
ମାଳତୀ ଯେ ପକ୍ୱପାକ କରନ୍ତି ଯେ ତହିଁ ।
ମାଧବୀ ଯେ ନୀଳ ବସ୍ତ୍ର ବିଧିମାନ ବହି ।୨୩।
ସୁବର୍ଣ୍ଣବର୍ଣ୍ଣା କର୍ପୂର ସେବା ବିଧି କରେ ।
ସୁବର୍ଣ୍ଣାଙ୍ଗୀ ରସ ପୁଣ ମଙ୍ଗଳ ହଡାରେ ।୨୪।

---

୧୩—୧ ଚନ୍ଦନୀ ମାଳତୀ ପ୍ରବାଳକୁ ଘେଚ (କ),
୧୫—୨ ଦ୍ରବ୍ୟରୂପା ପୁଣ (ଖ),

କେତକୀ ଗୋପୀ ଯେ ରତ୍ନକାପ ସେବା କର ।
କାମ ଯେ ଦାସ୍ୟଙ୍ଗୀ ରତ୍ନ ଭୂଷଣ ଆଚର । ୨୫ ।
ରସକେଳି ସିନ୍ଦୂର ଯେ ବିଧି ଆଚରଣ ।
ସୁକେଳୀ ସୁରସ ଶୁଚ କରନ୍ତ ଅଙ୍ଗେଣ । ୨୬ ।
ରତିକେଳି ପଦ୍ମକ ମାଣିକ ସେବା କରେ ।
ସ୍ୱବର୍ଣ୍ଣା କଣ୍ଠୀ ମେଖଳା ଦିଅନ୍ତି କଟୀରେ । ୨୭ ।
ଶ୍ରୀ ଚନ୍ଦ୍ରା କଙ୍କଣ ସେବା ବିଧି ପୁଣ କର ।
ସୁମେଧୀ କସ୍ତୁରୀ ସେବା ବିଧି ଯେ ଆଚର । ୨୮ ।
ରତ୍ନାସଖୀ ରବାସେବା କରନ୍ତ ଯେ ତହିଁ ।
ପଦ୍ମାସଖୀ ବୀଣାସେବା ବିଧିରେଣ ରହି । ୨୯ ।
କଉରୂକୀ ଗନ୍ଧବିଧିମାନ ସଜାଡ଼ଣ ।
ଇନ୍ଦ୍ରପୁଷ୍ପ ଲବଙ୍ଗ ଯେ ଯେ ସେବା ଯୋଗାଇଣ । ୩୦ ।
ଶ୍ରୀଫଳବିଧି ଯେ ପୁଣ ଝିଲ୍ଲିକା ଯୋଗାଇ ।
ଭାଗ୍ୟସଖୀ ନାସିକାର ଫୁଲମାନ ଦେଇ । ୩୧ ।
କହ୍ନମୌଦୀ ଦାଡ଼ିମ୍ବର ଫଳ ପୁଣ ଦେଇ ।
ରତ୍ନମେଖୀ ସୁତଇଳ ବିଧି ପୁଣ କହୁ । ୩୨ ।
ସୁମେଖୀ ଯେ ରସବେଣ ଜାଣନ୍ତି ଅପାର ।
ମଙ୍ଗଳା ଯେ ଗୀତ ନାଟ ଜାଣନ୍ତି ବିସ୍ତର । ୩୩ ।
ମଲ୍ଲିକାର ସଧୂପର ବିଧି ମାନଙ୍କରେ ।
ଚମ୍ପିକା ଦିବ୍ୟ ବାଇଦ ବାଜନ୍ତି ସୁସ୍ୱରେ । ୩୪ ।
କଦମ୍ବା ଯେ ବନମାଳା ସେବା ଆଚରଣ ।
ପଦ୍ମା ଯେ ରଗିଣ ପୁଣ ଆଳାପ କରଣେ । ୩୫ ।
କାମ ଯେ କନ୍ଦନୀ ପୁଣ କଇଲା ଅଛଇ ।
ବର୍ଣ୍ଣିନୀ ସଖୀ ସ୍ୱଧିକା ମନ୍ତ୍ର ଯୋଗାଇ । ୩୬ ।
ବୃନ୍ଦନୀ ରସ ଶୃଙ୍ଗାର ବିହୁର ଜାଣଇ ।
ରତ୍ନନୀ ସଖୀ ଯେ ପୁଣ ମୁଦ୍ରିକା ଦିଅଇ । ୩୭ ।

ପଦ୍ମମାଳ ପଦ୍ମ ମା ଯେ ଉଅନ୍ତ ହୃଦର ।
ସର୍ଙ୍ଗିଣ ରସକୀର୍ତ୍ତନ କରନ୍ତୁ ବହୁର । ୩୮ ।
ସୁଲମା ରତ୍ତ ସୁଲବା ହସ୍ତର ଜାଣଇ ।
ବିଦ୍ୟାଙ୍ଗୀ ସୁଖ ସେଗର ବିଧି ପୁଣ ବନ୍ଧ । ୩୯ ।
ସୁରୁସ ସଖୀ ଯେ ପୁଣ ବଇଣୀ ଦେଇଣ ।
ଚନ୍ଦନା ଚନ୍ଦନ ପୁଣ ବିଧି ଯୋଗାଇଣ । ୪୦ ।
ମାଲମା ରସ ଯେ କୁଟ ଜାଣଇ ଅପାର ।
ସୁଗନ୍ଧକା ରସବାସ ସେବାର ହସ୍ତର । ୪୧ ।
ସୁବେଣୀ ଯେ ସଙ୍ଗୀତର ରସ ଧ୍ୱନି ଜାଣେ ।
ଦ୍ରବଳା ରସ ସୁରୁସ ଜାଣଇ ପ୍ରମାଣେ । ୪୨ ।
ଚମ୍ପଳା ଯେ ପଦେନଖ ବିଧି ପୁଣ ଜାଣି ।
ଚପଳା ବୃନ୍ଦଭ ବାଦ୍ୟ ରସ ଯେ ବଖାଣି । ୪୩ ।
ରସାଙ୍ଗୀ ଯେ ପୁଣ ଛନ୍ଦ ବିଧାନ ଜାଣନ୍ତି ।
ମାଧୁରୀ ଯେ ବ୍ୟଙ୍ଗସ୍ତବ ସେ ପୁଣ କରନ୍ତି । ୪୪ ।
ନାରଙ୍ଗୀ ମଧୁରରସ କରନ୍ତି ଯେ ପୁଣ ।
କମଳୀ ଯେ ସ୍ତୁତି ପୁଣ କରନ୍ତି ବଖାଣ । ୪୫ ।
ସୁବାଣୀ ବଚିକା ସ୍ତବ କରନ୍ତି ଯେ ତହିଁ ।
ରସବାଦୀ ଚନ୍ଦ୍ରବିମ୍ବ ପ୍ରବନ୍ଧ ଯୋଗାଇ । ୪୬ ।
ମୃଗାକ୍ଷୀ ମୁକୁଳ ବିଧି କରଣ ତହିଁରେ ।
ଉତ୍କଣ୍ଠା ପୁସ୍ତକବିଧି ତହିଁରେ ଆଚରେ । ୪୭ ।
ମଞ୍ଜୁଳା ହାସ୍ୟ ଉଲ୍ଲାସ ବିଧାନ କରଣ ।
ସବୁ ପ୍ରେମରସ ସୁଖ ଗୋପୀଙ୍କ ଠାବେଣ । ୪୮ ।
ଏତୁ ବିଧି ପଣେବନ୍ଧ ଜାଣେ ଯେତୁ ଦାସ ।
ସେତୁ ସାଧୁ ଅଟନ୍ତି ଶ୍ରୀକୃଷ୍ଣ ରାଧା ଅଂଶ । ୪୯ ।
ମନ୍ତ୍ର ଯନ୍ତ୍ର ବୁଦ୍ଧି ସଦଗୁରୁ ସେବା କଲେ ।
ଗୋପିକା ଭାବ ଭଗତ ହୃଦରେ ଧଇଲେ । ୫୦ ।

ତେବେ ଦାସଜନ ଲଭେ ରାଧାକୃଷ୍ଣ ପାଦ ।
ଏଣୁ ରାଧାକୃଷ୍ଣ ଲୀଳା ହୃଦସ୍ଥରେ ବନ୍ଦ । ୬୧ ।
ରାଧାଅଙ୍ଗୁ ବୃନ୍ଦ ଗୋପୀ ହୋଇଲେକ ଜାତ ।
ବୃନ୍ଦାସଖା ଶ୍ରୀକୃଷ୍ଣର ଅଙ୍ଗରୁ ସମ୍ଭୂତ । ୬୨ ।
ବୃନ୍ଦ ଯେ ଦୁଗୁଣ ଅଠ ହୋଇଲେ ଭିଆଣ ।
ଅଠ ଯେ ଦୁଗୁଣେ ଷୋଳ ଅଟଇ ପ୍ରମାଣ । ୬୩ ।
ଷୋଳ ଯେ ଦୁଗୁଣେ ପୁଣ ବତିଶ ଅଟଇ ।
ବତିଶ ଦୁଗୁଣେ ପୁଣ ଚଉଷଠି କହି । ୬୪ ।
ଚଉଷଠି କଳାରୁ ଅନନ୍ତ ଗୋପୀ ହେଲେ ।
ଚଉଷଠି ଗୋପାଳୁ ଅନନ୍ତ ସଖା କଲେ । ୬୫ ।
ଗୋପୀଯେ ଗୋପାଳ ରାଧାକୃଷ୍ଣ ସେବାକରି ।
ସର୍ବଦା ନବୀନ ସେହୁ ନପୁଂସକ ଶରୀ । ୬୬ ।
ଅବୀକାଦ୍ଧ ସୁଦର୍ଶନ ଅଙ୍ଗକୁ ଧରଣ ।
କୃଷ୍ଣସେବା କରେ ରାଧା ଭଜେ ସଖାଗଣ । ୬୭ ।
ଅବୀକାଦ୍ଧ ଅନନ୍ତ ଯେ ଅଙ୍ଗ ପୁଣ ଧରି ।
ସୁଭଦ୍ରା ସେବାରେ ସଖୀ କୃଷ୍ଣଙ୍କ ସୁମରି । ୬୮ ।
ଦୁଇ ଅଙ୍ଗେ ସେବାକଲେ ରାଧାଭାବ ଗୁଣି ।
ରାଧାଅଙ୍ଗେ ସେବାକଲେ କୃଷ୍ଣଭାବ ଜାଣି । ୬୯ ।
ଅଣ ଯେ ମଣ୍ଡଳ ସେହୁ ରାଧାକୃଷ୍ଣ ସ୍ଥାନ ।
ଏକଦଳ ବୋଲିକରି ଏକାନ୍ତ ଭୁବନ । ୭୦ ।
ହୁଙ୍କାର ଆନକୁ ବେନି ଦଳ ବୋଲି କହି ।
ଲୀଳାଭାବ କୃଷ୍ଣର ଯେ ସ୍ଥାନ ଅଟେ ସେହି । ୭୧ ।
ଅର୍ଦ୍ଧାଙ୍ଗ ମଧ୍ୟେ ତ୍ରିକୂଟ ତ୍ରିଦଳ ସ୍ଥାନ ।
ଅବତାର ଅଙ୍ଗ କୃଷ୍ଣ ସେଠାରେ ଭିଆଣ । ୭୨ ।
ଛଅଦଳ ସ୍ୱାମଗାନ ବୋଲି କରି କହି ।
ଅଷ୍ଟଦଳ ବୋଲିଣ ଯଜୁ ପୁଣ ହୋଇ । ୭୩ ।

ଷୋଳଦଳ ବୋଲିଣ ଯେ ଭିନ୍ନ ଅଟଇ ଭାବ ।
ବତିଶ ଦଳ ଯେ ପୁଣ ଅଟଇ ଅଥଙ୍ଗ । ୬୪ ।
ବତିଶ ଦୁଗୁଣେ ଚଉଷଠି ପୁଣ ବନ୍ଧ ।
ଚଉଷଠି ମଧ୍ୟରେ ସହସ୍ରଦଳ ରନ୍ଧ୍ର । ୬୫ ।
ସହସ୍ରକୁ ବେଢି ଛନ୍ତି ଅନନ୍ତ ଗୋପାଳ ।
ନିତ୍ୟ ଗୋଲକରେ ଗୋପୀ ଗୋପାଳଙ୍କ ଖେଳ ॥
ଗୋପିକା ଭଗତଭାବ ମୁକୁନ୍ଦ ରୂପର ।
ସଖାଭକ୍ତ ଭାବ ପୁନ ଅନନ୍ତ ସୁନ୍ଦର । ୬୭ ।
ଗୋପିକା ଭଗତଭାବ ଗୋପକୁଳେ କନ୍ଧ ।
ସଖାଭକ୍ତ ଭାବ ପୁଣ ଗୋପ ଅଂଶେ ଦଶ । ୬୮ ।
ଶ୍ୱେତ ରଙ୍ଗ କୁଙ୍କୁମ ଶ୍ୟାମଳ ଗୁଣ ତହିଁ ।
ଏହୁ ଗୁଣକଳା ଯେହୁ ଭଗତ ଚିହ୍ନଇ । ୬୯ ।
ଏହୁ ଗୁଣ କଳାରୁ ଅନନ୍ତ କଳା ପୁଣ ।
ଏକ ଏକ କଳା ଘେନ ଜନମନ୍ତି ପୁଣ । ୭୦ ।
ଏ ବାସନା ଘେନ କର ସଂସାରେ ପ୍ରବେଶ ।
କୃଷ୍ଣ ରାଧା ପାଦ ସେବେ ଅଚ୍ୟୁତ ସେ ଦାସ । ୭୧ ।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ଊନଷଷ୍ଠି ଗ୍ରନ୍ଥ ।



## ଷଷ୍ଠି—ଛାନ୍ଦ

ଶୁଣ ହେ ଗୋପାଳ ପୋଏ ରବା ବୀଣା ରନ୍ଧ୍ର ।
ରଖି ରଖି ରସ ଧ୍ୱନି ମନରେଣ ଘୋଷ । ୧ ।
ବାଂସ୍ରେଣ ଦ୍ୱାଜଭି ଫଣା ଅଠ ଏ ଲକ୍ଷତ ।
ଝଣ ଝଣ ଭଣ ଭଣ ରଣେ ନାଦ୍ୱତ । ୨ ।
ଗାନ୍ଧାର ସଗଲୁ ବଡ଼ ଅଚ୍ଛି ସୁନ୍ଦର ।
ଧ୍ୱନ ହ୍ୱର ନାମ କଥା ଗୁଣିମା ମଧୁର । ୩ ।
ସେ ଯନ୍ତ୍ର ଧ୍ୱନିରେ ମନ ହ୍ୱରେଣ କଅଇ ।
ବ୍ରହ୍ମା ବିଷ୍ଣୁ ଶୁଣିଲେ ଯେ କେଳ ହ୍ୱୋନ୍ତ ଭୀହ୍ନି । ୪ ।
ରବା ବୀଣା ଅନାଦ ଯେ କଲେକ ଭିଅଣ ।
ରୁଦ୍ର ପୁଣ ତାଙ୍କଠାରୁ ଶିକ୍ଷା କଲେ ପୁଣ । ୫ ।
ହ୍ରିରଣ୍ୟର ଛଲେ ହ୍ୱର ଖମ୍ବରୁ ବାହ୍ୱାର ।
ବୋଇଲେ ହେ ପ୍ରହ୍ଲାଦ ମାଗ ତୁମ୍ଭେ ବର । ୬ ।
ମୋହ୍ୱର ହସ୍ତ ମସ୍ତକ ବାଦ୍ୟ ନାମେ ଥିବ ।
ଏହୁ ବର ପ୍ରଭୁ ଜନ୍ମେ ଜନ୍ମେ ମୋତେ ଦେବ । ୭ ।
ନରହ୍ୱର ସନ୍ତୋଷେଣ ବର ଦେଲେ ପୁଣ ।
ତାହ୍ୱାର ମସ୍ତକ ବୀଣା ହ୍ୱାଣ୍ଡି କଲେ ପୁଣ । ୮ ।
ହସ୍ତ ଗୋଷ୍ଠା ରବା ପୁଣ ଭିଆଣ ଯେ କଲ୍ ।
ଏମନ୍ତେ ଅନାଦ ରୁଦ୍ର ଏହୁ ଯନ୍ତ୍ର ଧରେ । ୯ ।
ଭୋଲକ ଭୁବନେ ରୁଦ୍ର ଦେଲେକ ଯତନେ ।
ଭୋଲକ ନାଅ ଶୁଣିଣ ସନ୍ତୋଷ ଯେ ମନେ । ୧୦ ।

---

୬—୧ ଶ୍ଳୋ ହସ୍ତ ଭୂମ୍ବ ପାଦ ନାମରେ ଥିବ (ଖ);

ଗୋଲକ ନାଥ ଯେ ଦେଲେ ସୁଦାମ ହସ୍ତେଣ ।
ସୁଦାମ ସଙ୍ଗୀ ଜାଣନ୍ତି ଗାନ୍ଧାରର ଗୁଣ । ୧୧ ।
ନାରଦ ଜାଣନ୍ତି ପୁଣ ଏ ଧ୍ୱନିର ରସ ।
ସରସ୍ୱତୀ ଜାଣନ୍ତି ଯେ ଏ ଧ୍ୱନି ଉଦେଶ । ୧୨ ।
ଲଳିତା ବିଶାଖା ଚନ୍ଦ୍ରା ରଙ୍ଗଦେବୀଗଣ ।
ଏମାନେ ଜାଣନ୍ତି ଏଥି କିଛି ରସଗୁଣ । ୧୩ ।
ଗୋଲୋକର ଲୀଳା ଗୋପପୁରରେ ପ୍ରକାଶ ।
ଗୋପ ପୋଏ ଜନମିଲେ ନଦୀଆର ଦେଶ । ୧୪ ।
ନଦୀଆର ଲୀଳା କୃଷ୍ଣ ଓଡ୍ର ଦେଶେ ଜାତ ।
ଓଡ୍ରରାଷ୍ଟ୍ର ଗୋପାଳଙ୍କୁ ଜାଣିବ ଚିତ୍ତମନ୍ତ । ୧୫ ।
ଚବିଶ ଗୋପାଳ ତୁମ୍ଭେ ଓଡ୍ରରାଷ୍ଟ୍ରେ ସାର ।
ପାଷାଣ୍ଡ ଗୋପାଳ ପୁଣ ହୋଇବେ ଉଦ୍ଧାର । ୧୬ ।
ଅର୍ଦ୍ଧମାତ୍ରା ଥୋଇ ତଳେ ଗାର ଗୋଟି ଦେବ ।
କରମାତ୍ରା ଦେଇଣ ସେ ଇକାର ବନ୍ଧିବ । ୧୭ ।
ଅର୍ଦ୍ଧମାତ୍ରା ପରେ ପୁଣ ଇକାରକୁ ଦେଇ ।
ତଥିପରେ ପୁଣ ବିନ୍ଦୁ ଗୋଟିଏ ବସାଇ । ୮ ।
ମଣ୍ଡଳ ଗୋଟିଏ ପୁଣ ଲେଖିବ ଭୂମିରେ ।
ମନ୍ତ୍ରଗୋଟି ଲେଖିବ ଯେ ତହିଁର ମଧ୍ୟରେ । ୧୯ ।
ରବାବୀଣା ସେହିଠାରେ ଥୋଇବାକୁ ନେଇ ।
ଘୃତ ଦୀପ ଜାଳିଣ ସେ ପୂଜା ବିଧି ଦେଇ । ୨୦ ।
ପାଟବସ୍ତ୍ର ପାଞ୍ଚଖଣ୍ଡି ରବାଠାରେ ଦେବ ।
ପିଲ୍ଲା ସେ ପାତ୍ରେଶ୍ରୋତା ଦଶ ବୀଣାଠାରେ ହେବ । ୨୧ ।
ଦକାର ମନ୍ତ୍ର ସେ ବଡ଼ ଶିଷ୍ୟଙ୍କୁ ବୁଝାଇ ।
ବୀଣା ରବା ଶିଖାଇଲେ ଦୋଷ କିଛି ନାହିଁ । ୨୨ ।
ମନ୍ତ୍ର ଜାଣି ଯେଉଁ ନର ରବା ବୀଣା ବାଇ ।
ଅବଶେଷ ପୁଣି ମଲେ କୃଷ୍ଣ ପାଦ ପାଇ । ୨୩ ।

ମନ୍ତ୍ର ଗୁରୁ ଶିକ୍ଷା ଯନ୍ତ୍ର ନ ଜାଣିଣ ବାଣ୍ଟେ ।
ଘୋରୁ କୃତଘ୍ନୀ ପାତକ ସେ ପୁଣ ସେହୁ ପାଏ । ୧୪ ।
ମନ୍ତ୍ରଦୀକ୍ଷା ଏଣୁ କରି ଗୋପ୍ୟରୂପେ ଦେବ ।
ଗାନ୍ଧାର ରାଗରେ କୃଷ୍ଣ କଥା ଗାଉଥିବ । ୧୫ ।
କଳିଯୁଗେ କୃଷ୍ଣ କଥା ଅଟଇ ତ ସାର ।
ଭାଗ୍ୟ ଥିଲେ ପ୍ରାପତ ସେ ହୁଅଇ ଗାନ୍ଧାର । ୧୬ ।
ରାଜ ଦରବାରେ ଜନକୁ ପରମାଦ ନାହିଁ ।
ଧନ ପୁତ୍ର ଭୋଗ ଭୁଞ୍ଜି ସୁଖେ ବଞ୍ଚି ଥାଇ । ୧୭ ।
ପୂଜକ ଅଟଇ ପୁଣ ସଂସାରେ ସେ ଜନ ।
ସନ୍ଥ ଗୋଷ୍ଠି ଜନମାନେ କରେ ଧନ୍ୟ ଧନ୍ୟ । ୧୮ ।
ପାଷଣ୍ଡ କୁଳରୁ ସେହୁ ହୁଅନ୍ତି ବାହାର ।
ଗନ୍ଧ ସେ ଚନ୍ଦନ ଭୋଗ ଥାଇ ନିରନ୍ତର । ୧୯ ।
ବୀଣା ଅଧିକାର ପୁଣ ମୁକୁନ୍ଦ ଧରିବ ।
ଅନନ୍ତ କନ୍ଧୁଲୁ ରବା ଅଧିକାର ଥିବ ।୨୦।
ମୁକୁନ୍ଦ ନେବ ହେ ବୀଣା ପୂଜା ବିଧି ଯେତେ ।
ରବା ପୂଜା ଅନନ୍ତକୁ ବନ୍ଧୁଲୁ ଯୁଗତେ ।୨୧।
ଗୋପାଳ କୁଳରେ ରବା ବୀଣା ବଜାଇବ ।
ତାଳ ସେ କର୍ତ୍ତାଳ ଖୋଳ ମାଦଳ ଶିଖିବ ।୨୨।
ଶିଙ୍ଘା ଶଙ୍ଖ ବେଣୁ ବଂଶୀ ମୁରଳୀ ସଙ୍ଗୀତ ।
ଚୂଳ ଝୋମ୍ପି ତମ୍ବୁସ ସେ ଝାଲିଆ ପତାକା ।୨୩।
ସବ ଅଧିକାର ଗୁରୁ ବାରଜିଆ ଅଂଶ ।
ତୁମ୍ଭେ ଅଗେ ପାଇଲ ହେ ମନ୍ତ୍ରଭେଦ ରସ ।୨୪।
ପ୍ରଥମ ପୀଢ଼ିରେ ପଜା ଅଚ୍ୟୁତ ତ ମୁହିଁ ।
ଦ୍ୱିତୀୟ ପୀଢ଼ିରେ ରାମଚନ୍ଦ୍ର ବାର ଭାଇ ।୨୫।
ତୃତୀୟ ପୀଢ଼ି ପବନ ଭାଇ ବାର ଦଶ ।
ତାଙ୍କଠାରୁ ଶିଖି ହେବେ ରାହାସର ଦାସ ।୨୬।

ସର୍ବ ଅଧିକାରୀ ଅଂଶ ଏଣୁ ତୁମ୍ଭେ ହେଲ ।
ଜଂଘର ବଷରେ ତୁମ୍ଭେ ଗହ୍ୱାସ ଆପିଲ ।୩୭।
ଅଗେ ଶାଢ଼ୀ ଆଗେ ପୂଜା ତୁମ୍ଭଙ୍କ ପ୍ରମାଣ ।
ଫୁଲ ପାନ ଚନ୍ଦନ ସେ ତୁମ୍ଭ ଅର୍ଥେ ଜାଣ ।୩୮।
ଯେଉଁ ଜନ ଭକ୍ତଭେଦ ତୁମ୍ଭେ କଣିଥିବ ।
ଲକ୍ଷେ ଗ୍ରନ୍ଥ ଅତ୍ୟନ୍ତର ମୁଖେ ପଢ଼ୁଥିବ ।୩୯।
ସେ ଜନ ତୁମ୍ଭଙ୍କ ପୁଣ ଜାଣିବ ଗ୍ରନ୍ଥରେ ।
ଏଣୁକରି ମନ୍ତ୍ରମାନ ଲେଖିଲୁ ପୋଥିରେ ।୪୦।
ପାଷାଣ୍ଡ କୁଳକୁ ଏହୁ ହୋଇବ ଜଞ୍ଜାଳ ।
ପରାକୃତ ଭାଷାରେ ସେ ଲେଖିଲୁ ଢ଼ମାଳ ।୪୧।

ଭକ୍ତ ଶିଷ୍ୟ ମନ ଜାଣି ଏ ଗ୍ରନ୍ଥ କହିବ ।
ଯନ୍ତ୍ର ମନ୍ତ୍ର ବୁଝାଇଲେ ଭଗତ ପାଇବ ।୪୨।
ଗୁରୁ ମୁଖେ ନ ବୁଝିଲେ ନ ପାଇବ ଭେଦ ।
ଭ୍ରମର ମୁଦ୍ରିତ ପୁଷ୍ପେ ପାଏ ବଡ଼ ଧନ୍ଦ ।୪୩।
ସାବୁ-ପଦ୍ମ ପତ୍ରେ ଯେହ୍ନେ ନ ମିଶଇ ପାଣି ।
ପଥରକୁ ଜଳ ଯେହ୍ନେ ନ ପାରଇ ଜିଣି ।୪୪।

ଅଣଭକ୍ତ ଶିଷ୍ୟ ଅଟେ ଏମନ୍ତ ଲକ୍ଷଣ ।
ଏଣୁ କରି ଗୁପତ କରିବା ଭଲ ଗୁଣ ।୪୫
କାଗଜକୁ ଜଳ ଯେହ୍ନେ ଜଣଇ ତୁରତେ ।
ସବୁ ବସ୍ତ୍ର ଜଳେ ଯେହ୍ନେ ମଜ୍ଜଇ ଯୁଗତେ ।୪୬।
ଅଗ୍ନି ସଙ୍ଗେ ଘୃତ ଯେହ୍ନେ ହୁଅଇ ତରଳ ।
ଜଆଁ ସଙ୍ଗେ ଯନ୍ତ୍ର ଯେହ୍ନେ ହୁଅଇ ସେ ମେଳ ।୪୭।
ଭକ୍ତ ଶିଷ୍ୟ ସେହ୍ନ ମତ ଗୁରୁଙ୍କୁ ଦେଖିଲେ ।
ସେ ଶିଷ୍ୟ ଜୀବନ ଧନ୍ୟ ଧନ୍ୟ ହେନେ ଥିଲେ ।୪୮।
ଅନ୍ନ ବସ୍ତ୍ର ଧନ ଦେଇ ଗୁରୁ ପୂଜା କରେ ।
ଅନାମ ନାମ ଶବଦ ଗୁରୁଙ୍କ ପଦ୍ମରେ ।୪୯।

ସମାଧି ଜ୍ୟୋତ ଜାଳାନ୍ତି ପବାଡ଼ ଶିଖରେ ।
ପଞ୍ଚାକ୍ଷର ଏକାକ୍ଷର ଅଣାକ୍ଷର ଧ୍ୟାଇ ।୫୦।
ଗୋପାଳ ମନ୍ତ୍ର ଯେ ଅଣାକ୍ଷର ମନ୍ତ୍ର ଜପ ।
କୃଷ୍ଣମନ୍ତ୍ର ଠାକୁରାଣୀମନ୍ତ୍ର ହରେ ପାପ ।୫୧।
ରାତ୍ରାସେ ମିଶିଣ ଏତୁ ରସ ଘୋଷୁଥିବେ ।
ଅଚ୍ୟୁତ ବଚନ ରାମପୁରେ ପାଳୁଥିବେ ।୫୨।
ଅତି ନୀଚ ହେବ ପୃଥ୍ୱୀ ହୋଇବ ସେ ଶେଷେ ।
ସେବକମାନେ ମାରିବେ ରାଜନ ଯେ ଅଂଶେ ।୫୩।
ଗୁରୁଙ୍କ ପଦାର୍ଥ ଶିଷ୍ୟ ବଳେ ଘେନି ଯିବ ।
ଦରିଦ୍ର ଅବସ୍ଥା ପ୍ରାଣୀ ହୃଦରୁ ନ ଯିବ ।୫୪।
ସେହୁ କାଳେ କୃଷ୍ଣ ନାମ ଯେ ହୃଦେ ଘୋଷିବ ।
ଏକାନ୍ତେ ବସି ଏ ଗ୍ରନ୍ଥ ବନସ୍ତେ ଶୁଣିବ ।୫୫।
ଗୃହବାସୀ ଏ ଗ୍ରନ୍ଥକୁ ନ ପାରିବେ ବନ୍ଧ ।
ହେରୁ ମନେ ଘେନି ଥିବ ଅନନ୍ତ ମକୁନ୍ଦ ।୫୬।
ଦୀନ ଅଚ୍ୟୁତର କଥା ଅଟଇ ଏ ସତ ।
ଆଗତ ଭବିଷ୍ୟ ଏତୁ ପୁରାଣେ ଲିଖିତ ।୫୭।

ଇତି ଶ୍ରୀଗୁରୁଭକ୍ତ ଗୀତା କଥନେ ନାମ ଷଷ୍ଟି ଗ୍ରନ୍ଥ ।



# ଏକଷଷ୍ଠି ଛାନ୍ଦ

ଚୂଳ ମନ୍ତ୍ର ବନ୍ଧ ପୁଣ କେମନ୍ତ ଅଟଇ ।
ଏକଥା ଶ୍ରୀ ଗୁରୁଦେବ କହିବ ବୁଝାଇ ।୧।
ଶୁଣ ଆହେ ଗୋପପୁତ୍ର ତହିଁର ବସ୍ତୁର ।
ସେହିବନ୍ଧ ପରମାଣେ ଭିଆଣ ତାହାର ।୨।
ମୟୂର କାଟିକି ଟୋପି ପ୍ରାସ୍ତେ ବ୍ରହ୍ମା କଲ ।
ଚନ୍ଦ୍ରକା ମଣ୍ଡଳ ବିଷ୍ଣୁ ଖଞ୍ଜିଲେ ବିସ୍ତାର ।୩।
ଗୁଞ୍ଜିର ମାଳା ଯତନେ ଶିବ ସେ ଖଞ୍ଜିଣ ।
ଅନନ୍ତ ଦେଲେକ ଡ଼ୋର ମୂଳରେ ତ ପୁଣ ।୪।
ଶିକୁଳ ଛନ୍ଦଣ ପଟ ପବନ କରଣ ।
ମଧ୍ୟ ସ୍ଥାନ ଗୋଟି ସେତୁ କଲେକ ନିର୍ମାଣ ।୫।
ଶିଖଣ୍ଡ ମଣ୍ଡଳ ତହିଁ ଚନ୍ଦ୍ର ଦେଲେ ନେଇ ।
ଚୂଳ ଯେ ଗୋଟିଏ ସୂର୍ଯ୍ୟ ଉପରେ ବସାଇ ।୬।
ଏମନ୍ତ ହୋଇଣ ଚୂଳ ତ୍ରିଶାଖା ଭିଆଣ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଅନନ୍ତ ନିର୍ମାଣ ।୭।
ପବନ ଚନ୍ଦ୍ର ଯେ ସୂର୍ଯ୍ୟ ବସି ନିର୍ମାଣିଲେ ।
ଗୋଲୋକ ଭୁବନେ ନେଇ ଯତନେ ଥୋଇଲେ ।୮।
ଗୋଲୋକନାଥ ଯେ ଦେଲେ ସୁଦାମ ଶିରେଣ ।
ସୁଦାମର ସଖାମାନେ ବହିଲେ ଶିରେଣ ।୯।
ଗୋଲକର ଲୀଳା ଗୋପ ପୁରରେ ପ୍ରକାଶ ।
ଗୋପଲୀଳା ସାରି ଜାତ ନଦୀଆ ପ୍ରବେଶ ।୧୦।
ନବଦ୍ୱୀପ ରୂପ ଶେଷ ଓଡ୍ର ରାଷ୍ଟ୍ରେ ଜାତ ।
ଗୋପ ଶୂଦ୍ର ଦୁଇ କୁଳେ ହୋଇଲେ ତ ଜାତ ।୧୧।

ଏ ଗୋପକୁଳରେ ଜନ୍ମ ଚୂଳ ବେଶ ଧର ।
ଶୂଦ୍ର କୁଳେ ଜନମ ତ ଅଛଇ ଆମ୍ଭର ।୧୨।
ତୋର ଟୋପ କହୁଅଛ ଶୂଦ୍ର କୁଳେ ଦେବୁ ।
କସ ଚୂଳ ବେଶ ଗୋପକୁଳକୁ ଖଣ୍ଡୁ ।୧୩।
ଶୁଣ ରାମ କୃଷ୍ଣ ଦାସ ଏ ଚୂଳ ବିଚାର ।
ମନ୍ତ୍ର ଶିଖି ଚୂଳ ଗୋଟି ବାନ୍ଧିବ ଶିରର ।୧୪।
ବେଦ ସପ୍ତ ଧରଣ ଯେ ମନ୍ତ୍ରକୁ ଲେଖିବ ।
ଚଉଦ ଅକ୍ଷର ମନ୍ତ୍ର ଚନ୍ଦ୍ରେରେ ରଖିବ ।୧୫।
ହରି ହରି ତନ୍ତ୍ର ଏଯେ ମନ୍ତ୍ର ଅଟେ ପୁଣି ।
ଅଭି ଦଣ୍ଡକ ମସ୍ତକଂ ମନ୍ତ୍ର ଗୋଟି ପୁଣ ।୧୬।
ପୂଜା ବିଧି କରଣ ଯେ ଶିଷ୍ୟ ଶିରେ ଦେବ ।
ଶିଷ୍ୟଶିରେ ବାନ୍ଧଣ ଯେ ସ୍ୱହାସେ ମିଶିବ ।୧୭।
ମନ୍ତ୍ର ନ ଜାଣିଣ ଚୂଳ ବାନ୍ଧନ୍ତି ଯେ ଶିର ।
କପିଳାର ବଧ ଦୋଷ ଲାଗଇ ତାହାର ।୧୮।
ମନ୍ତ୍ର ଜାଣି ଯେଉଁ ଜନ ଚୂଳ ଶିରେ ବାନ୍ଧ ।
ସାବନ୍ତ୍ରେଣ ଗଡ଼ ମଲେ କୃଷ୍ଣ ପାଦ ପାଇ ।୧୯।
ମୁହିଁ ଯେ ଅଚ୍ୟୁତ ଦାସ ଦେଲି ରାମ ତୋରେ ।
ରାମଚନ୍ଦ୍ର ଦାଅ ପୁଣ ମୁକୁନ୍ଦର ଶିରେ ।୨୦।
ମୁକୁନ୍ଦର ବାର ଖାଇ ଯେବେ କର ରାସ ।
ଅଚ୍ୟୁତ ଦାସର ଲୀଳା କରିବ ପ୍ରକାଶ ।୨୧।
ଏତୁ ଗୁରୁଭକ୍ତ ଗୀତା ବିସନ୍ଧ ବଚନ ।
ବୋଲି ଯେ ତମାଳ ଜୀବା ପଢ଼ିବ ସଜନ ।୨୨।
ମନ୍ତ୍ରଭେଦ ରୂପରେଖ ବିସନ୍ଧ ଲେଖିଲୁ ।
ରସିକ ଚତୁର ଭକ୍ତ ହୃଦରେ ଥୋଇଲୁ ।୨୩।

ଇତି ଶ୍ରୀଗୁରୁଭକ୍ତଗୀତା କଥନେ ନାମ ଏକଷଷ୍ଟି ଅଧ୍ୟାୟ

—o—

# ଦ୍ୱିଷଷ୍ଠି ଛାନ୍ଦ

ଆଜ୍ଞା କରିବା ଗୁରୁଦେବ । ବେତ ଜନମ ଯେଉଁ ଭାବ ।୧।
ଶୁଣ ସୁଦାମ ବସ୍ତ୍ର ଦାସ । ମୁକୁନ୍ଦ ଅନନ୍ତ ବିଶ୍ୱାସ ॥
ଅନନ୍ତ ନାଗ ଏକ ଦିନେ । ଅଇଲେ କୃଷ୍ଣ ଦରଶନେ ॥
ବଳରାମ ଯେ କୃଷ୍ଣ ଦେଖି । ଖୋଲେ ବୁଜଲେ ବେନି ଆଖି ॥
ଲୋଚନ ଲୋଚନ ପଲ୍ଟନ୍ତେ । ବୃକ୍ଷ ଗୋଟିଏ ଅଦଭୁତେ ॥
ସେ ବେତବୃକ୍ଷ ବୋଲାଇଲା । ଏମନ୍ତେ କିଛୁ ଦିନ ଗଲା ॥
କୃଷ୍ଣ ଜନମ ଗୋପ ପୁର । ସଙ୍ଗତେ ଭାଇ ହଳଧର ।
ଦ୍ୱାଦଶ ବନରେ ବାହୁଙ୍ଗା । ଚରାନ୍ତି ଅଠ ସ୍ନେହ ବଶ ॥
ସେ ବେତ ବୃକ୍ଷକୁ ଦେଖିଣ । ଅନନ୍ତ ଅଙ୍ଗ ଅଂଶୁ ପୁଣ ॥
ଜାଣିଲେ ଅନ୍ତର୍ଯାମୀ ନାଥ । ତହୁଁ ଖଣ୍ଡିଏ ଘେନ ହସ୍ତ ।୧୦।
ବାମ ନୟନ କନ୍ନଅର
ଜନମିଥିଲା ସେ ବନର ॥
ତହୁଁ ଖଣ୍ଡିଏ ଘେନ କର । ଚରାନ୍ତ ବନରେ ବାହୁଙ୍ଗା ॥
ସୁବର୍ଣ୍ଣ ବେତ ଶିରେ ଦେଇ । କମ୍ବୁ କରେଣ ବେତ ଶୋହ ॥
ସୁବର୍ଣ୍ଣ କନକ ପାଞ୍ଚଣି । କୃଷ୍ଣ ଦକ୍ଷିଣ କରେ ପୁଣି ॥
ଦାମ ଯେ ସୁଦାମ କରେଣ । ଘେନ ସକଳ ପୋଏ ପୁଣ ॥
ସୁବର୍ଣ୍ଣ ଚକ କମ କର । ସେ କନଅର ଶିରେ ଧର ॥
କେ ବୋଲେ ଆଣ ଏ ଅଛଇ । କେ ପୁଣ କୁରୁଜ କରଇ ॥
କେ ପୁଣ ବାଙ୍କୁଆ କରନ୍ତି । ଅଷ୍ଟରତନ କମ ପନ୍ତ ॥
କେ ପୁଣ ନହଡ଼ ସଜାଡ଼ି । ବନରେ କରନ୍ତ ଧାହଡ଼ି ॥
କେଉଁ ଗୋପାଳ ହସ୍ତେ ବେତ । କେ ପୁଣ ନହଡ ଧରେ ତ ।୨୦।
କେ ପୁଣ ଆଣି କରେ ଧର । କେ ରଙ୍ଗ ବାଙ୍କ କନ୍ଧେ ପାର ॥
କେ ପୁଣ ପାଞ୍ଚଣ ଧରଇ । କେ ରଙ୍ଗ ଝାହଡ଼ି ପକାଇ ॥
ଠାବ କମ୍ବଳ ଭଲ ପାଇ । ଝାହଡ଼ି କନ୍ଧେ ଘେନ ଥାଇ ॥

ଗୋପେ ଗୋପାଳ କୃଷ୍ଣ ଲୀଳା । ଅନେକ ରସ ସୁଖେ ଖେଳା ॥
କଳିରେ ଭଗତ ପ୍ରକାଶ । ଧଇଲେ ଭଗତର ବେଶ ॥
ଟୋପି ଯେ ବେତ ଆଶା ବନ୍ଧ । ବୈଷ୍ଣବ ଲକ୍ଷଣ ଅଟଇ ॥
ଶୁଣ ହେ ଗୋପ ସୁତମାନେ । ଅଣ ସେ ହେଉ ଶିଷ୍ୟ ଜନେ ॥
ଏ ବେତ ମହିମା କହିବ । ଶିଷ୍ୟଙ୍କୁ ହସ୍ତେ ଟେକ ଦେବ ॥
ଗଣ୍ଠି ଗୋଟିଏ ଗେଲିଷି କରି । ତହିଁରେ ମନ୍ତ୍ରକୁ ସୁମରି ॥
ବେଢ ମୂରତ ବସ୍ତ୍ର ଦେବ । ବେତ ଯେ ଛଡ଼ିକ ପୂଜିବ ।୩୦।
ଅନନ୍ତ ଅଚ୍ୟୁତ ଯେ ହରି । ଏ ଅଷ୍ଟ ଅକ୍ଷର ସୁମରି ॥
ସ୍ୱର ଦୁଗୁଣ ଅଠ କରି । ଏ ରୂପେ ଯନ୍ତ୍ର ବିଧି କରି ॥
ଯନ୍ତ୍ର ମନ୍ତ୍ର ଯେ ପୂଜାବିଧି । ଗୁରୁଙ୍କ ଅଟଇ ଏ ସିଦ୍ଧି ॥
ଏ ଭେଦ ଜାଣି ଶିଷ୍ୟ ବନ୍ଧେ । ତେବେ ଶିଷ୍ୟର ହେଉ ହୁଏ ॥
ମନ୍ତ୍ର ନ ଜାଣି ବନ୍ଧେ ବେତ । ଛନ୍ନ ଜନମ ଦରିଦ୍ର ତ ॥
ମନ୍ତ୍ର ଜାଣିଣ ବେତ ବନ୍ଧ । ମଲେଣ ଗୋଲକ ଲଭଇ ॥
ମନ୍ତ୍ରେ ବନ୍ଧଇ ଆଶା ପୁଣ । ଲଭନ୍ତି କୃଷ୍ଣର ଚରଣ ॥
ମନ୍ତ୍ର ନ ଜାଣି ଆଶା ବନ୍ଧ । ଦୁସ୍ତର ଅଙ୍ଗେ ତା ପୀଡ଼ଇ ॥
ନହଡ଼ ଛଡ଼ ବେତ ଏକ । କେବଳ ଏକ ଏ ମନ୍ତ୍ରକ ॥
ଏହା ସୁମରି ବନ୍ଧିଥିବ । ଗୋପାଳ କୁଳେ ଭେଟହେବ ।୪୦।
ବେତର ଅଧିକାର ପୁଣ । ମୁକୁନ୍ଦ ଦାସର ପ୍ରମାଣ ॥
ଛଡ଼ର ଅଧିକାର ଯେତେ । ଅନନ୍ତ ଦାସର ସୁଗତେ ॥
ନହଡ଼ ଅଧିକାର ମାନ । ମୁକୁନ୍ଦ ରୁମ୍ମର ବିଧାନ ॥
ଏପାଞ୍ଚ ଅଧିକାର ଯେତେ । ବସ୍ତ୍ରର ଅଟଇ ଯୁଗତେ ॥
ଫାହଡ଼ ଅଧିକାରମାନ । ମଧୁଦାସର ଏ ବିଧାନ ॥
ବାଙ୍କୁଆ ସୁଦାମର ପୁଣ । ଅଚ୍ୟୁତ ବଚନ ପ୍ରମାଣ ।୪୨।

ଇତି ଶ୍ରୀଗୁରୁଭକ୍ତି ଗୀତା କଥନେ ନାମ ଦ୍ୱିଷଷ୍ଠି ଗ୍ରନ୍ଥ ।

---

ସମାପ୍ତ

